# ଅପରୂପା

(କ୍ଷୁଦ୍ରଗଳ୍ପ ସମ୍ଭାର)

ଲେଖିକା :

ଶ୍ରୀମତୀ ଉମାରାଣୀ ପାତ୍ର

ମହେଶପୁରବାଡ଼ି, ସୁଲତାନପୁର

ଭୋଗରାଇ, ବାଲେଶ୍ୱର ।

ପ୍ରକାଶକ :

'ବିଶ୍ୱବ୍ରହ୍ମ ପ୍ରକାଶନୀ'

ଜଳେଶ୍ୱର, ଜି: ବାଲେଶ୍ୱର ।



ମୁଦ୍ରଣ :

ସୀମାଶ୍ରୀ ପ୍ରେସ

ଜଳେଶ୍ୱର, ବାଲେଶ୍ୱର ।

ପ୍ରଥମ ପ୍ରକାଶ :

କାର୍ତ୍ତିକ ପୂର୍ଣ୍ଣିମା - ୨୦୦୮

ମୂଲ୍ୟ :

ବୋର୍ଡ଼ ବନ୍ଧାଇ ଟ.୬୦ଙ୍କା (ଷାଠିଏ ଟଙ୍କା ମାତ୍ର)

ମୋର ପାରିବାରିକ ତଥା ରାଜନୈତିକ ଜୀବନରେ ଯାହାଙ୍କର ସ୍ନେହ, ଶ୍ରଦ୍ଧା ଓ ପିତୃତୁଲ୍ୟ ଆଶୀର୍ବାଦକୁ ପାଥେୟ କରି ମୁଁ ଆଗେଇ ଚାଲିବାରେ ଭରସା ପାଇଛି - ସେଇ ମହାନୁଭବ ପୂର୍ବତନ ସରପଞ୍ଚ, ବିଶିଷ୍ଟ ସମାଜସେବୀ ଶ୍ରୀ ରାଧାଶ୍ୟାମ ପ୍ରଧାନଙ୍କ କରକମଳରେ ମୋର ଏହି ଗଳ୍ପ ପୁସ୍ତକ 'ଅପରୂପା' ଅର୍ପଣ କରୁଛି -

*ଉମାରାଣୀ*

# ଅପରୂପା : ଏକ ଅନ୍ତରଙ୍ଗ ଅନୁଭବ

ଗପ କହିବା ଏବଂ ଗପ ଶୁଣିବା ମଣିଷର ସହଜାତ ପ୍ରବୃତ୍ତି । ଆଧୁନିକ ଗଳ୍ପ ସାହିତ୍ୟର ଲିଖିତ ଧାରା କାଳଜୟୀ ସ୍ରଷ୍ଟା ଫକୀର ମୋହନଙ୍କ ସମୟରୁ ଧାରାବାହିକ ଭାବରେ ଗଡ଼ି ଆସିଛି ସାମ୍ପ୍ରତିକ ସମୟ ପର୍ଯ୍ୟନ୍ତ ।

'ଅପରୂପା' କ୍ଷୁଦ୍ର ଗଳ୍ପଗ୍ରନ୍ଥର ଲେଖିକା ଶ୍ରୀମତୀ ଉମାରାଣୀ ପାତ୍ର ଏକ ସୁପରିଚିତ ନାମ । ଏହି ପୁସ୍ତକରେ ୧୯ଟି କ୍ଷୁଦ୍ର ଗଳ୍ପ ସ୍ଥାନିତ । ଅଧିକାଂଶ ଗଳ୍ପ ମାନବିକ ସମ୍ପର୍କର ଭିତ୍ତି ଉପରେ ଗଢ଼ି ଉଠିଛି । ତାଙ୍କର ଗାଁ, ଭୂଇଁ, ପାଣିପବନ ଜୀବନର ହସକାନ୍ଦ ସବୁ ଭିତରେ ମୂର୍ତ୍ତିମନ୍ତ ହୋଇ ଉଠିଛି ଏକ ସମ୍ବେଦନଶୀଳ ହୃଦୟର ଚିତ୍ରପଟ । ଏହି ସମ୍ବେଦନଶୀଳତା ସହ ଏକ ଦରଦୀ ହୃଦୟର ଅନ୍ତରଙ୍ଗ ପ୍ରକାଶ ମଧ୍ୟ ପ୍ରତିଧ୍ୱନିତ ହୋଇଉଠିଛି । ତାଙ୍କର ଏହି ଗଳ୍ପ ସଂକଳନ ସାମ୍ପ୍ରତିକ ସମୟର ଅବକ୍ଷୟର ଚିତ୍ର ପ୍ରଦାନ କରେ ନାହିଁ; ଏହା ଏକ ଅନୁଭୂତି ଦଗ୍ଧ କୁହୁଳା ମନର ଆତ୍ମ ଜିଜ୍ଞାସା । ଦୃଷ୍ଟିଭଙ୍ଗୀରେ ବ୍ୟାପକ ଉଦାରତା ଏବଂ ପ୍ରକାଶ ଭଙ୍ଗୀରେ ସଂଯମ ଓ ସତ୍ୟଶୀଳତା ହେଉଛି ଗାଳ୍ପିକା ଉମାରାଣୀ ପାତ୍ରଙ୍କ ନିଜସ୍ୱ । ଏହାହିଁ ତାଙ୍କର ବୈଶିଷ୍ଟ୍ୟ । ସେ ଏକ ନିଛକ ଓଡ଼ିଆ ଘରର ଐତିହ୍ୟ ସମ୍ପନ୍ନ ପରିବାରର ନାରୀ । ନାରୀ ମନର ଅକୁହା କଥାଗୁଡ଼ିକୁ ଅତି ଚମତ୍କାର ଶୈଳୀରେ ପ୍ରକାଶ କରିଛନ୍ତି । ନାରୀ ମନସ୍ତତ୍ୱ ସମ୍ପର୍କୀତ ତାଙ୍କର ଗଳ୍ପ ଗୁଡ଼ିକ ଅଧିକ ସଫଳ ବୋଲି କହିବି । ତାଙ୍କ ଲେଖାରେ ଓଡ଼ିଆ ମାଟିର ଗନ୍ଧ ବାରି ହୋଇ ପଡ଼େ । 'ରଙ୍ଗମଞ୍ଚ', 'ପରିଚୟ' ଏବଂ 'ପଣାସଂକ୍ରାନ୍ତି' ଏବଂ 'ଅପରୂପା' ଇତ୍ୟାଦି କ୍ଷୁଦ୍ରଗଳ୍ପ ଗୁଡ଼ିକ ତାହାର ପ୍ରତିନିଧିତ୍ୱ ବହନ କରେ ।

ଉଦାହରଣ ସ୍ୱରୂପ ''ଏକାଠି ହୁଅନ୍ତି ପୁଅଝିଅ ଝିଆରୀ, ପୁତୁରା ଓ ଅନ୍ୟମାନେ । ଏବେବି ସେଇ ସଂସ୍କୃତି ପରମ୍ପରା ତାଙ୍କ ଘରେ ଉଜ୍ଜିବୀତ ରଖିଛନ୍ତି ।'' ବର୍ତ୍ତମାନ ସମୟରେ ଏକାନ୍ନବର୍ତ୍ତୀ ପରିବାରର ମୂଳଦୁଆ ଭାଙ୍ଗି ପଡୁଥିବା ବେଳେ ଶ୍ରୀମତୀ ପାତ୍ରଙ୍କର ସଂସ୍କୃତି ସଚେତନତା କେତେ ବେଶୀ

ତାହା ତାଙ୍କର ଗଳ୍ପଗୁଡ଼ିକରୁ ଜଣାପଡ଼ିଥାଏ । ଆଧୁନିକ ମଣିଷର ଅନ୍ତର୍ଦ୍ୱନ୍ଦ୍ୱର ସୂଚନା ସେ ତାଙ୍କର ଅନେକ ଗଳ୍ପରେ ପ୍ରକାଶ କରିଛନ୍ତି । 'ରଙ୍ଗମଞ୍ଚ' ଗଳ୍ପକୁ ନିଆଯାଇପାରେ । ''ପୂର୍ବପରି ଯେପରି ପୁଅବୋହୂଙ୍କ ଆନ୍ତରିକତା ଥିଲା, ଆଉ ନାହିଁ । ନାତି ଟୋକାଟା ଆଗପରି ତାଙ୍କ ପାଖକୁ ଆସୁନି କେତେବେଳେ କେମିତ ଅତି ସନ୍ତର୍ପଣରେ ପାଦ ଚିପି ଚିପି ଆସେ - ପଚାରିଲେ କହେ ମାମା ଗାଳିଦେବ । ଦିବାକରବାବୁ କିଛି ନ କହି ତାକୁ କିଛି ସମୟ କୁଣ୍ଢାଇ ଧରନ୍ତି । ସେ ନିଜେ ଆଜିକାଲି କାହାକୁ ଯେମିତି ଡରୁଛନ୍ତି । ଶିବୁର କଥାଶୁଣି ଛାତି ଭିତରଟା କମ୍ପିଉଠେ ।'' ''ଓକିଲ ମାନେ ମିଛକୁ ସତ, ସତକୁ ମିଛ କରିବାରେ ଏଇପରି ପ୍ଲିର ଆଶ୍ରୟ ନିଅନ୍ତି'' (ଡିଭୋର୍ସ) ।

ବ୍ୟକ୍ତି ନିଜେ ବଞ୍ଚେ ନାହିଁ, ନିଜ ସନ୍ତାନ ମାଧ୍ୟମରେ ବଞ୍ଚେ । ଏହି ବଞ୍ଚିବାର କାମନା ସବୁ ସୃଷ୍ଟିର ମୂଳ କଥା । ଗାଳ୍ପିକାଙ୍କର 'ପରିଚୟ' ଗଳ୍ପ ଏହି ଆଦର୍ଶର ଜ୍ୱଳନ୍ତ ପ୍ରମାଣ । ଶ୍ରୀମତୀ ପାତ୍ର ଜୀବନର ଦୁଇଟି ଦିଗ ପ୍ରତି ଅଧିକ ସଚେତନ ହୋଇଛନ୍ତି । ଗୋଟିଏ ରକ୍ଷଣଶୀଳ ସ୍ୱାସ୍ଥ୍ୟକର ପରମ୍ପରା । ଅନ୍ୟଟି ଆଧୁନିକ ଚହଟ ଚିକ୍କଣ ଗୁଗ୍‌ଣ ଜୀବନ । ଗୋଟିଏ ପ୍ରାଣ ପ୍ରାଚୁର୍ଯ୍ୟରେ ଭରପୂର ଅନ୍ୟଟି ଅନ୍ତଃସାର ଶୂନ୍ୟ ।

ସାମ୍ପ୍ରତିକ କ୍ଷୁଦ୍ର ଗଳ୍ପରେ ଗାଳ୍ପିକର ପ୍ରକୃତ ଆତ୍ମାକୁ ସହଜରେ ଧରିହୁଏ ନାହିଁ । ଆଜିର ଗଳ୍ପ ଅନେକ ନୂତନତାର ଶିହରଣରେ ଚମତ୍କୃତ । ଅନେକ ପରୀକ୍ଷା ନିରୀକ୍ଷାର ବୌଦ୍ଧିକତାରେ ପରିପୂର୍ଣ୍ଣ । ଏହି ପରିପ୍ରେକ୍ଷୀରେ ଶ୍ରୀମତୀ ପାତ୍ରଙ୍କର ଗଳ୍ପ ସଂକଳନ 'ଅପରୂପା' ଏକ ବ୍ୟତିକ୍ରମ । ଓଡ଼ିଶାରେ ଏହା ପାଠକୀୟ ସ୍ୱୀକୃତି ଲାଭ କରିବ, ଏଥିରେ ସନ୍ଦେହ ନାହିଁ ।



*ଡଃ. ମନୋରମା ବିଶ୍ୱାଳ ମହାପାତ୍ର*

# କଥା ପଦେ

ସମୟର ଚ଼କ ଗଡ଼ି ଚ଼ାଲିଛି । ଏହି ସୁନ୍ଦର ପୃଥିବୀର ସୃଷ୍ଟି ରହସ୍ୟକୁ ଜାଣିବା ପାଇଁ ଏବେ ବୈଜ୍ଞାନିକମାନଙ୍କର ଜିଜ୍ଞାସାର ସମାପ୍ତି ଘଟିନାହିଁ । ଅମୃତର ସନ୍ତାନ ମାନବ ଶ୍ରେଷ୍ଠ ଜନ୍ମର ଅଧିକାରୀ ହୋଇ ସ୍ବୟଂ ବ୍ରହ୍ମାଙ୍କର ଏହି ଅପୂର୍ବ ସୃଷ୍ଟିକୁ ମହନୀୟ କରି ପାରିଛି ସତ ମାତ୍ର ସୂର୍ଯ୍ୟଙ୍କର ଉଦୟ ଅସ୍ତ ପରି କ୍ଷଣଭଙ୍ଗୁର ଦୁନିଆରେ ସାମାଜିକ ସନ୍ତୁଳନ, ସଂସ୍କୃତି, ମୂଲ୍ୟବୋଧରେ ଘୋର ଅନ୍ତରାୟ ସୃଷ୍ଟି ହୋଇଛି ଆଜିର ଅବକ୍ଷୟପୃଥିବୀରେ ସରଳତା, ନୈତିକତା, ମାନବିକତା, ଈଶ୍ୱର ବିଶ୍ୱାସ ହ୍ରାସ ପାଇ ମଣିଷ ମନରେ ସୃଷ୍ଟ ଦ୍ୱନ୍ଦ୍ୱ, ଅବିଶ୍ୱାସରୁ ହିଂସା, ଦ୍ୱେଷ ରୂପକ ଅଗ୍ନୀ ନିର୍ବାପିତ ହୋଇ ମଣିଷ ଧ୍ୱଂସ ପଥର ଯାତ୍ରୀ ସଜାଇଛି । ସମାଜ ବିପଥଗାମୀ, ବିପଦଗ୍ରସ୍ତ । ସମୟ ସମୟର କଥାକୁ ନେଇ କବି, ଗାଳ୍ପିକ, କଥାଶିଳ୍ପୀ ମାନେ ମସୀ ଚ଼ଳାଇ ଅଶାର କିରଣ ସଞ୍ଚାର କରିଥାଆନ୍ତି ପୀଡ଼ିତଜନଙ୍କ ଉଦ୍ଦେଶ୍ୟରେ । 'ଅପରୂପା'ଠାରେ ହୁଏତ ରୂପର ପ୍ରାଚୁର୍ଯ୍ୟ ଥାଇ ନପାରେ ମାତ୍ର ସେ ଯେ ଗୁଣର ଏକ ମୂର୍ତ୍ତିମନ୍ତ ଚେ଼ତନାର ଉନ୍ମେଷର ପରିପ୍ରକାଶ ଏଥିରେ ସନ୍ଦେହ ନାହିଁ । ମୋର ଏହି ଅପରୂପା ଗଳ୍ପ ସଂକଳନଟି ସାଧାରଣ ଜନ ଜୀବନର ହସକାନ୍ଦ, ଭଲ ପାଇବା, ଆବେଗ, ଅନୁରାଗକୁ ନେଇ ଏକ ସଫଳ ସୃଷ୍ଟି । ଭିନ୍ନ ଭିନ୍ନ ଚ଼ରିତ୍ରକୁ ନେଇ ଯେବେ ମୁଁ ଲେଖି ବସେ ସମ୍ପୂର୍ଣ୍ଣ ରୂପେ ସେମାନଙ୍କ ଭିତରକୁ ପ୍ରବେଶ କରିବାର ଚେ଼ଷ୍ଟା କରି ଜୀବନ୍ତ ଓ ବୁଦ୍ଧିମନ୍ତ କରିବାର ପ୍ରୟାସ କରିଛି । ହୋଇପାରେ ତାହା ଭଲ ପାଇବାର ବା ଯନ୍ତ୍ରଣାର । ମାଟି, ଆକାଶ, ବନ, ପାହାଡ଼ର ସ୍ୱର୍ଗୀୟ ସୁଷମା ଧସେଇ ପଶି ଆସିଛନ୍ତି ମୋ ଗଳ୍ପ ଗୁଡ଼ିକ ମଧ୍ୟକୁ । ଏତିକିବେଳେ ମନେ ପଡ଼େ ସେଇମାନଙ୍କୁ ଯେଉଁମାନେ ମୋର ସୃଜନଶୀଳତାର ଅଂଶ ହୋଇ ଯାଇଛନ୍ତି, ପ୍ରେରଣା ଦେଇଛନ୍ତି ପ୍ରଥମ ପାଠକ ରୂପେ ଓ ପାଣ୍ଡୁଲିପି 'ଅପରୂପା'ର ଆତ୍ମ ପ୍ରକାଶକୁ । ପ୍ରଥମେ ଅଶେଷ କୃତଜ୍ଞତା ଜଣାଏ ମୋର ପତିଦେବ ରାଜନୀତିଜ୍ଞ, ସଫଳ ସାହିତ୍ୟିକ ଡଃ. କାର୍ତ୍ତିକେଶ୍ୱର ବାବୁଙ୍କୁ । ଧନ୍ୟବାଦ ଦେବି ମୋର ଗଳ୍ପର ପ୍ରଥମ ପାଠକ ମୋର ପୁଅ, ଝିଅ ଓ ଜ୍ୱାଇଁ ବେବୀ, କଟି, ମିନି, ପାପୁ, ପ୍ରଶାନ୍ତ ଓ ପରେଶକୁ । ଆଶା କରେଁ ପାଠକ ପାଠିକାଙ୍କ ଠାରେ 'ଅପରୂପା' ଆଦୃତ ହେବ ।

*ଉମାରାଣୀ*



# ଏଥିରେ ଅଛି .........



.........

# ଅପରୂପା

ମାଉସୀ, ମାଉସୀ ମ ! ଡାକି ଡାକି ଦାଣ୍ଡରେ ଛିଡ଼ା ହୋଇ କଲିଂବେଲ୍‌ର ସୁଇଚ୍‌ଟିକୁ ଦବାଇ ଚାଲିଥାଏ ସୀମା । ପ୍ରାୟ ଦଶ ମିନିଟ୍ ହେବଣି, କଲିଂ ବେଲ୍ ବାଜି ଚାଲିଛି, ମାତ୍ର କବାଟ ଖୋଲିବାକୁ ମାଉସୀ ଆସୁନାହାନ୍ତି କାହିଁକି ? କ'ଣ ଭାବି ଫେରି ଆସୁଥିବା ସମୟରେ ମଉସାଙ୍କୁ କାଦୁଅ ବୋଳା ହାତରେ ଦେଖି ପଚାରିଲା ମଉସା, ମାଉସୀ ?

ଆରେ ତୋ ମାଉସୀ ପରା ଗାଧୁଆ ଘରେ ଥିବ, ବାରିପଟ ଖୋଲା ଅଛି ଭିତରକୁ ଆସେ, କହି ମଉସା ହାତ ଧୋଇବାକୁ ବେସିନ୍ ପାଖକୁ ଗଲେ । ସକାଳୁ ସକାଳୁ ଉଠି ବଗିଚାରେ ଗଛ ଗୁଡ଼ିକ ସହିତ ଲାଗିବା ମଉସାଙ୍କ ନିତି ଦିନିଆ କାମ ।

ସୀମା ଦେଖିଲା ଘଣ୍ଟାରେ ସେତେବେଳକୁ ନଅଟା ବାଜିଲାଣି, କଲେଜ ବେଳ ହେଲାଣି, ସେ ଦିଗକୁ ତାର ଆଜି ଆଉ ଲକ୍ଷ୍ୟ ନାହିଁ । ସେ ଆଜି ସମ୍ପୂର୍ଣ୍ଣ ଆନମନା ହୋଇ ପଡ଼ିଥାଏ ।

ମୁଁ ଆସୁଛି ମଉସା, ମୋର କଲେଜ ଯିବା ବେଳ ହେଲାଣି, ଏଇ ଟେବୁଲ ଉପରେ ମିଠା ପ୍ୟାକେଟ୍‌ଟିକୁ ରଖି ଦେଇ ଯାଉଛି । ନିଜେ ଖାଇବେ ଓ ମାଉସୀଙ୍କୁ କହିଦେବେ ।

ଆରେ ଶୁଣ୍, କୋଉ ଖୁସିରେ ମିଠା ବାଣ୍ଟୁଛୁ ଯେ, ହେଇ ତୋ ମାଉସୀ ଆସିଲାଣି ପରା । ହେଇ ଦେଖ ମ, ସୀମା ପରା ମିଠା ବାଣ୍ଟିବାକୁ ଆସିଛି, କ'ଣ ତୋ ବାପାର ପ୍ରମୋଶନ୍ ହେଲା କିରେ ?

ନାହିଁ ମ ମଉସା, କାଲି ରାତିରେ ଭାଇଙ୍କ ଠାରୁ ଖବର ଆସିଛି, ଭାଉଜଙ୍କର ପରା ଝିଅଟିଏ ହୋଇଛି ।

ଓହୋ... ସେଥିପାଇଁ ତୁ ଖୁସିରେ ମିଠା ବାଣ୍ଟୁଛୁ । ଝିଅଟି ତ ଜନ୍ମ ହୋଇଛି, କୋଉ ପୁଅଟା ଯେ, ଝିଅ ପାଇଁ କିଏ ମିଠା ବାଣ୍ଟେ ମୁଁ ଜାଣିନି । କେବଳ ତୋତେ ହିଁ ଦେଖୁଛି, ତାଙ୍କ କଥାରେ ଭରି ରହିଥିଲା ଏକ ତାଛଲ୍ୟ ।

ମଉସାଙ୍କ କଥା ନ ଶୁଣିଲା ପରି ସୀମା ମାଉସୀଙ୍କୁ କହିଲା - ଦେଖିଲ ମାଉସୀ, ଆପଣ କହିଲେ ଆଜିକାଲି ପୁଅ ଝିଅ ଭିତରେ କ'ଣ ବା ଫରକ୍ ଅଛି । ଆପଣ କ'ଣ ଝିଅ ନୁହଁନ୍ତି, ନା ଆପଣ ମଉସାଙ୍କ ଠାରୁ ନ୍ୟୁନ । ମଉସା କ'ଣ ଆପଣଙ୍କ ଠାରୁ ଅଧିକ କାମ କରୁଛନ୍ତି । ଖାଲି ସେହି ଅଫିସ୍ ଯାଉଛନ୍ତି, ଆଉ ଟେବୁଲ୍ ଉପରେ ବସି ଢୁଳାଇ ଢୁଳାଇ ଅଧଘଣ୍ଟା ଅନ୍ତରରେ ଚାହା ପିଇ ଘରକୁ ଆସୁଛନ୍ତି, ନୁହେଁ ?

ହଁ, ମାଉସୀଙ୍କୁ କହ ଆଉ କ'ଣ କରୁଛି ?

ହଁ ହଁ ସବୁ କହିବି, ମାଉସୀ ମ ଗୋଟିଏ ସିକ୍ରେଟ୍ କଥା - ସୀମା ମାଉସୀଙ୍କ କାନ ପାଖକୁ ନିଜ ମୁହଁଟି ନେଇ ଯାଇ ଫିସ୍ ଫିସ୍ କରି କହିଲା, ତାଙ୍କ ଅଫିସର ଗୋଟିଏ ସୁନ୍ଦରୀ କିରାଣୀ ଝିଅଟିଏ ଜଏନ୍ କରିଛି, ତାରି ପଛରେ ପରା ଲାଇନ୍ ମାରୁଛନ୍ତି ।

ହୋ ହୋ ହୋଇ ହସି ଉଠିଲେ ମାଉସୀ, ଝିଆରୀ ଦିହେଁ । କ'ଣ ହେଲା, ମୋ ବିରୁଦ୍ଧରେ ମିଛ କଥା ସବୁ ଗପୁଛୁ ନୁହେଁ, ସୀମାର ମୁଣ୍ଡ ବାଳକୁ ଭିଡ଼ି ଧରିଲେ ମଉସା । ମାଉସୀ, ମୋ ଚୁଟି ସବୁ ଉପୁଡ଼ି ଯିବ, ଚିତ୍କାର କରି ଉଠିଲା ସୀମା । ଆଉ କେବେ ବି କହିବିନି ଛାଡ଼ି ଦିଅ ମଉସା, ପ୍ଲିଜ୍ ଛାଡ଼ି ଦିଅ ।

ସେନାପତି ବାବୁ ତାକୁ ଛାଡ଼ି ଦେଲେ ଆଉ ବେଳ ହେଲାଣି କହି ଡେଇଁ ଡେଇଁ ଚାଲିଗଲା ସୀମା ।

ପଛରୁ ପୁଣି ସେନାପତି ବାବୁ ତାକୁ ଚିଡ଼େଇବାକୁ ଲାଗିଲେ, ଯାଃ, ଯାଃ ଝିଆରୀ ଜନ୍ମ ହୋଇଛି ବୋଲି କ'ଣ ନା ମିଠା ବାଣ୍ଟୁଛି, ଲାଜ ନାହିଁ ।

ସୀମା ବି ଛାଡ଼ିବାର ନାହିଁ, ହଁ ମ ମଉସା, ଇଏତ ଖାଲି ମିଠା ବାଣ୍ଟୁଛି, ଦେଖିବ ମାଂସ ଭୋଜି ଦେବି, ଆଉ ତୁମେ ହିଁ ଖାଇବାକୁ ଆସିବ ଯେ.... ଏଇ ସୀମା ପଡ଼ିଶା ଘରର ପଟ୍ଟନାଏକ ବାବୁଙ୍କ ଝିଅ, ଭାରି ମେଳାପୀ । ସଦ୍ୟ ପାଶ୍ କରି ପାଖ କଲେଜରେ ଅଧ୍ୟାପିକା ଭାବେ ଜଏନ୍ କରିଛି ।

ତର ତର ହୋଇ କଲେଜ ବାହାରୁଛି ସୀମା । ଗୁଣୁ ଗୁଣୁ ହୋଇ ଗୀତ ଗାଇ ଚାଲିଥାଏ । ସେ ଆଜି ଭାରି ଖୁସି ମେଜାଜ୍‌ରେ ଅଛି । ତା ଗୋଡ଼ ତଳେ ପଡୁନଥାଏ, କଲେଜ୍ ସାରା ଆଜି ମିଠା - ବାଣ୍ଟିବାକୁ ହେବ । ସମସ୍ତଙ୍କୁ ବୁଲିବୁଲି କହିବ, ତାର ଗୋଟିଏ କଣ୍ଢେଇ ପରି ଝିଆରୀଟିଏ ହୋଇଛି ।

ଏକେତ ଆଜି ଡେରୀ ହୋଇଗଲାଣି, ପୁଣି ବାଟରେ ମିଠା ନେବା ପାଇଁ ସୀମାକୁ ଅଟକିବାକୁ ପଡ଼ିବ । ମିଠା ପ୍ୟାକେଟ୍ ଧରି ସେ ପ୍ରଥମେ ଯାଇ ଷ୍ଟାଫ୍ କମନ୍‌ରୁମ୍‌ରେ କାଶିଆ ପିଅନ୍‌କୁ ଡାକି ଧରାଇ ଦେଲା ଓ କହିଲା, ସମସ୍ତଙ୍କୁ ମିଠା ବାଣ୍ଟି ଦେ, ବୁଝିଲୁ ।

ସୀମା, ମେଡାମ୍‌ଙ୍କର ଖୁସି ଦେଖି କାଶିଆ କହି ଉଠିଲା, 'ମେଡାମ୍ ଆପଣଙ୍କର

ବାହାଘର ଠିକ୍ ହୋଇଗଲା ନା କ'ଣ ?'

ଆରେ ଯାଃ - କହିଲା କ'ଣ ନା ବାହାଘର ଠିକ୍ ହୋଇଗଲା, ମୂର୍ଖ । ଟିକିଏ ସହମି ଯାଇ ଚୁପ୍ କରି ଛିଡ଼ା ହୋଇଗଲା କାଶିଆ, ତେବେ ଅନ୍ୟ ମାନେ ପଚାରିଲେ, କ'ଣ କହିବି ଆଜ୍ଞା ।

ଆରେ କହିବୁ ସୀମା ମେଡାମ୍‌ଙ୍କର ଭାଉଜଙ୍କର ଝିଅଟିଏ ଜନ୍ମ ହୋଇଛି, ସେଥିପାଇଁ ମେଡାମ୍ ... ବୁଝିଲୁ ?

ହଠାତ୍ କାଶିଆର ମୁହଁଟି ଶୁଖିଗଲା ।

ଆରେ କ'ଣ ହେଲା ? ତୋ ମୁହଁ ଶୁଖିଗଲା କାହିଁକି ?

ହଁ ମେଡାମ୍, ବାପା ବୋଉ କଥା ମନେ ପଡୁଛି । ମୋର ଦୁଇ ଭଉଣୀଙ୍କ ବାହାଘର ପାଇଁ ବାପା, ବୋଉ ବହୁତ ଦୁଃଖରେ ଅଛନ୍ତି । ଗରିବ ଘର, ଯୌତୁକ ଦେବା ପାଇଁ ସାମର୍ଥ୍ୟ ନାହିଁ । ଦିନ ଗଡ଼ି ଗଡ଼ି ଚାଲିଛି, ବଢ଼ିଲା ଝିଅର ବାପା ମାଆ, ଭାଇର ଅବସ୍ଥା କ'ଣ ଆପଣ ବୁଝି ପାରୁଥିବେ ମେଡାମ୍ । ଗାଆଁ ସ୍କୁଲ ପାଠ ସରିଲା ପରେ ବି ଭଉଣୀ ଘରେ ବସିଛନ୍ତି । କହୁ କହୁ ଏକ ରକମ୍ କାନ୍ଦି ପକାଇଲା କାଶିଆ ।

ସୀମା ମେଡାମ୍ ଉଠି ଯାଇ କାଶିଆ ପିଠିରେ ହାତ ଥାପୁଡ଼ାଇ ତାକୁ ଶାନ୍ତ କରାଇବାକୁ ଚେଷ୍ଟା କଲେ । କାଶିଆକୁ କହିଲେ, ଦେଖ୍, ଝିଅ ଜନମ କ'ଣ ଖାଲି ପର ଘରକୁ, ସଂସାର କରିବେ ଓ ପିଲା ଜନ୍ମ କରି ସେଥିରେ ଘାଣ୍ଟି ହେବେ । ତୁ ଜମା ବ୍ୟସ୍ତ ହଅନା । ମଞ୍ଚେଶ୍ୱରରେ ମୋର ଜଣେ ମାଉସୀ ପୁଅ ଭାଇ ଫ୍ୟାକ୍ଟ୍ରି କରିଛି । ସେଠାରେ ଧୂପକାଠି, ମହମ ବତୀ ଓ ସାବୁନ୍ ଇତ୍ୟାଦି ତିଆରି ହେଉଛି । ତୋ ଭଉଣୀକୁ ଗାଁରୁ ଡାକି ଆଣେ, ସେମାନଙ୍କୁ କାମରେ ଲଗେଇ ଦେବି ।

କାଶିଆ, କୃତ୍ୟକୃତ୍ୟ ହୋଇ ମେଡାମ୍‌ଙ୍କର ଗୋଡ଼ତଳେ ଲୋଟି ପଡ଼ିଲା - ଆପଣଙ୍କର ଏପରି ସାହାଯ୍ୟ - ଜୀବନରେ କେବେ ବି ଭୁଲି ପାରିବିନି, ସବୁଦିନ ପାଇଁ ଋଣୀ ହୋଇ ରହିଯିବି ।

ଛି, ଏମିତି କ'ଣ କହନ୍ତି, ଆଗ ତୁ ଗୋଟିଏ ମିଠା ଖାଇଲୁ, ମିଠାଟିଏ ତା ପାଟିରେ ନିଜେ ଖୁଆଇ ଦେଲେ ସୀମା । ଖୁସିରେ କାଶିଆର ଆଖିରୁ ଅଶ୍ରୁ ବହିଗଲା ।

ମିଠା ପ୍ୟାକେଟ୍‌ଟି ନେଇ କାଶିଆ ନାଚି ନାଚି ଚାଲିଗଲାଣି, ସୀମା ଅନେଇଥାଏ ତାର ଯିବା ବାଟକୁ, ସତରେ କେଡ଼େ ସରଳ ଏମାନେ । ଆମ ସମାଜରେ ଝିଅମାନେ କ'ଣ ପଣ୍ୟବସ୍ତୁ ? କାଶିଆ ପରି ଏମିତି କେତେ ଘର ସମସ୍ୟା ଘେରରେ । ଝିଅ ପ୍ରତି ବାପା, ମାଆଙ୍କ ମନରେ ସ୍ନେହ ଶ୍ରଦ୍ଧା ଥିଲେ ବି ସେମାନେ ନାଚାର । ଦୁଃଖମୟ ସଂସାରରେ ସେମାନେ ବୋଝ ଉପରେ ନଳିତା ବିଡ଼ା ସଦୃଶ ମନେ ହୁଅନ୍ତି । ସମାଜର ଆଭିମୁଖ୍ୟ ଅତି ନିକୃଷ୍ଟ ଧରଣର । ଶିକ୍ଷିତ ଭଦ୍ର ପରିବାରରେ ବଧୂହତ୍ୟା, ଯୌତୁକ ନିର୍ଯ୍ୟାତନା ଭଳି ଘଟଣା ମାନ ବି ଘଟି ଚାଲିଛି । କାହା ଘରେ ମାଆ ନାହିଁ, କାହା

ଘରେ ନଣନ୍ଦ ନାହିଁ, କାହା ଘରେ ବଧୂ ନାହିଁ, ତେବେ ଏଥିପାଇଁ ଦାୟୀ କିଏ ? ଝିଅ ପ୍ରତି ଏଇ ଥାର୍ଡ଼ କ୍ଲାସ୍ ଚିନ୍ତାଧାରାକୁ ଜନ୍ମ ଦେଇଛି କିଏ ? ନାରୀଟିଏ ନାରୀର ଶତ୍ରୁ ହୋଇ ଉଠେ କିପରି ? ସଂସାରକୁ ସୃଷ୍ଟି କରିବା, ଭାଙ୍ଗିବା ଗଢ଼ିବା ହିଁ ତ ଏଇ ନାରୀର ଭୂମିକା । ଏଇ ନାରୀମାନେ କ'ଣ ବଦଳିବେ ନାହିଁ ? ଯେବେ ନାରୀ ମାନେ ବଦଳିବେ, ତେବେ ଯାଇ ଏଇ ହୀନମନ୍ୟତା ବଦଳିବ, ନଚେତ୍ ସମ୍ପୂର୍ଣ୍ଣ ଅସମ୍ଭବ । ଏମିତି ଅକାଳରେ ଝରି ପଡ଼ିବେ କେତେ କେତେ ପୁଷ୍ପ କଳିକା ସମ୍ପୂର୍ଣ୍ଣ ଫୁଟିବା ଆଗରୁ । ମନେ ମନେ ସଂଗ୍ରାମୀ ହୋଇ ଉଠିଲା ସୀମା, ଦରକାର ହେଲେ ତାକୁ ଯଦି ଏଥିପାଇଁ ଲଢ଼ିବାକୁ ପଡ଼େ, ତେବେ ସେ କେବେ ବି ପଛେଇବ ନାହିଁ । ତା ପରିସର ମଧ୍ୟରେ ସେ ଆଗେଇ ନେବ ସେଇମାନଙ୍କୁ, ଯେଉଁମାନେ ଅବହେଳିତ ।

ଝିଅାରୀ ଜନ୍ମ କଥା ଶୁଣି ଯେତିକି ପରିମାଣରେ ସେ ଖୁସି ହୋଇ ପଡ଼ିଥିଲା, ହଠାତ୍ ତା ମୁହଁ ମଳିନ ପଡ଼ି ଗଲା ଓ ସେ ଚିନ୍ତାରେ ବୁଡ଼ିଗଲା ।

ଏତିକିବେଳେ ପ୍ରୀତି ମେଡାମ୍ କମନ୍‌ରୁମ୍‌ରେ ଆସି ମିଠା ପାଇଁ ଥ୍ୟାଙ୍କସ୍ ଜଣାଇଲେ ସୀମା ମେଡାମ୍‌ଙ୍କୁ ଓ କହିଉଠିଲେ, ଚିନ୍ତାନ୍ୱିତ ଦେଖା ଯାଉଛନ୍ତି ? ନାଇଁ, ନାଇଁ ସେ କିଛି ନୁହେଁ, ହଠାତ୍ ମୁଣ୍ଡଟା ବିନ୍ଧୁଛି ।

ସମୟ ଗଡ଼ି ଚାଲେ, କାହାକୁ ଅପେକ୍ଷା କରେ ନାହିଁ । ଯା ମଧ୍ୟରେ ସୀମା ପି.ଏଚ୍.ଡି. କରି ଡକ୍ଟରେଟ୍ ପାଇଛନ୍ତି ଓ ରିଡ଼ର ବି ହୋଇଗଲେଣି । କଲେଜରେ ସେ ଗଣିତ ବିଭାଗର ମୁଖ୍ୟ ଦାୟିତ୍ୱରେ ଅଛନ୍ତି ।

କେବଳ ଅଧ୍ୟାପନା କାର୍ଯ୍ୟ ନୁହେଁ, ଅନ୍ୟ ପଟେ ସୀମା ମେଡାମ୍ ଜଣେ ସମାଜ ସେବୀ ଭାବେ ବେଶ୍ ପରିଚିତା । କେବଳ ପାଠ ପଢ଼ାଇବା ନୁହଁ, ସମାଜରେ ମହିଳା ମାନଙ୍କର ମାନଦଣ୍ଡ ବଢ଼ାଇବାରେ ଅନବରତ ତାଙ୍କର ଲକ୍ଷ୍ୟ । 'ନାରୀ' ଏକ ମହିଳା ପତ୍ରିକାର ସମ୍ପାଦିକା ଭାବେ କାର୍ଯ୍ୟରତା । ମେଗାଜିନ୍‌ଟି ଆଦୃତ ହୋଇ ପାରିଛି ସବୁ ମହଲରେ । ଉତ୍କୃଷ୍ଟ ଧରଣର ଲେଖାମାନ ସ୍ଥାନ ପାଇଥାଏ ।

ବାପା ରିଟାୟାର୍ଡ଼ କଲା ପରେ ବାପା, ବୋଉଙ୍କର ସେବା ଯତ୍ନ ମୋଟା ମୋଟି ସେମାନଙ୍କର ପରିଣତ ବୟସରେ ସେ ହିଁ ଏକମାତ୍ର ଭରସା । ଭାଇ ତ କମ୍ପାନୀ ଚାକିରୀ କରି ସବୁବେଳେ ବାହାରେ । ବର୍ଷକରେ ଥରେ ବି ଘରକୁ ଆସିବା ସମ୍ଭବ ହୋଇ ପାରେନା । ସୀମାକୁ ଆସି ବୟସ ପଇଁଚାଳିଶ ପାଖାପାଖି ହେଲାଣି । ବାଳ ପାଚିବା ଆରମ୍ଭ କରିଛି, ଚଷମା ନ ଲଗାଇ ପାଠ ପଢ଼ାଇବା ଅସମ୍ଭବ । ଆଇନା ଆଗରେ ଛିଡ଼ା ହୋଇ ନିଜକୁ ନିରେଖି ଦେଖିବାକୁ ବେଳ ନାହିଁ ସୀମା ପାଖରେ । ଦୁନିଆର ସବୁ ଜଞ୍ଜାଳକୁ ସେ ଯେମିତି ମୁଣ୍ଡେଇଛି ।

ପ୍ରତିବର୍ଷ ପରି ଏ ବର୍ଷ ଦଶହରା ଆସିଛି । କିଛିଦିନ ବେଶ୍ ଛୁଟି ମିଳେ । ଭାଇ, ଭାଉଜ, ଅତି ଗେହ୍ଲା ଝିଅାରୀ ପିଙ୍କି ଆସନ୍ତି । ସେଇ କେତୋଟି ଦିନ ଖୁବ୍

ମଜାରେ କଟିଯାଏ । ସେମାନେ ଆସିବା ଆଗରୁ ଚିଠି ଆସି ପହଞ୍ଚିଯାଏ, କେବେ, କେଉଁ ଟ୍ରେନ୍‌ରେ, କେତେବେଳେ ପହଞ୍ଚିବେ । ମାତ୍ର ଏଥର ଚିଠି ପାଇ ହତାଶ ହୋଇ ପଡ଼ିଲା ସୀମା । ବାପା, ମାଆଙ୍କୁ କ'ଣ ବା କହିବେ, ତାଙ୍କ ପୁଅ ବୋହୂ ବଦଳରେ, କେବଳ ଗେହ୍ଲା ନାତୁଣୀ ପିଙ୍କି ଆସୁଛି । ଭାଇ ଆଉ ଏକ ନୂଆ କମ୍ପାନୀରେ ନୂଆକରି ଜଏନ୍ କରି ଥିବାରୁ ଛୁଟି ମିଳିବନି । ମନଟା ଉଦାସିଆ ହୋଇଗଲା ସୀମାର । ବାପା, ବୋଉ ମନ ଦୁଃଖ କଲେ । ହେଲେ ପିଙ୍କି ଆସୁଥିବାରୁ ସବୁ ଦୁଃଖ, ଉଦାସ ହାରମାନିଗଲା ବାପା, ବୋଉ ମଧ୍ୟ ଖୁସି ହେଲେ ।

ପିଙ୍କି ଆଉ ସେଦିନର ଥାକୁଲୁ ଥାକୁଲୁ କରି ଚାଲୁଥିବା କଣ୍ଢେଇଟିଏ ହୋଇ ନାହିଁ । ସେ ଏବେ ମେଡିକାଲ୍ ଷ୍ଟୁଡେଣ୍ଟ, ହାଉସ୍ ମ୍ୟାନ୍‌ସିପ୍‌ର ଶେଷ ବର୍ଷ । ସୀମାର ପିଙ୍କି, ପ୍ରତି ଅଶେଷ ଦୁର୍ବଳତା, ତା ହୃଦୟରେ ଆନନ୍ଦର ଉଦ୍‌ବେଳନ, ପିଙ୍କି ଆସିବ ।

ପୁରୁଷୋତ୍ତମ୍ ଏକ୍ସପ୍ରେସ୍ ଠିକ୍ ସମୟରେ ଆସି ପହଞ୍ଚିଲା ଭୁବନେଶ୍ୱର ଷ୍ଟେସନ୍‌ରେ । ଟ୍ରେନ୍ ପହଞ୍ଚିବା ସାଙ୍ଗେ ସାଙ୍ଗେ କୁଲି ମାନଙ୍କର ଦୌରାତ୍ମ୍ୟ ଆରମ୍ଭ ହୋଇଗଲା । ଯାତ୍ରୀ ଓହ୍ଲାଉ ନ ଓହ୍ଲାଉ ଆଗ ସେମାନେ ଚଢ଼ିଯିବେ ବଗି ଭିତରକୁ । ଏ.ସି.ରେ ଏକ ନମ୍ବର ବଗିରେ ଆସିଛି ପିଙ୍କି । ସୀମା ଅନେଇ ଥାଆନ୍ତି ଭିଡ଼ ଭିତରେ ପିଙ୍କି କେତେବେଳେ ଓହ୍ଲାଇବ । ସୀମାଙ୍କର ଅପେକ୍ଷାର ଅବସାନ ଘଟାଇ ହଠାତ୍ ପଛପଟୁ ଆସି କୁଣ୍ଢାଇ ଧରିଲା ପିଙ୍କି । ସୀମା, ଆନନ୍ଦରେ ବିଭୋର ହୋଇ ଉଠିଲେ ଓ ପିଙ୍କିର କପାଳର ଚୁମ୍ବନଟିଏ ଆଙ୍କି ଦେଲେ ।

ଟ୍ରେନ୍‌ରୁ ଓହ୍ଲାଇ ପିଙ୍କିର ପ୍ରଶ୍ନ ପରେ ପ୍ରଶ୍ନ ଆରମ୍ଭ ହୋଇଗଲା । ସୀମାନୀ ତୁ କେମିତି ଅଛୁ, ଜେଜେ ଓ ମାଆ କ'ଣ କରୁଥିଲେ । ତୁ ଅପେକ୍ଷା କରି କରି ବୋର୍ ହୋଇ ଯାଇଥିବୁ ନୁହେଁ ? ଏମତି କେତେ ପ୍ରଶ୍ନ ଏକାଥରେ ପିଙ୍କିର ।

ଷ୍ଟେସନ୍‌ଟିରେ କ୍ରମେ ଭିଡ଼ ବଢୁଥାଏ, ହେଉ ଏସବୁ କଥା ଘରେ ଯାଇ ହେବା ବୁଝିଲୁ । ତୋ ଲଗେଜ୍ ଧର, ଆଗ ଏଠାରୁ ବାହାରକୁ ଚାଲ । ଏପର୍ଯ୍ୟନ୍ତ ତୋର ଦୁଷ୍ଟାମି ଛାଡ଼ିଲାନି, ଦୁଷ୍ଟ ବୋଲି କହି ପିଙ୍କିର ଗାଲକୁ ଚିପି ଦେଲେ ଆଦରରେ । କୁଲିଟିଏ ପିଙ୍କିର ଜିନିଷ ଧରି ଆଗେ ଆଗେ ଚାଲିଥାଏ, ତା ପଛରେ ପିଙ୍କି ଓ ସୀମା । ବାହାରେ ମାରୁତି କାର୍‌ଟି ଅପେକ୍ଷା କରିଥାଏ ସେମାନଙ୍କୁ ।

ଜେଜେ ଓ ମାଆ ପିଙ୍କିକୁ ପାଇ ଆନନ୍ଦରେ ଅଧିର ହୋଇ ପଡ଼ିଲେ ଓ ପିଙ୍କିକୁ କୁଣ୍ଢାଇ ପକାଇ ଚୁମ୍ବନରେ ଭରିଦେଲେ । ସେମାନଙ୍କ ଆଖିରୁ ଆନନ୍ଦାଶ୍ରୁ ବହିଗଲା । ପିଙ୍କି ମୁଣ୍ଡିଆ ମାରି ବୁଢ଼ୀ ମାଆର ବେକକୁ ଧରି ତା ଗାଲରେ ନିଜ ଗାଲକୁ ଚାପି ଧରିଲା ଜୋର୍‌ରେ । ଆରେ ଆରେ ଏ କ'ଣ କରୁଛୁ କହି ମାଆ ବି ତାକୁ ଦୁଇ ହାତରେ ଭିଡ଼ି ଧରିଲେ । ମାଆ ଓ ନାତୁଣୀଙ୍କ ଗେଲ ଦେଖି ଜେଜେଙ୍କ ଆଖିରୁ ବି ଅଶ୍ରୁ ବହିବାକୁ ଲାଗିଲା । ''ଆରେ ତମେ ବୁଢ଼ା ବୁଢ଼ୀ ଦିଇଟା ସବୁଯାକ ଲୁହ କ'ଣ

ବୁହାଇ ପକାଇଲ । ରୁହ, ରୁହ ଟିକିଏ ରୁହମ, ଏମିତି ଇଞ୍ଜେକ୍ସନ୍ ଫୋଡ଼ିବି ଯେ, କାନ୍ଦି କାନ୍ଦି ହାଲିଆ ହୋଇ ପଡ଼ିବ ଯେ ।'' ପିଙ୍କିର କଥାରେ ସମସ୍ତେ ହୋ ହୋ ହୋଇ ହସି ଉଠିଲେ ।

ତୁ କେଡ଼େ ବଦ୍‌ମାସ୍ ହେଇଛୁ କିରେ, ମାଆ କହି ଉଠିଲେ ।

ବଦ୍‌ମାସ୍ କ'ଣ ହେବି, ମୁଁ ପରା ଡାକ୍ତରାଣୀ ।

ଥାଉ ଥାଉ ସେତିକି ଗେଲ ଥାଉ । ଶୀଘ୍ର ଗଲୁ ବାଥ୍‌ରୁମ୍‌ରୁ ଗୋଡ଼ ହାତ ଧୋଇ ଆସିବୁ, ଟ୍ରେନ୍‌ରେ କ'ଣ ଖାଇଥିବୁ କି ନାହିଁ, ମୁଁ ଗରମ ଗରମ୍ ଅଣ୍ଡା ଭାଜି ଦେଉଛି, ଆଳୁ ଭର୍‌ତା ଓ ବଡ଼ିଚୁରା ଲଗାଇ ଦିଟା ପଖାଳ ଭାତ ଖାଇ ଟିକେ ରେଷ୍ଟ ନେବୁ, କହି ସୀମା ଚାଲିଗଲେ ରୋଷେଇ ଘରକୁ । ବଡ଼ିଚୁରା କଥା ଶୁଣି ପିଙ୍କିର ପାଟିରୁ ଲାଳ ବହିଲା ।

ହେଉ, ହେଉ, ହେଇ ମୁଁ ଗଲି ଆଉ ଆସିଲି, ସୀମାନୀ ତୁ ରେଡ଼ି କରିଦେ ।

ସନ୍ଧ୍ୟା ସମୟ ଉପସ୍ଥିତ ପ୍ରାୟ । ପିଙ୍କି ବାଥ୍‌ରୁମ୍‌ରେ ପଶିଛି ।ସୀମା ତର ତର ହୋଇ କାମଶେଷ କଲା ଓ ପିଙ୍କିର ଖାଇବା ଥାଳି ସଜାଡ଼ି ଦେଇ ସନ୍ଧ୍ୟା ଦୀପ ଦେବା ପାଇଁ ଠାକୁର ଘରକୁ ଗଲା । ସଞ୍ଜବତୀ ଲଗାଇ ମୁଣ୍ଡିଆ ମାରି ଠାକୁରଙ୍କୁ ଧନ୍ୟବାଦ ଦେଲା ପିଙ୍କି ସକାଶେ । ଝିଅଟିଏ ହେଲେ ବି ପିଙ୍କି ନିଜକୁ ଗଢ଼ି ପାରିଛି, ଭଗବାନ୍ ତାକୁ ଆଶୀର୍ବାଦ କରନ୍ତୁ, ସେ ଆହୁରି ବଡ଼ ହେଉ ।

ଇତି ମଧ୍ୟରେ ପିଙ୍କି ଖାଇବାକୁ ବସିଛି, ସୀମା ଆସି ପିଙ୍କି ପାଖରେବସି ପଡ଼ିଲେ ଓ ତାଗିଦ୍ କରି ଏଇଟା ଖାଆ, ସେଇଟା ଖାଆ କହିବାକୁ ଲାଗିଲେ । ମୁରୁକି ମୁରୁକି ହସି ପିଙ୍କି ଖାଇ ଚାଲିଥାଏ, ସତେ କି ସେ ଯେମିତି ସବୁ ଖାଇ ପକାଇବ । ଖାଇ ସାରି ପିଙ୍କି ଯାଇ ସୀମାନୀର ଶେଯରେ ଗଡ଼ି ପଡ଼ିଲା ।

ଜେଜେ ଓ ମାଆ ଯାଇ ପିଙ୍କି ପାଖରେ ବସିଲେ ଓ ନିଜର ପୁଅ ବୋହୂର ଖବର ଅନ୍ତର କଥା ହେଲେ । ପିଙ୍କି କଥା ମଝିରେ କେତେବେଳେ ଶୋଇ ପଡ଼ିଛି । ସୀମା ରାତି ରୋଷେଇ ସାରି ସେ ବି ଯାଇ ଗଡ଼ି ପଡ଼ିଲା ପିଙ୍କି ପାଖରେ ଓ ପିଙ୍କି ମୁହଁ ଉପରେ ଅଲରା ବାଳଗୁଡ଼ିକୁ ସଜାଡ଼ି ଦେଲା । ପିଙ୍କି ଆରାମରେ ଶୋଇ ଘୁଙ୍ଗୁଡ଼ି ମାରୁଥାଏ । ଗୋରା ତକ ତକ ଗାଲ ଉପରେ କଳା ତିଳଟି ବେଶ୍ ମାନୁଥାଏ ପିଙ୍କିକୁ । ତା ମାଆଠୁ ବି ଲମ୍ବା ହୋଇଛି ।

ସୀମାଙ୍କର ଶୋଇବା ଘରୁ ଝରକା ଦେଇ ଆକାଶଟା କେଡ଼େ ସୁନ୍ଦର ଦେଖାଯାଏ । ଆଜି ଆକାଶରେ ଗୋଟିଏ ବି ତାରା ଦେଖା ଯାଉନି । ଉପରଓଳିରୁ କଳା ହାଣ୍ଡିଆ ମେଘଟା ସାରା ଆକାଶକୁ ଢାଙ୍କି ଦେଇଛି । ମଝିରେ ମଝିରେ ବିଜୁଳି ଚକ୍‌ମକ୍ କରୁଛି । ବର୍ଷା ହେବ ହେବର ସୂଚନା । ସୀମା କିଛି ସମୟ ଅନେଇ ରହିଲା ଶୂନ୍ୟ ଆକାଶକୁ । କଳା ଧଳା ବାଦଲ ଖାଲି ଏପଟ ସେପଟ ହେଉଥାଏ । ଯେମିତି

ବାଦଲ ଗୁଡ଼ିକ ଅପେକ୍ଷା କରି ବସିଛି ଝଲକାଏ ଥଣ୍ଡା ପବନର ସ୍ପର୍ଶକୁ । ଟିକିଏ ପବନର ଛୁଆଁ ଲାଗିଲେ ସେ ବର୍ଷି ଯିବ, ଟୋପା ଟୋପା ହୋଇ ଝରିପଡ଼ିବ ପୃଥିବୀ ବକ୍ଷରେ । ଆଃ ଈଶ୍ୱରଙ୍କ ସର୍ଜନା ବଡ଼ ବିଚିତ୍ର ।

ସୀମାଙ୍କର ଏଲାରାମ ଦିଆ ଘଣ୍ଟାଟି ବାଜି ଉଠିଲା ନଅଟା ବାଜିବାର ସୂଚନା ଦେଇ । ବାପା, ବୋଉଙ୍କର ଔଷଧ ଖାଇବାର ସମୟ ହେଲାଣି । ବିଛଣାରୁ ଉଠି ଯାଇ କାମରେ ଲାଗିଗଲେ ସୀମା । ଔଷଧ ଖାଇବାର ଠିକ୍ ଦଶ ମିନିଟ୍ ପରେ ରୁଟି, ତରକାରୀ, ବାଢ଼ିଦେଲେ ବାପା ବୋଉଙ୍କ ପାଇଁ, ସେମାନେ ଖାଇ ବସିଲେ । ପିଙ୍କି ଆଉ ଟିକିଏ ଶୋଇ ଥାଉ, ପିଲାଟା ଥକ୍କା ହୋଇ ପଡ଼ିଛି । ବାପା, ବୋଉ ଖାଇ ସାରିବା ପରେ ପୁଣି ଔଷଧ ଖାଇବେ ଓ ଶୋଇବେ । ତାଙ୍କ କାମ ସବୁ ସରୁ ଘଣ୍ଟାଟିଏ ଲାଗିବ ।

ରାତି ଆସି ଦଶଟା ହେଲାଣି । ପିଙ୍କିକୁ ନିଦରୁ ଉଠାଇବାକୁ ଚେଷ୍ଟା କଲେ ସୀମା । ମାତ୍ର ପିଙ୍କି ଉଠିବାକୁ ନାହିଁକି ଶୁଣିବାକୁ ନାହିଁ । ସେମିତି ଆରକଡ଼କୁ ଲେଉଟି ପୁଣି ଶୋଇ ପଡ଼ିଲା । ଶେଷରେ କୁତୁ କୁତୁ ଦେଇ ଉଠାଇବାକୁ ଚାହିଁଲେ ବି ତାକୁ ଯେମିତି କିଛି କାଟୁ କରୁନି । ରାତି ବଢ଼ି ଚାଲିଛି । ପିଙ୍କି, ତାକୁ ହଇରାଣ କରୁନି ତ ?

ହଇରେ ତୁ ଉଠିବୁନା, ତୋତେ ଟେକି ନେଇଯିବି । ମୋ ସୁନାଟା ପରା, ଖାଲି ପଟେ ରୁଟି ଓ ସନ୍ତୁଳା ଟିକେ ଖାଇ ପୁଣି ଶୋଇ ପଡ଼ିବୁ, ମୋ ଧନଟା ପରା ଉଠେ, ହଲାଇବାକୁ ଲାଗିଲା ସୀମା । ହଠାତ୍ ପିଙ୍କିର ହାତଟି ଯାଇ ସୀମାର କାନ୍ଧ ଉପରେ ପଡ଼ିଲା, ସୀମା ସବୁ ବୁଝିପାରିଲେ । ପିଙ୍କିର ମୁହଁକୁ ଟେକି ଧରି କହିଲେ, ହଇରେ ତୁ ବାହାନା କରି ଶୋଇ ରହି ମୋତେ ହଇରାଣ କରୁଛୁ ନୁହେଁ ? ଛୋଟ ପିଲା ହେଇଛୁ ଯେ, ତୋତେ ଟେକି ନେଇଯିବି, ରହ ତୋତେ ଗୋଟିଏ ଚେଙ୍କା .........କଥା ନ ସରୁଣୁ କଲିଂ ବେଲ୍‌ଟି ବାଜି ଉଠିଲା । ଏତେ ରାତିରେ କିଏ କଲିଂ ବେଲ ବଜାଇଲେ, ଆଶଂକାରେ ଭରିଗଲା ମନଟି ସୀମାଙ୍କର ।

ସୀମା କବାଟ ଖୋଲି ଦେଖିଲେ, ରାମୁ, ପଡ଼ିଶା ଘର ସେନାପତି ମଉସାଙ୍କ ଚାକର ଛିଡ଼ା ହୋଇଛି । ସୀମାଙ୍କୁ ଦେଖି ଭୋ ଭୋ ହୋଇ କାନ୍ଦି ଉଠିଲା ରାମୁ । ଆରେ କଥା କ'ଣ ଏମିତି କାନ୍ଦୁଛୁ କାହିଁକି ? କ'ଣ ହୋଇଛି ତୋର ।

ମୋର କିଛି ହୋଇନି ନାନୀ, ବାବୁ ବାଥ୍‌ରୁମ୍‌ରେ ପଡ଼ିଗଲେ, ମାଆ ଓ ମୁଁ ଧରାଧରି କରି ବେଡ୍‌ରେ ଶୁଆଇ ଦେଇଛୁ । ଝାଳରେ ଓଦା ହୋଇ ଯାଇଛନ୍ତି, ତୁମେ ଶୀଘ୍ର ଚାଲ, ମାଆ କାନ୍ଦୁଛନ୍ତି । ରାମୁ ଓଦା ହୋଇ ଯାଇଥାଏ, ଯା ଭିତରେ ଅସରାଏ ବର୍ଷା ବର୍ଷି ଗଲାଣି ।

ହେଉ, ହେଉ, ବ୍ୟସ୍ତ ହଅନା, ତୁ ଯାଆ, ମୁଁ ଆସୁଛି ସାଙ୍ଗେ ସାଙ୍ଗେ ।

ପଛକୁ ବୁଲିପଡ଼ି ଦେଖେ ତ ପିଙ୍କି ଛିଡ଼ା ହୋଇଛି । ଆରେ ଦୁଷ୍ଟ ତୁ ଉଠି ପଡ଼ିଲୁଣି, ଭଲ ହେଲା, କବାଟ ଦେଇ ଦେ, ମୁଁ ମଉସାଙ୍କ ଘରୁ ଆସୁଛି । ହଁ ମୋର ଯଦି ଡେରି ହୁଏ, ତେବେ ଖାଇ ନେଇ ଶୋଇ ପଡ଼ିବୁ । ସୀମାନି ତମେ ଯାଇ କ'ଣ କରିବ ଯେ, ମୁଁ ସବୁ ଶୁଣିଛି, ତମ ଭଉସାଙ୍କର ହାଇ ପ୍ରେସାର ପାଇଁ ଏ ଦଶା ହୋଇଛି । ଚାଲ ଦେଖିବା କ'ଣ ହୋଇଛି । ସେତେବେଳକୁ ମାଆ ବି କ'ଣ ହେଲା ବୋଲି ଜାଣିବା ପାଇଁ ଉଠି ଆସିଲାଣି ।

ସୀମା, ବୋଉଙ୍କୁ ସବୁ କଥା କହି ପିଙ୍କିଙ୍କୁ ନେଇ ଚାଲିଲେ ମଉସା ଘରକୁ ।

ରୋଗୀ ଅଚେତ ପ୍ରାୟ, ଅବସ୍ଥା ଟାଇମ୍ ଟୁ ଟାଇମ୍ ବିଗିଡ଼ିବାକୁ ଲାଗିଥାଏ । ଛୋଟ ବ୍ୟାଗରୁ ଷ୍ଟେଥୋଟିକୁ ବାହାର କରି ହାର୍ଟବିଟ୍ ଓ ପଲସ୍ ସିଚୁଏସନ୍ ଦେଖିବାକୁ ଲାଗିଲା ପିଙ୍କି । ପ୍ରେସର ଯୋଗୁଁ କପାଳରେ ପ୍ରଚୁର ସ୍ୱେଦବିନ୍ଦୁ ଜମି ଯାଉଥାଏ । ପିଙ୍କି ସାଙ୍ଗେ ସାଙ୍ଗେ ବ୍ୟାଗରୁ ଇଞ୍ଜେକ୍ସନ୍‌ଟି ବାହାର କରି ଫୋଡ଼ି ଦେଲା ସେନାପତି ବାବୁଙ୍କୁ ଓ ନିଜ ଲେଖା ପ୍ୟାଡ୍ ବାହାର କରି କିଛି ଔଷଧ ମଗାଇବାକୁ ରାମୁକୁ ଧରାଇ ଦେଲା ।

ପିଙ୍କି, ସେନାପତିବାବୁଙ୍କ ମୁଣ୍ଡ ପାଖରେ ଟେବୁଲ ଫ୍ୟାନ୍‌ଟିକୁ ରଖି ସୁଇଚ୍ ଅନ୍ କରିଦେଲା ଓ ପଲ୍‌ସ ଅବସ୍ଥା ମାପିବାକୁ ଲାଗିଲା । ରାମୁ ପାଞ୍ଚମିନିଟ୍ ମଧ୍ୟରେ ଔଷଧ ଧରି ଆସି ପହଞ୍ଚିଲା । ରାମୁକୁ ଛୋଟ ଧନ୍ୟବାଦଟି ଦେଇ ରୋଗୀର ଜିଭ ତଳେ ଗୋଟିଏ ଟେବ୍‌ଲେଟ୍ ଥୋଇଦେଲା ପିଙ୍କି । ସାରା ରାତି ଟ୍ରିଟ୍‌ମେଣ୍ଟ ଚାଲିଲା । ଏକ ଲୟରେ ସେମିତି ଗୋଟିଏ ଚେୟାରରେ ବସିଥାଏ ପିଙ୍କି । ମଝିରେ ମଝିରେ ପ୍ରେସର୍ ଚେକ୍ କରି ଚାଲିଥାଏ । ଭାରି ସିରିଅସ୍ ଜଣା ପଡୁଥାଏ ପିଙ୍କି । ସୀମା ଦେଖି ଚାଲିଥାଏ ପିଙ୍କିର କାର୍ଯ୍ୟକଳାପକୁ, ଏଇ ଟିକିଏ ଆଗରୁ ନିଦରେ ଟଳମଳ ହେଉଥିବା ଅଝଟିଆ ଝିଅଟି ଏଇ ପିଙ୍କି । ତା ଆଖିରେ ଯେମିତି ନିଦ ନାହିଁ । ସମଗ୍ର ମୁହଁରେ ବ୍ୟସ୍ତତାର ଛାପ । ରୋଗୀର ଚେତା ଫେରାଇବାକୁ ପଡ଼ିବ । ରୋଗୀର ଯାହା ଅବସ୍ଥା ଆଉ ଟକିଏ ଡେରି ହୋଇଥିଲେ, ହୁଏତ ହେମାରେଜ୍ ହୋଇ ଯାଇଥାଆନ୍ତା । ଜୀବନ ପାଇବା ମୁସ୍କିଲ ହୋଇ ଯାଇ ଥାଆନ୍ତା, ତା ଉପରେ ବୟସାଧିକ୍ୟ । ରାତ୍ରିର ଶେଷ ପ୍ରହର, ଭୋର ହେବା ହେବା ଉପରେ, ସେନାପତି ବାବୁ ଆଖି ଖୋଲିଲେ । ଯାଡ଼େ ସିଆଡ଼େ ଅନାଇ ଯେପରି କାହାକୁ ଖୋଜୁ ଥାଆନ୍ତି । ପିଙ୍କି ଓଠରେ ଧୀରେ ହସ ନେସି ହୋଇଗଲା । ହେଇଟି ଆପଣଙ୍କ ପାଖରେ ସମସ୍ତେ ଅଛନ୍ତି, କିଛି ଚିନ୍ତା କରନ୍ତୁନି । ଦେଖାନ୍ତୁ ଡାହାଣ ହାତଟାଟିକେ ଦେଖାନ୍ତୁ । ପୁଣି ପ୍ରେସାର ମାପି ଦେଖିଲା ପିଙ୍କି, ଧୀରେ ଧୀରେ ପ୍ରେସର କମି ଆସୁଥାଏ । ଅବଶ ଆଖିପତା ଦୁଇଟି ପୁନଶ୍ଚ ମୁଦି ହୋଇ ଗଲା ସେନାପତି ବାବୁଙ୍କର ।

ପ୍ରାୟ ସମସ୍ତେ ଢୁଳାଇ ପଡ଼ିଛନ୍ତି, ସୀମା ବି ଟେବୁଲ ଉପରେ ମୁଣ୍ଡରଖି ଶୋଇ

ପଢ଼ିଛନ୍ତି । ଡାକିବାକୁ ଇଚ୍ଛା ହେଲାନି ପିଙ୍କିର । ରାମୁକୁ ଡାକି ସବୁ ବୁଝାଇ ଦେଇ ପିଙ୍କି ଘରକୁ ଚାଲିଗଲା ଓ ପୁଣି ଠିକ୍ ସମୟରେ ଆସିବ ବୋଲି କହି ଦେଇଗଲା ।

ସିନ୍ଦୁରା ଫାଟିଲାଣି, ଶୀତୁଆ ଶୀତୁଆ ବାଆ ବହୁଥାଏ । କୁମ୍ଭାଟୁଆ ଲମ୍ବାସ୍ୱର ମେଲି ଦେଇଥାଏ । ରାତି ପାହିବାର ସୂଚନା ଦେଇ । ଜାଗି ଉଠିଲେ ପୃଥିବୀ ବାସୀ, ଜାଗି ଉଠିଲେ ସେନପତି ମଉସା, ମାଉସୀ ଓ ସୀମା । ସୀମା , ମଉସାଙ୍କ କପାଳରେ ହାତ ବୁଲାଇ ଚାଲିଥାଏ ।

ସୀମାକୁ ଅନାଇ ରହିଲେ ମଉସା ଓ ତାଙ୍କ ମୁହଁରେ ଅନେକ ପ୍ରଶ୍ନବାଚୀ । ସୀମା ସବୁ ବୁଝି ପାରିଲେ ଓ ମଉସାଙ୍କୁ ପିଙ୍କି ବିଷୟରେ ସବୁ ଗପି ଚାଲିଲେ ।

ସେନାପତି ବାବୁଙ୍କ ଦୁଇ ଆଖିରୁ ଅଶ୍ରୁଧାର ବହିଗଲା । ଆରେ ଆପଣ କାନ୍ଦୁଛନ୍ତି କାହିଁକି, ପିଙ୍କି ପୁଣି ଆପଣଙ୍କୁ ଚେକ୍ କରିବାକୁ ଆସିବ । ସେ ଏଇ ଭୋର୍‌ଟାରେ ଏଠାରୁ ଯାଇଛି, ଟିକିଏ ରେଷ୍ଟ ନେଇଥିବ । ତାପରେ ଆପଣଙ୍କର ଯାହା ଅବସ୍ଥା, ଏ ବେଳରେ ଆପଣ କିଛି ବି ଚିନ୍ତା କରନ୍ତୁନି, ଆମେ ସମସ୍ତେ ଅଛୁ ପରା । ସେନାପତି ମଉସା ଚାପି ଧରିଲେ ସୀମାର ହାତକୁ ଆବେଗରେ । ମଉସୀ ଘର ଭିତରୁ ଦୁଇକପ୍ ଚାହା କରି ନେଇ ଆସିଲେ । ଗୋଟିଏ କପ୍ ସୀମାକୁ ଦେଇ ଆର କପ୍‌ଟି ସେନାପତି ବାବୁଙ୍କ ଆଡ଼କୁ ବଢ଼ାଇ ଦେଲେ ।

ସେନାପତି ବାବୁ କପ୍‌ଟି ମୁହଁରେ ଲଗାଇ ଟିକିଏ ଚାହା ନେଇଛନ୍ତି କି ନାହିଁ, ଥୁ ଥୁ କରି କାଢ଼ି ପକାଇଲେ । ଚିନି ନ ପକାଇ କ'ଣ ଚାହା କରିଛ ? ମାଉସୀଙ୍କର ବିକଳ ଚାହାଣୀ, କ'ଣ ବା କହିବେ ସେ ଭାବି ପାରିଲେନି ।

ସୀମା କହିଲେ, ମଉସା ମ, ଆମ ଟିକି ଡାକ୍ତରଙ୍କର ହୁକୁମ ପରା, ମିଠା ଖାଇବାକୁ ମନା ।

ଅଝଟ ପିଲାଙ୍କ ପରି ମଉସା ନେହୁରା ହୋଇ କହିଲେ ସୀମାକୁ । ସେ ଆଜି ନିଶ୍ଚେ ମିଠା ଖାଇବେ, ସେ ଦିନର ଭୁଲ ପାଇଁ ପ୍ରାୟଶ୍ଚିତ୍ତ କରିବେ । ପୁଅ ଜନ୍ମ କରିଥିଲୁ ଯେ, ବିଦେଶରେ ରହିଲା, ଜର ବାଧକା ହେଲେ ଥରେ ଦେଖିବାକୁ ଚାହିଁଲେ ବି ସମ୍ଭବ ନୁହେଁ । ଅଥଚ ଯେଉଁ ଝିଅର ଜନ୍ମରେ ମିଠା ବାଣ୍ଟୁଛୁ କହି ତୋତେ ଏକରକମ୍ ଅପମାନିତ କରିଥିଲି ସେଇ ଝିଅ ପିଙ୍କି ପାଇଁ ମୁଁ ପୁର୍ନଜନ୍ମ ପାଇଛି । ମୁଁ ସେଥିପାଇଁ ଲଜ୍ଜିତ ସୀମା । ତୋ କଥା ଆଜି ମୋ ମନରେ ଏକ କମ୍ପନ ସୃଷ୍ଟି କରେ ''ପୁଅ ଝିଅର ଫରକ କ'ଣ ?''

ସତରେ ସୀମା ତୁ ଆଜି ପ୍ରମାଣ କରିଦେଇଛୁ । ପିଙ୍କି ଆଜି ଏ ସୃଷ୍ଟିର ସମ୍ଭାର । ମୁଁ ଆଜି ମିଠା ଖାଇବି, କେବଳ ତାରି ପାଇଁ । ମୋତେ ଚାହାରେ ଦୁଇଗୁଣ ଚିନି ପକାଇ ଦିଅ, ନ ହେଲେ ମୁଁ ନିଜକୁ କେବେ ବି କ୍ଷମା କରି ପାରିବିନି ।'' ପୁଣି

ତାଙ୍କ କଥାରେ ଅଝଟ ପଣିଆ । ଆଖିରୁ ଝରିଗଲା ଦୁଇଟୋପା ଅଶ୍ରୁ । ଆଚ୍ଛା ଆପଣ ଟିକିଏ ଥୟ ଧରିଲେ । ଆଗ ଆମ ଟିକି ଡାକ୍ତର ଆସନ୍ତୁ,ତାପରେ ମିଠା ଦିଆଯିବ ।

ଏତିକିବେଳେ ପିଙ୍କି ବିଦ୍ୟୁତ ଝଲକ ପରି ପଶି ଆସିଲା ଘର ଭିତରକୁ ।

ଆରେ ଦୋସ୍ତ ଚାହା ପିଇଲଣି ନା ନାହିଁ, ଦେଖେଇଲ ଟିକେ ଜିଭଟିକୁ, ବାହାର କଲ, ପିଙ୍କିର ସ୍ନେହବୋଳା ନିର୍ଦ୍ଦେଶ । ଠିକ୍ ଅଛି, ଆଚ୍ଛା ଟିକେ ଉଠି ବସିଲ । ସେନାପତିବାବୁ ଜୋର ଦେଇ ଉଠିବାକୁ ଚେଷ୍ଟା କଲେ । ପିଙ୍କି ପିଠି ପଟେ ହାତ ଦେଇ ଉଠାଇ ତକିଆ ଲଗାଇ ବସାଇ ଦେଲା । ତାପରେ ମନଯୋଗ ସହାକାରେ ଷ୍ଟେଥୋ ଲଗାଇ ପିଠି, ଛାତି ଚେକ୍ କରିବାକୁ ଲାଗିଲା । ପୁଣି ପ୍ରେସର ମାପି ନୋଟ କଲା ପ୍ରେସ୍କ୍ରିପ୍ସନ୍‌ରେ ।

ସବୁ ଠିକ୍ ଅଛି, ଅଲ୍‌ରାଇଟ୍, ସୀମାନୀ ତୁମ ମଉସାଙ୍କୁ ଚାହା ଦିଅ ପିଇବାକୁ ।

ମଉସା ଚାହାରେ ଚିନି ପକାଇବାକୁ ଜିଦି ଧରିଛନ୍ତି । ତାଙ୍କର ଏକାଜିଦ୍ ସେ ମିଠା ଖାଇବେ, ତୁ ଟିକିଏ ବୁଝାଇଲୁ ପିଙ୍କି ।

କାହିଁକି ଆଜି କ'ଣ କାହାର ଜନ୍ମ ଦିନ କି ?

ହଁ, ମଉସା ତୋରି ଜନ୍ମ ଦିନ ପାଳିବାକୁ ଚାହାନ୍ତି ।

ଆଚ୍ଛା ଦୋସ୍ତ, ଠିକ୍ ଅଛି, କହି ପିଙ୍କି ସେନାପତି ବାବୁଙ୍କ ମୁହଁ ପାଖକୁ ନିଜ କପାଳଟି ନେଇଗଲା, ମୋ ଜନ୍ମ ଦିନ ପରା, ତୁମେ ଏଇଠି ଆଗ ଗୋଟିଏ ଚୁମା ଦେଲ । ସେନାପତି ବାବୁ ଯନ୍ତ୍ରବତ୍ ଚୁମା ପରେ ଚୁମା ଆଙ୍କିଦେଲେ । ନାଇଁ, ନାଇଁ ଗୋଟିଏ କହିଲି, ଦୁଇଟା ନାହିଁ - କାହିଁକି ଦୁଇଟା ଦେଲ ?

ଭୁଲ ହୋଇଗଲା, ଛୋଟ ପିଲାଟି ପରି ସେନାପତି ବାବୁ କହି ଉଠିଲେ, ଠିକ୍ ଅଛି, କହିଲ କେତେ ମିଠା ଲାଗିଲା ।

ଆନନ୍ଦରେ ବିଭୋର ହୋଇ ଉଠିଲେ ସେନାପତି ବାବୁ । ବହୁତ୍ ମିଠା, ଡବଲ୍ ମିଠା ।

ଡବଲ୍ ମିଠା ଖାଇଲେ ନୁହେଁ ? ଏଣିକି ଚାହା ପିଇଦିଅ । ପିଙ୍କିର କଥାରେ ଏତେ ଦୁଃଖରେ ବି ସମସ୍ତେ ହସି ଉଠିଲେ । ସେନାପତି ବାବୁଙ୍କର ଧାରଣା ସମ୍ପୂର୍ଣ୍ଣ ବଦଳି ଗଲା । ସେ ଦେଖୁଥିଲେ ପିଙ୍କିକୁ ଏକ ନୂଆ ରୂପରେ 'ଅପରୂପା' ।



# ରଙ୍ଗମଞ୍ଚ

ଆରେ, 'ସୁନା ବୋଉ', ମୋ ପାଖକୁ ଟିକିଏ ଆସିଲ ।

କ'ଣ କହୁଛ କୁହ, ବେଳ ହେଲାଣି, ମୁଁ ଗାଧୋଇବାକୁ ଯିବି, ତୁଳସୀ ମୂଳରେ ପାଣି ଦେବି ।

ପାଖକୁ ଆସିଲେ ସିନା କହିବି । ମୋ ପିଠିକୁ ଟିକିଏ ଆଉଁସି ଦେଲ । କଷ୍ଟରେ ଆଖି ବୁଜି ହେଇ ଯାଉଥାଏ ଦିବାକର ବାବୁଙ୍କର । ସବୁବେଳେ କ'ଣ ଏମିତି ଆଉଁସୁଥିବି । ମୋତେ ଆଉ କ'ଣ କିଛି କାମ କରାଇ ଦେବନି ? ତୁମେ ଆଖି ବୁଜି ଟିକେ ଶୋଇ ପଡ଼ିଲ । ରାତିସାରାଟା ନିଜେ ତ ଅନିଦ୍ରାରେ କଟାଇଛ ଆଉ ମୋତେ କ'ଣ ଶୁଆଇ ଦେଇଛ ?

କ'ଣ କରିବି କୁହ, ଏ ନିଆଁଲଗା ରୋଗଟା ସହଜରେ ଛାଡୁଛି ? ଏକାଥରକେ ସେଇ ମଶାଣିରେ ଯାଇ ଛାଡ଼ିବ, ଜାଣିଲ ସୁନାବୋଉ । କଲ୍ୟାଣୀ ସ୍ୱାମୀଙ୍କ ମୁହଁରେ ହାତ ଦେଇ କହିଲେ, ''ଛି ସକାଳୁ ସକାଳୁ ଏମିତି ଅଶୁଭ କଥାଗୁଡ଼ା ମୁହଁରେ ଧରୁଛ କାହିଁକି କହିଲ । ଏମିତି ମୋ ଆଗରେ କେବେ ବି କହିବନି କହି ଦେଉଛି ।'' ତାଙ୍କ ଆଖିରୁ ଲୁହ ଗୁଡ଼ିକ ଟୋପା ଟୋପା ହୋଇ ଝରି ପଡ଼ିଲା ଦିବାକର ବାବୁଙ୍କ ପିଠି ଉପରେ । ଦେହ ମୁଣ୍ଡରେ ବୁଲି ଯାଉଥିବା କଲ୍ୟାଣୀର ହାତକୁ ନିଜ ଛାତିରେ ଜାକି ଧରି ସେ କହି ଉଠିଲେ, 'ତୁମେ କାନ୍ଦୁଛ କଲ୍ୟାଣୀ' କ'ଣ କରିବି କୁହ, ମୋତେ ଭୀଷଣ କଷ୍ଟ ହଉଛି, ଯନ୍ତ୍ରଣା ହେଉଛି, ଆଉ ସହି ପାରୁନି । ଭାଗବତରେ ପରା ଅଛି - ''ମହି ମଣ୍ଡଳେ ଦେହ ଧରି, ଦେବତା ହେଲେ ବି ମରଇ ।'' ସଭିଙ୍କୁ ତ ଯିବାକୁ ହିଁ ହେବ, କିଏ ଆଗେ ତ କିଏ ପଛେ । ଜନ୍ମ-ମୃତ୍ୟୁର ରହସ୍ୟ ମଧ୍ୟରେ ଭଗବାନ ଶ୍ରୀକୃଷ୍ଣ ବି ଛନ୍ଦି ହୋଇ ପଡ଼ିଥିଲେ । ଜାରା ଶବରକୁ ମୃଗଶିଶୁ ବୋଲି ଦର୍ଶନ ଦେଇ ଇହଲୀଳା ସମ୍ବରଣ କରିଥିଲେ । ତାହା କ'ଣ ତୁମେ ଜାଣନି ।''

କଲ୍ୟାଣୀର ଗଣ୍ଡ ଦେଶ ଭିଜାଇ ଗଡ଼ିଯାଉଥିବା ଲୁହକୁ ନିଜ ହାତରେ ସାଉଁଟି ନେଲେ ଦିବାକର ବାବୁ । ଯନ୍ତ୍ରଣା କାତର ମୁହଁରେ ନିଜ ଛାତି ଉପରକୁ ଟାଣି ନେଇ ପ୍ରବୋଧନା ଦେବାକୁ ଲାଗିଲେ । ଆଛା ! କହିଲ, ସୁନା ବୋଉ, 'ତୁମ ପରି ଧର୍ମପତ୍ନୀକୁ ଛାଡ଼ି ମୁଁ କେବେ ଚାଲିଯାଇ ପାରିବି ?' ତୁମେ ଏଥର କାନ୍ଦ ବନ୍ଦ କରି ଯାଅ

ଗାଧୋଇବାକୁ ଆଉ ଚଉରାମୂଳେ ପାଣି ଢାଳି ମୋ ପାଇଁ ଆୟୁଷ ମାଗିବ । ଏତେ ଦୁଃଖ ଭିତରେ ବି ଦୁହେଁ ହସି ଉଠିଲେ । ଯାଃ ... ତୁମର ଯୋଉ କଥା ! ଆଚ୍ଛା, ତୁମେ ପରା ମୋତେ କ'ଣ କହିବ ବୋଲି ଡାକିଲ, କହୁନ । ନାଇଁ, ଆଉ କେତେବେଳେ କହିବି । ତୁମେ ଏଇନେ ଯାଅ, ବେଳ ହେଲାଣି । ବୋହୂମା' କୁଆଡ଼େ ଗଲେ କି ? ସେ ପରା ଯାଇଛି ଶିବୁକୁ ସ୍କୁଲରେ ଛାଡ଼ିବାକୁ । ବେଳ ଆସି ଦଶଟା ହେଲାଣି । ଆଚ୍ଛା ମୁଁ ଗାଧୋଇବାକୁ ଯାଉଛି କହି ସ୍ୱାମୀଙ୍କ ଉପରକୁ ଚଦରଟିକୁ ଘୋଡ଼ାଇ ଦେଲେ କଲ୍ୟାଣୀ ।

× × ×

ମଧ୍ୟବିତ୍ତ ପରିବାରର ଶାନ୍ତ, ସରଳ ମଣିଷଟିଏ ଏଇ ଦିବାକର ବାବୁ । ଗୋଟିଏ ଝିଅ ଓ ପୁଅଟିଏ । ସଂସାରର ଧାଁ ଦଉଡ଼ ଭିତରେ ସେ ପୁଅ ଝିଅଙ୍କୁ ମଣିଷ କରି ଗଢ଼ିବାକୁ ଚେଷ୍ଟା କରିଛନ୍ତି । ପୁଅ ଗୋପାଳ ସି.ଟି. ପାଶ୍ କରି ସ୍କୁଲ ମାଷ୍ଟରଟିଏ । ଝିଅକୁ ଚନ୍ଦନପୁର ବଜାରରେ ନାମଜାଦା କଂସାବାସନ ବେପାରୀ ଘରେ ବାହା ଦେଇଛନ୍ତି । ଯା' ହେଉ ଝିଅଟି ଭଲରେ ଅଛି । ପୁଅ ପାଇଁ ଖୋଜି ଖୋଜି ବୋହୂଟିଏ ବି କରିଛନ୍ତି, ବୁନିଆଦି ବଂଶରୁ । ନାତି, ନାତୁଣୀ ବି ଦେଖିସାରିଲେଣି । ଝିଅ ସୁନା, ବଡ଼ ବୋଲି ଗାଁ, ଭୂଇଁରେ ସେମାନେ ସୁନାବାପା, ସୁନାବୋଉ ବୋଲି ପରିଚିତ । ଯା' ହେଉ ଯେନତେନ ପ୍ରକାରେଣ ସେ ସଂସାରର କାର୍ଯ୍ୟ ବଢ଼େଇ ଦେଇଛନ୍ତି । ବୟସ ଆସି ଷାଠିଏ ଟିପିଲାଣି । ସେ ଜଣେ କ୍ରୋନିକ୍ ଡାଇବେଟିସ୍‌ରେ ଆକ୍ରାନ୍ତ ରୋଗୀ । ବୟସ ବଢ଼ିବା ସହିତ ରୋଗର ପ୍ରାଦୁର୍ଭାବ ବି ବଢ଼ି ଚାଲିଛି । ଖାଇବା ରେଷ୍ଟ୍ରିକ୍‌ସନ୍ ପାଇଁ ରକ୍ତହୀନତା ଦେଖା ଦେଇଛି । ରକ୍ତହୀନତାରୁ ଗୋଟିଏ ପରେ ଗୋଟିଏ ପ୍ରବ୍‌ଲେମ୍ ଲାଗି ରହିଛି । ବର୍ଷେ ହେବଣି, ସେ ବିଛଣା ଶଯ୍ୟା ହୋଇ ପଡ଼ିଛନ୍ତି । ଚଲାବୁଲା କରିବା ପାଇଁ ଶକ୍ତିର ଅଭାବ । ନର୍ଭ ସବୁ ଦୁର୍ବଳ ହୋଇଗଲାଣି । ଘର ଭିତରେ କଲ୍ୟାଣୀର କାନ୍ଧରେ ଭରା ଦେଇ ସକାଳ ସନ୍ଧ୍ୟାରେ ଟିକିଏ ବୁଲାଚଲା କରନ୍ତି । କେବେ କେବେ ପୁଅ ଗୋପାଳ ବି ସାହାଯ୍ୟ କରେ । ବାପାଙ୍କ ପାଇଁ ବିଭିନ୍ନ ପ୍ରକାର ଆୟୁର୍ବେଦିକ୍ ଟନିକ୍ ଓ ଖାଇବା ଉପଯୋଗୀ ଜିନିଷ ନେଇ ଆସେ । ବାପାର ଯତ୍ନ ନେବା ପାଇଁ କେବେ ବି ଅବହେଳା କରେନି ସେ । ବୋହୂ ଗୀତା ବି କେତେବେଳେ କେମିତି କର୍ମ ଜଞ୍ଜାଳ ମଧ୍ୟରେ ଆସି ଶ୍ୱଶୁରଙ୍କ କ'ଣ ଆବଶ୍ୟକ ବୋଲି ବୁଝି ଦେଇଯାଏ ।

ସବୁ ଠିକ୍ ଚାଲିଥାଏ । କିନ୍ତୁ ଦିବାକର ବାବୁ ଏଇ କେତେଦିନ ହେଲା ଲକ୍ଷ୍ୟ କରୁଛନ୍ତି, ପୂର୍ବପରି ଯେପରି ପୁଅବୋହୂଙ୍କର ଆନ୍ତରିକତା ଥିଲା, ଆଉ ନାହିଁ । ବେଖାତିର ବଢ଼ି ବଢ଼ି ଯାଉଛି । କଥାରେ ଅଛି – ''ନିତି ବନ୍ଧୁକୁ ପଚାରେ କିଏ ନା ନିତି ମଲୁକୁ ଚାହେଁ କିଏ ?'' ସେ ଏପରି କାହିଁକି ଭାବନ୍ତି, ସେ ବି ନିଜେ ଜାଣି ପାରନ୍ତି ନାହିଁ । ନାତି ଟୋକାଟା ଆଗପରି ତାଙ୍କ ପାଖକୁ ଆସୁନି । କେତେବେଳେ କେମିତି ଅତି

ସନ୍ତର୍ପଣରେ ପାଦ ଚିପି ଚିପି ଆସେ, ପଚାରିଲେ କହେ 'ମାମା ଗାଳିଦେବ' । ଦିବାକରବାବୁ କିଛି ନ କହି ତାକୁ କିଛି ସମୟ କୁଣ୍ଢାଇ ଧରନ୍ତି । ସେ ନିଜେ ଆଜିକାଲି କାହାକୁ ଯେମିତି ଡରୁଛନ୍ତି ।

ଶିବୁର କଥା ଶୁଣି ଛାତି ଭିତରଟା କମ୍ପି ଉଠେ । ନାତିକୁ ହଠାତ୍ ଛାଡ଼ି ଦେଇ କହନ୍ତି,ଯାଆରେଯାଆ ଗୋଡ଼ ହାତ ଧୋଇ ଠାକୁରଙ୍କୁ ମୁଣ୍ଡିଆ ମାରି ପଢ଼ିବାକୁ ବସିବୁ, ମାଆ ଆଉ ଗାଳି ଦେବନି । ପିଲାଲୋକ କ'ଣ ବା ବୁଝେ, ତର ତର ହୋଇ ଚାଲିଯାଏ । ଦିବାକରବାବୁଙ୍କ ଆଖିରୁ ଠପ୍ ଠପ୍ ହୋଇ ଦୁଇଟୋପା ଲୁହ ଝରିଯାଏ । ଏଇ ନାତି ଟୋକାକୁ ପିଠିରେ ବସେଇ କେତେ ଘୋଡ଼ା ଖେଳ ଖେଳିଛନ୍ତି ସେ । ବଜାରକୁ ନେଇ ଯାଇ ଚକ୍‌ଲେଟ୍ କିଣି ଦେଇଛନ୍ତି । ଅଥଚ ଆଜି ସେ ପଡ଼ି ରହିଛନ୍ତି ବୋଲି, ତାଙ୍କ ପାଖକୁ ଆସିବାକୁ ମନା । କାହାକୁ କିଛି ନ କହି ମନ କଥା ମନରେ ମାରି ରହନ୍ତି । ହୃଦୟ ତାଙ୍କ କ୍ଷତାକ୍ତ ହୋଇଯାଏ । ସେ କଲ୍ୟାଣୀ ଆଗରେ ବି ପ୍ରକାଶ କରି ପାରନ୍ତି ନାହିଁ ଏସବୁ କଥା, କାରଣ ସେ ବହୁତ କଷ୍ଟ ପାଇବ ।

ସେଦିନ କାନ୍ଦୁଥିଲେ କଲ୍ୟାଣୀ । ଗୀତାକୁ ସେ ମୂଳରୁ ବୋହୂ ବୋଲି ନଭାବି ଝିଅ ପରି ଦେଖି ଆସିଛନ୍ତି । ଗୀତା ବି ବୋଉ ବୋଲି ପାଗଳ ହୋଇ ଯାଇଥାଏ । ନିଜର ଜନ୍ମ କଲା ମାଆ ପରି । ହେଲେ, ଗୀତା ପୁରାପୁରି ବଦଳି ଗଲା କିପରି ? ପ୍ରତି କଥାରେପଦେ କହିବାକୁ ଛାଡୁନି ସେ । ଯିଏ ଟିକିଏ ନ ଦେଖିଲେ ବୋଉ କୁଆଡ଼େ ଗଲେ ବୋଲି ଅସ୍ଥିର ହୋଇ ଉଠେ, ସେ ଥରେ ବି ପଚାରୁ ନାହିଁ । ଗାଧୋଇ ଆସି ଶାଶୁ ବୋହୂ ଦୁହେଁ କେତେ ଖୁସି ଗପ କରି ଖାଇ ବସନ୍ତି, ଅଥଚ ଶାଶୁଙ୍କୁ ଖାଇବାକୁ ବାଢ଼ି ଦେବାକୁ ଆଜି ତା'ର ବେଳ ନାହିଁ । ହସି କରି ପଦେ କଥା କହିବା ସ୍ୱପ୍ନ ହୋଇ ଯାଇଛି । ପୁଅ ଆସିଲେ ଯଦି ପଚାରି ବସେ, ବାପା କେମିତି ଅଛନ୍ତି ? ହାଣ୍ଡି ଭଳି ମୁହଁ କରି ଚୁପ୍ ରହେ । କହେ, ଯାଇ କରି ଦେଖୁନ । ଘରେ ଅଶାନ୍ତି ହୁଏ । ପୁଅ ବୋହୂଙ୍କର ପାଟିତୁଣ୍ଡ ହୁଏ । ଗୀତାର କାନ୍ଦ ଶୁଭେ, କାନ୍ଦି କାନ୍ଦି ସେ କହେ, ''ମୁଁ ଏକୁଟିଆ ଘରର ସମସ୍ତ କାମ, ଶିବୁର ପାଠପଢ଼ା, ମୁଁ କ'ଣ ମେସିନ୍ ହୋଇଛି ?'' କଲ୍ୟାଣୀ ସବୁ ଶୁଣେ, ସବୁ ଦେଖେ, ଚୁପ୍ ହୋଇ ରହେ ।

ଗୀତାର ଚିଡ଼ିଚିଡ଼ାପଣ, ପୁଅର ମୁହଁ ଶୁଖେଇବା ତାକୁ ଭାରି ବାଧେ । ପୁଅ ଗୋପାଳ ବି ଥରେ ଥରେ ତା' ଉପରେ ଏଇଆ ହେଲାନି ସେଇଟା ହେଲାନି କହି ବିରକ୍ତ ହୁଏ । ପୁଅ କଥା ଶୁଣି ଗୁମୁରି ଗୁମୁରି କାନ୍ଦନ୍ତି କଲ୍ୟାଣୀ । ଘର କଥା ବାହାରକୁ ଗଲେ କ'ଣ ଶୋଭା ପାଏ ? କଲ୍ୟାଣୀ ଚୁପ୍ ହୋଇ ରହନ୍ତି । ପୁଅକୁ ବା କ'ଣ କହିବେ ? ଏ ଆଖିର ଲୁହ, ସେ ଆଖି ଦେଇ ବୋହି ଯାଏ, ନିଜର ମଣିଷ ତ ବିଛଣାରେ ଶୋଇ ରହିଛନ୍ତି, ତାଙ୍କୁ ବା କହିବେ ଆଉ କ'ଣ ? ଏବେ ତ ସେ ନିଜେ କଷ୍ଟ ପାଉଛନ୍ତି । ତା' ଉପରେ ଗୀତାର ଏପରି ବ୍ୟବହାର କଥା ଶୁଣି ସେ ପୁରାପୁରି ଭାଙ୍ଗି ପଡ଼ିବେ ।

କଲ୍ୟାଣୀ କିଛି ନକହିଲେ ବି ସବୁକିଛି ଜାଣିପାରନ୍ତି ଦିବାକର ବାବୁ । ବିଛଣାରେ ଶୋଇ ଶୋଇ ସବୁ ଅନୁଭବ କରିପାରନ୍ତି ସେ । କଲ୍ୟାଣୀର ମୁହଁ ଦର୍ପଣରେ ତାଙ୍କୁ ସବୁ ଦେଖାଯାଏ । କଲ୍ୟାଣୀର ଶୁଖିଲା ମୁହଁକୁ ଅନାଇ ଅନୁମାନ କରି ଜାଣିପାରନ୍ତି, ସେ ଖାଇଛି କି ନାହିଁ । ରାଣ ନିୟମ ପକାଇ ଖାଇନେବାକୁ ବାଧ୍ୟ କରନ୍ତି । ଦିବାକର ବାବୁ କହନ୍ତି, କାହା ଉପରେ ଅଭିମାନ କରିଛ କଲ୍ୟାଣୀ, ଗୋପାଳ କ'ଣ ଟିକେ କହିଦେଲା ବୋଲି ମନଦୁଃଖ କରିଛ ? କେତେ ଜଞ୍ଜାଳରେ ଅଛି ସେ କହିଲ ? ଏଆଡ଼େ ମୋ କଥା ସେ ଆଡ଼େ ସଂସାରର ଭଲମନ୍ଦ, ସବୁତ ସେଇ ବୁଝୁଛି ନା । କେତେବେଳେ କୋଉ କଥା, ମନର କ'ଣ ସବୁବେଳେ ଠିକଣା ଥାଏ । ପିଲା ଯେବେ ଶିଶୁ ଅବସ୍ଥାରେ ମାଆ ଜଂଘରେ ହଗିଦିଏ, ମାଆ କ'ଣ ତା' ଜଙ୍ଘ କାଟିଦିଏ । ସେଇ ତୁମର ଛୋଟ ଶିଶୁ ଗୋପାଳ ଆଜି ବଡ଼ ହେଇଯାଇଛି, ତା' ମୁଣ୍ଡରେ କେତେ ବୋଝ, ଅନୁମାନ କରିପାରୁଛ ତ ? ଆଉ ବୋହୂ ମାଆ ଗୀତା, ସେ ତ ଝିଅଟି ପରି । ନିଜ ଝିଅ ପଦେ ଅଧେ କହିଲେ ବାପା ମାଆ ଯେବେ ସହିପାରନ୍ତି, ବୋହୂ କହିଲେ ସହିବାରେ ଅସୁବିଧା କ'ଣ ? ଦେଖ ଆମେ ଆଜି ଜୀବନର ସାୟାହ୍ନରେ ଉପନୀତ ହେଲେଣି । ଭଗବାନ ହିଁ ଭରସା । ତାଙ୍କ ସଂସାର ସେମାନେ ବୁଝିବେ । ତୁମେ ସବୁ କଥା ହାଲୁକା ଭାବରେ ନିଅ । ଦେଖିବ, ସବୁ ଠିକ୍ ହୋଇଯିବ । କଲ୍ୟାଣୀ ବଲ ବଲ କରି ଅନେଇ ରହେ ଦିବାକରଙ୍କୁ । ବିଛଣାରେ ପଡ଼ି ପଡ଼ି ତେବେ, ସେ କ'ଣ ସବୁ କଥା ଜାଣନ୍ତି ? ଗଡ଼ି ଆସୁଥିବା ଆଖିର ଅଶ୍ରୁ ଦୁଇ ଚିବୁକ ଉପରେ ଶୁଖିଯାଏ, ଏଇତ ସଂସାର । ମାୟା, ମୋହ ବନ୍ଧନର ପରିସୀମା, ଆରମ୍ଭ ଓ ଶେଷ ।

ନିଜ ଅନ୍ତରର ଭାଷା ଅନ୍ୟମୁହଁରେ ପ୍ରକାଶିତ ହେଲେ ମଣିଷକୁ ବହୁତ ହାଲୁକା ଲାଗେ । ଅଭିନୀତ ହେଉଥିବା ନାଟକର ଚରିତ୍ରରେ ପ୍ରତ୍ୟେକ ସମାଜର ଚିତ୍ର, ଚଳଣୀ, ମନ ଓ ହୃଦୟର ଭାବକୁ ସୁନ୍ଦର ଭାବରେ ପରିବେଷଣ ହେବା ଦେଖି ଦର୍ଶକ ଆନନ୍ଦରେ ଆତ୍ମହରା ହୋଇ ପଡ଼ନ୍ତି । କିଏ ଦୁଃଖରେ ଅଶ୍ରୁମୋଚନ କରିଥା'ନ୍ତି । କାରଣ ଅଭିନୟର ଚରିତ୍ରଗୁଡ଼ିକ କାହା ମନକୁ କିପରି ଛୁଇଁଯାଏ ସେ ହିଁ କେବଳ ଅନୁଭବ କରିଥାଏ ।

କଲ୍ୟାଣୀର ମନର କଥା ସ୍ୱାମୀଙ୍କ ମୁହଁରେ ପରିପ୍ରକାଶ ହେବାର ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ସେ । ପଙ୍ଗୁଭାବେ ଜୀବନ ବିତାଉଥିବା ଦିବାକରବାବୁଙ୍କୁ ତାଙ୍କ ସଂସାରର ସମସ୍ତ କଥା ଜଣା, ଏକଥା ସେ ଭାବି ପାରୁ ନଥିଲେ । ସ୍ୱାମୀଙ୍କ ମୁହଁରେ ତାଙ୍କ ଅନ୍ତରର ଭାଷାକୁ ଶୁଣି ସବୁ କଷ୍ଟ ଭୁଲିଯାଇଥିଲେ ସେ । କଲ୍ୟାଣୀର ମନେ ହେଲା ସଂସାରଟା ଏକ ଜୀବନ୍ତ ରଙ୍ଗମଞ୍ଚ ।



# ପରିଚୟ

ଇଣ୍ଡିଆନ ଏକ୍ସପ୍ରେସ୍ ଖଣ୍ଡେ କିଣି ଆଣିଲା ମୁକେଶ୍ । ସମୟ ସକାଳ ଆଠଟା ହେବ । ଚାହା, ଜଳଖିଆ, ଦୋକାନଟି ସାମ୍ନାରେ ପଡ଼ିଥିବା ବେଞ୍ଚରେ ବସି ଖବରକାଗଜ ଉପରେ ଆଖି ବୁଲାଇବାକୁ ଲାଗିଲା ସେ । ବିଶେଷ କରି ନଜର ତାର ବୁଲିଗଲା ଏମ୍ପ୍ଲୟମେଣ୍ଟ ନିଉଜ୍ ଉପରେ । ଚାକିରୀ ଖୋଜିବା ହେଉଛି ତା'ର ନିତିଦିନିଆ କାମ । ଆଖି ଲାଖିଗଲା ଗୋଟିଏ ସ୍ଥାନରେ । ପ୍ରାଇଭେଟ୍ ସେକ୍ରେଟାରୀ ପୋଷ୍ଟ, କ୍ୱାଲିଫିକେସନ୍ ଏମ.ଏ. ଓ ତା' ସହିତ ଡ୍ରାଇଭିଂ ଜାଣିଥିବ । ଦରମା ବି ତ କିଛି ମନ୍ଦ ନୁହେଁ, ମାସକୁ ପାଞ୍ଚହଜାର । କିନ୍ତୁ ମୁହଁଟି ତାର ହଠାତ୍ ଶୁଖିଗଲା ଗୋଟିଏ ମାତ୍ର ପୋଷ୍ଟ । ଅବଶ୍ୟ ତା'ର ମନଲାଖି ଓ କ୍ୱାଲିଫିକେସନ୍ ଅନୁଯାୟୀ ପୋଷ୍ଟଟି ବାହାରିଛି ।

× × ×

ବମ୍ବେ ସହର । ଆଜକୁ ପନ୍ଦର ଦିନ ହେବ ଘରୁ ବାହାରି ଆସିଛି ମୁକେଶ୍, କାହାକୁ କିଛି ନ ଜଣାଇ । ବାପା ରିଟାୟାର୍ଡ଼ କଲା ପରେ ଘରର ଅବସ୍ଥା ତାକୁ ଘରୁ ଗୋଡ଼ କାଢ଼ିବାକୁ ବାଧ କରିଛି । ଏମ୍.ଏ. ପାଶ୍ କଲାପରେ ଯା ମଧ୍ୟରେ ପାଞ୍ଚ ବର୍ଷ ବିତି ଯାଇଛି । ଚାକିରୀ ଖୋଜି ଖୋଜି ନୟାନ୍ତ ହୋଇଗଲାଣି । ସବୁଠାରେ ନୋ ଭେକେନ୍‌ସି ବୋର୍ଡ଼ ଝୁଲୁଛି । ଅଭାବେ ସ୍ୱଭାବ ନଷ୍ଟ । ସେଦିନ ବାପାଙ୍କର କଥା ପଦକ ତାକୁ ଭାରି ବାଧିଥିଲା । ବାପା ଯେ କି ଦିନେ କାଳେ କାହାକୁ ଦୁଃଖ ଦେଲା ଭଳି କଥାଟିଏ କହନ୍ତିନି, ସେ ପୁଣି କହିପାରିଲେ, 'ପୁଅ ଥାଇ ନ ଥାଇ ସମାନ' । ଏ ବୟସରେ ବାପାଙ୍କର ଅସହାୟତା ଓ ତା'ପ୍ରତି ଆକ୍ଷେପ ତାକୁ ମର୍ମାହତ କରି ପକାଇଥିଲା । ଅଭିମାନ କରି ରାତି ଅଧରୁ ଘର ଛାଡ଼ି ଚାଲି ଆସିଛି ସିନା, ଘରକଥା ଭାବି ଆଖିରେ ଲୁହ ଜକେଇ ଆସିଲା ମୁକେଶର ।

ପାଠପଢ଼ା ସମୟରେ ମନରେ କେତେ ସ୍ୱପ୍ନ ଥିଲା ତା'ର । ଚାକିରୀଟିଏ କରି ଦୁଇ ପଇସା ରୋଜଗାର କରିବ ଓ ଭାଇଭଉଣୀଙ୍କ ଦାୟିତ୍ୱ ନେବ । ସ୍ୱପ୍ନ ତା'ର ସ୍ୱପ୍ନରେ ରହିଯାଇଛି ।

ଭୁବନେଶ୍ୱରରେ ଏ ଅଫିସ୍‌ରୁ ସେ ଅଫିସ୍ ବୁଲି ବୁଲି ହାଲିଆ ହୋଇ ପଡ଼ିଛି ସେ । କେତେ ବଡ଼ ବଡ଼ ଇଣ୍ଡଷ୍ଟ୍ରିଆଲିଷ୍ଟଙ୍କ ଘରେ ପଇଁତରା ମାରିଛି । ଶେଷକୁ ସେ ଆସିଛି ବମ୍ବେ ସହରକୁ ବହୁ ଆଶା ନେଇ ।

ଅବଶ୍ୟ ସେଦିନ ବାପାଙ୍କ କଥାରେ ବୋଉ ପ୍ରତିବାଦ କରିଥିଲା, ''ତୁମ ମୁହଁରେ ଏସବୁ କଥା ଶୋଭା ପାଏନା ।''

ବାପା କିଛି ନ କହି ମୁହଁ ତଳକୁ କରି ବସି ରହିଲେ । ଭଉଣୀ ସରିତା ଓ ସବା ସାନ ଭାଇ ରାକେଶ କବାଟ କୋଣରେ ଉଙ୍କିମାରି ଅନେଇ ରହିଥିଲେ । ଖବରକାଗଜ ପୃଷ୍ଠାରେ ଅକ୍ଷରଗୁଡ଼ିକ ଝାପ୍‌ସା ହେଇ ଉଠିଲା ।

ପକେଟ୍‌ରୁ ରୁମାଲ୍‌ଟି ବାହାର କରି ଆଖି ପୋଛିଲା ମୁକେଶ । ବମ୍ବେ ସହରରେ କିଏ ବା କାହାକୁ ପଚାରୁଛି । ସମସ୍ତେ ଯେ ଯାହାର ଧନ୍ଦା ନେଇ ବ୍ୟସ୍ତ । ଚିହ୍ନା, ଜଣା ନଥିବା ଏତେ ବଡ଼ ସହରରେ ପ୍ରଥମେ ଟ୍ରେନ୍‌ରୁ ଓହ୍ଲାଇ ସେ ଭୟଭୀତ ହୋଇ ପଡ଼ିଥିଲା । ଏଇ କେତେଦିନ ଭିତରେ ଫୁଟ୍‌ପାଥ୍‌ର କେତେକ ପିଲାଙ୍କ ସହିତ ତା'ର ବନ୍ଧୁତା ଗଢ଼ି ଉଠିଛି । ଦିନସାରା ଏଠି ସେଠି ବୁଲି ବୁଲି ତା'ର ସମୟ ବିତିଯାଏ ସିନା, କିନ୍ତୁ ରାତିରେ ସେହି ପିଲାମାନଙ୍କ ସହିତ ଫୁଟ୍‌ପାଥରେ ହିଁ ଶୋଇବାକୁ ପଡ଼ିଥାଏ । ରାତିଟା ଏଠାରେ ମରକ୍ୟୁରୀ ବଲ୍‌ବ୍‌ର ଉଜ୍ଜ୍ୱଳ ଆଲୋକରେ ଦିନ ପରି ଲାଗେ । ଅଧା ଚାହିଁବା ଓ ଅଧା ଶୋଇବା ଅବସ୍ଥାରେ ରାତି ବିତିଯାଏ । ଘରୁ ଆଣିଥିବା ପଇସା ପ୍ରାୟ ସରି ଆସିଲାଣି । ଯାହା ହେଉ, କି ନହେଉ ବିଜ୍ଞାପନଟି କାଟି ପକେଟ୍‌ରେ ପୂରେଇଦେଲା ଓ ଠିକଣା ଅନୁଯାୟୀ ଏପ୍ଲାୟ କରିବାକୁ ପୋଷ୍ଟ ଅଫିସ୍ ସନ୍ଧାନରେ ବାହାରିଗଲା ମୁକେଶ ।

× × ×

ଡାକ୍ତର ସୂରଜ କୁମାର ସିଂ, ଇଣ୍ଡଷ୍ଟ୍ରିଆଲିଷ୍ଟ ।

ପ୍ରବେଶପତ୍ର ଦେଖି ଦରୁଆନ ଭିତରକୁ ଛାଡ଼ି ଦେଲା ।

ୱେଟିଂରୁମ୍‌ରେ ଶତାଧିକ ଅବେଦନକାରୀଙ୍କୁ ଅପେକ୍ଷା କରିଥିବାର ଦେଖି ହଲକ ଶୁଖିଗଲା ମୁକେଶର । ଏତେ ଲମ୍ଫାଧାଡ଼ି ଭିତରେ ଯେ କିଛି ଫାଇଦା ହେବନି, ଏକଥା ଭାବି ନିରାଶାରେ ମନ ତା'ର ବୁଡ଼ିଗଲା । ଫେରିଯିବ ନା ଇଣ୍ଟରଭ୍ୟୁ ଦେବ ଭାବୁଥାଏ ସେ । ଇଣ୍ଟରଭ୍ୟୁ ଆରମ୍ଭ ହୋଇଯାଇଥାଏ । ସିରିଆଲ୍ ଅନୁଯାୟୀ ଡାକରାପଡ଼େ । କେଜାଣି କେତେବେଳେ ତା'ର ପାଳି ପଡ଼ିବ । ବମ୍ବେ ସହରରେ ଘର ଖୋଜି ଆସି ଠିକଣା ସ୍ଥାନରେ ପହଞ୍ଚିବା ତା' ପାଇଁ କାଠିକର ପାଠ ହେଇ ପଡ଼ିଥିଲା ।

ଅପେକ୍ଷାର ଅବସାନ ଘଟାଇ ତା'ର ନାଆଁ ଡକା ପଡ଼ିଲା । ସାର୍ଟିଫିକେଟ୍ ପ୍ୟାକେଟ୍‌ଟିକୁ ଧରି ଭିତରକୁ ପଶିଲା ସେ ।

ଡାକ୍ତର ସୂରଜ ସିଂହ, ଏମ୍.ଡି. ନିଜେ ଇଣ୍ଟରଭ୍ୟୁ ନେଉଛନ୍ତି । ନମସ୍କାର ଜଣାଇ ତାଙ୍କ ହାତ୍‌କୁ ବାୟୋଡାଟା ଓ ସାର୍ଟିଫିକେଟ୍‌ର ପ୍ୟାକେଟ୍‌ଟି ଧରାଇ ଦେଲା ମୁକେଶ ।

ମୁକେଶ ଚୌଧୁରୀ, ପିତା ଅମୂଲ୍ୟ ଚୌଧୁରୀ, ଭୁବନେଶ୍ୱର, ଓଡ଼ିଶା, ଯାଞ୍ଚ କରୁ କରୁ ଚଷମା ଖୋଲି ମୁକେଶକୁ ଅନେଇ ରହିଲେ ଡାକ୍ତର ସୂରଜ ବାବୁ । ଶାନ୍ତ, ସରଳ ମୁହଁଟିକୁ ଦେଖି ହସି ହସି ପଚାରିଲେ -

କ୍ୟା ତୁମ୍ ଓଡ଼ିଶା ସେ ଆୟେ ହୋ ?

ଇଏସ୍ ସାର୍ ।

ପିତାଜୀ କ୍ୟା କରତେ ହୈ ?

ପିତାଜୀ ରିଟାୟାର୍ଡ଼ ଟିଚର ହୈ ।

ଆଉ କିଛି ନ ପଚାରି ବାହାରେ ଅପେକ୍ଷା କରିବାକୁ କହିଲେ ସେ ।

କେବଳ ତାକୁ ହିଁ ଅପେକ୍ଷା କରିବାକୁ କହିଛନ୍ତି ନା ଅନ୍ୟମାନଙ୍କୁ ବି । ଜଣେ ପରେ ଜଣେ ଇଣ୍ଟରଭ୍ୟୁ ଦେଇ ସାରି ଚାଲିଗଲେଣି । ଭାରି ଶୋଷ ହେଉଥିଲା ତାକୁ । ଥଣ୍ଡା ପାଣି ଗ୍ଲାସେ ଆଣି ପିଇଲା ସେ । ଏତିକିବେଳେ ଜଣେ ଲୋକ ଟାଇପ୍ ହୋଇଥିବା ନିଯୁକ୍ତି ପତ୍ରଟି ଆଣି ତା' ହାତରେ ଧରାଇ ଦେଲା । ଥରେ ନୁହେଁ ଦୁଇ ଥର, ଚାରିଥର ବାରବାର ଚିଠିଟିକୁ ପଢ଼ିବାକୁ ଲାଗିଲା ସେ । ବିଶ୍ୱାସ ହେଉ ନଥିଲା ତା'ର ଏ ଚାକିରୀଟି ସେ ପାଇଛି ବୋଲି । କାଲିଠାରୁ ଜଏନ୍ କରିବାକୁ ହେବ । ଖୁସିରେ ପାଗଳ ହେଇ ଉଠିଲା ସେ । ଚିଠିଟିକୁ ଧରି ସଲିମ୍‌ର ସନ୍ଧାନରେ ବାହାରି ପଡ଼ିଲା ସେ ।

ଖୁସି ବାଣ୍ଟିବାକୁ ପାଖରେ ନିଜର ବୋଲି ତ କେହି ନାହାଁନ୍ତି । ବାପା, ବୋଉର ସଜଳ ମୁହଁଟି ଭାସି ଉଠିଲା ତା' ଆଖି ସାମ୍ନାରେ । ଏଇ କେତୋଟି ଦିନର ଚିହ୍ନା ସଲିମ୍ ଏକାନ୍ତ ନିଜର ପରି ମନେ ହେଲା ତା'ର । ମିଠାଇ ଦୋକାନରୁ କିଛି ମିଠାଇ କିଣିଲା ମୁକେଶ । ସଲିମ୍ ଓ ତା'ର ସାଙ୍ଗମାନଙ୍କୁ ଦେଇ ଖୁସି ଖବରଟି ଶୁଣାଇବ । ସେମାନେ ତା'ର ଫୁଟ୍‌ପାଥର ବନ୍ଧୁ । ବମ୍ବେ ସହରର ଫୁଟ୍‌ପାଥ ହିଁ ସେମାନଙ୍କର ଏକମାତ୍ର ସାହାରା, ରାତ୍ରି ଯାପନର ନିରାପଦ ସ୍ଥାନ ।

ସଲିମ୍ ଘରକୁ ଘର ବୁଲି ଶାଢ଼ୀ, ବେଡ୍‌ସିଟ୍, କାଚ, ଟିକିଲି ଫେରି କରେ । ସେଥିରୁ ଯାହା ଦି' ପଇସା ରୋଜଗାର କରେ ଗାଁକୁ ପଠାଏ ଓ ନିଜେ ଚଳେ । ପ୍ରଥମ ଦିନ ଯେବେ ସେ ତାକୁ ଭେଟିଥିଲା, ତା' ପାଖରୁ ସେ ଭରସା ପାଇଥିଲା ।

ସେଦିନ ବମ୍ବେ ଷ୍ଟେସନ୍‌ରେ ପ୍ରଥମେ ଓହ୍ଲାଇ ସଲିମ୍‌କୁ ଭେଟିଥିଲା ମୁକେଶ୍ । ତା'ର ହାବଭାବରୁ ଜାଣି ପାରିଲା ସେ ଏଠାରେ ସମ୍ପୂର୍ଣ୍ଣ ନୂଆ । ବନ୍ଧୁବୋଲି ହାତ

ବଢ଼େଇ ଦେଇଥିଲା । ଏଇ ସଲିମ୍ ହିଁ ତାକୁ ସାଙ୍ଗରେ ନେଇ ଯାଇଥିଲା ତା'ର ରହିବା ଜାଗାକୁ ।

ମୁହଁ ସଞ୍ଜ ହେଇ ଆସିଲାଣି । ସଲିମ ନିଶ୍ଚେ ଫେରିଆସିଥିବ । ମିଠା ପ୍ୟାକେଟ୍‌ଟି ଧରି ଜୋର୍ ଜୋର୍ ପାଦ ପକାଇ ଆଗେଇ ଚାଲିଲା ମୁକେଶ ।

× × ×

ଆଜି ଅଫିସ୍‌ରେ ମୁକେଶର ପ୍ରଥମ ଦିନ । ଠିକ୍ ଦଶଟା ସମୟରେ ଯାଇ ହାଜର ହେଇ ଯାଇଥିଲା ସେ । ଡାକ୍ତର ସୂରଜ କୁମାର ସିଂହ, ଏମ୍.ଡି. 'ବେବୀ ଫୁଡ୍ ପ୍ରସେସିଂ ୟୁନିଟ୍'ରେ ତାକୁ ଅପେକ୍ଷା କରି ବସିଥିଲେ ।

ମୁକେଶ୍‌କୁ ଅଭିନନ୍ଦନ ଜଣାଇ ସିଧା ନେଇଗଲେ ତା'ର ବସିବା କୋଠରୀକୁ । ଛୋଟ ରୁମ୍‌ଟିଏ ହେଲେ ବି ସାଜସଜ୍ଜା ବେଶ୍ ସୁନ୍ଦର ଥିଲା । ତା'ପରେ ତା' ପାଇଁ ସମସ୍ତ କାର୍ଯ୍ୟ ଭଲ କରି ବୁଝେଇଦେଲେ ଡଃ. ସିଂହ ।

ଏହାଛଡ଼ା ମୁକେଶର ମଧ୍ୟ ସେଠାରେ ରହିବା ପାଇଁ ଏକ କ୍ୱାର୍ଟରର ବନ୍ଦୋବସ୍ତ କରିଦେଲେ । ଅଫିସ୍ କାର୍ଯ୍ୟ କରିବା ପାଇଁ ଏକ ଗାଡ଼ି ମଧ୍ୟ ମୁକେଶ୍‌ର ଜିମାରେ ରହିଲା । ଏକାଥରେ ଏତେ ଗୁଡ଼ିଏ ବ୍ୟବସ୍ଥା ଦେଖି ସେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲା ।

ମୁକେଶ୍‌କୁ ଟିକିଏ ବି ଫୁରୁସତ ମିଳେନା । ଫ୍ୟାକ୍ଟ୍ରିର ସମସ୍ତ କାର୍ଯ୍ୟ ସେ ହାତକୁ ନେଇଛି । ପ୍ରଥମେ ସୂରଜବାବୁ ନିଜେ ମୁକେଶ୍‌କୁ ସାଙ୍ଗରେ ନେଇ ଅଫିସ୍, ଡାକ୍ତରଖାନା, ନର୍ସିଂହୋମ୍ ମାନଙ୍କୁ ଯାଇ ବେବୀ ଫୁଡ୍ ଅର୍ଡ଼ର ଆଣୁଥିଲେ । ଏଣିକି ଧିରେ ଧିରେ ମୁକେଶ ସବୁ ଜାଣିଯାଇଛି ଓ ସେ ନିଜେ ଏ ସବୁ କାର୍ଯ୍ୟ ବେଶ୍ ତତ୍ପରତାର ସହ ତୁଲାଉଛି ଦେଖି ସୂରଜବାବୁ ଖୁସି ହୁଅନ୍ତି । ଫ୍ୟାକ୍ଟ୍ରିର ଉନ୍ନତି ସାଙ୍ଗକୁ କର୍ମଚାରୀମାନଙ୍କ ଦରମା ବି ବଢ଼ିଛି । ମୁକେଶ୍‌ର ବି କାର୍ଯ୍ୟ ପରିସର ବଢ଼ିବା ସାଙ୍ଗକୁ ଦରମା ମଧ୍ୟ ବଢ଼ିଛି । ପ୍ରତିମାସରେ ବାପାଙ୍କ ପାଖକୁ ପାଞ୍ଚହଜାର ଟଙ୍କା ପଠାଇ ଦିଏ ସେ । ତା'ର ମେହନତିର ରୋଜଗାରକୁ ତା' ବାପାଙ୍କ ଚରଣରେ ଭକ୍ତି ଅର୍ଘ୍ୟ ରୂପେ ଅଜାଡ଼ି ଦେବାକୁ ଚାହେଁ । ଖାଲି ଏତିକି ଜାଣେ ସେ ପ୍ରତିମାସରେ ସେ ପଠାଉଥିବା ଟଙ୍କାକୁ ବାପା ଗ୍ରହଣ କରିଛନ୍ତି । ମନଟା ତା'ର ଆନନ୍ଦରେ ନାଚି ଉଠେ ।

ଆଗାମୀ ଦଶହରା, ମା' ଦୁର୍ଗାଙ୍କର ପୂଜୋତ୍ସବ । ଭୁବନେଶ୍ୱର ଶହୀଦନଗରରେ ପ୍ରତିବର୍ଷ ଦେଖିଥିଲା ପରି ପୂଜାମଣ୍ଡପ ହୋଇଥାଏ । ଏବର୍ଷ ତା' ଭାଗ୍ୟରେ ଯୁଟିବ ନାହିଁ । ଅଭିମାନ କରି ଘରୁ ଗୋଡ଼ କାଢ଼ି ପଳାଇ ଆସିଛି, କେବେ ବାହୁଡ଼ିବ କି ନାହିଁ ଜାଣେନି । ଦଶହରାର ମଜା, ସାଙ୍ଗସାଥି, ଭାଇଭଉଣୀଙ୍କୁ ବହୁତ ମନେ ପଡ଼େ ତା'ର । ଛାତିରେ ଏକ ଯନ୍ତ୍ରଣା ଅନୁଭବ କରେ ସେ । ଅତୀତଟା ଆଖି ଆଗରେ ଝଲସି ଉଠେ । ଏତିକି ବେଳେ ବାହାରେ ତା' ନାଆଁ ଧରି କିଏ ଡାକୁଥିବାର ଶୁଭିଲା । ଏଇ

ଟିକିଏ ଆଗରୁ ଅଫିସ୍‌ରୁ ଫେରିଛି ସେ । ସାରାଦିନର ଧାଁ ଧପଡ଼ ଭିତରେ ହାଲିଆ ହୋଇ ପଡ଼ିଥାଏ ମୁକେଶ୍ । ବାହାରେ ଯାଇ ଦେଖେ ସଲିମ୍ ଛିଡ଼ା ହୋଇଛି ।

ଆରେ ସଲିମ୍ ଭାଇ ଯେ, ଆସ ଭିତରକୁ ଆସ ।

ସଲିମ୍ ଫେରି କରି ଯେବେ ଲେଉଟେ, ଏମିତି ଥରେ ଥରେ ମାଡ଼ି ଆସେ ମୁକେଶ୍‌ର କ୍ୱାର୍ଟରକୁ ।

ମୁକେଶ୍ ଆବେଗରେ କୁଣ୍ଢାଇ ପକାଇଲା ସଲିମ୍‌କୁ ।

''ଖୁଦା ସଲାମତ୍ ରଖେ' । ପ୍ରଥମେ ତୋର ସାଙ୍ଗ୍ ଦେଖା ହେବା ଦିନ ମୁଇ ତୋତେ କହିଥିଲି ନା ତୋର ପାଖେ ଗୁଣ ଅଛି, ନିଶ୍ଚେ ଆଲ୍ଲା ତୋତେ କୁଳରେ ଲଗାଇବେ ।''

ହଁ ସଲିମ୍ ଭାଇ । ସବୁ ସେଇ ଭଗବାନଙ୍କ ଇଚ୍ଛା । ତୁମର ସେଇ କଥା କେଇପଦ ହିଁ ମୋତେ ଭରସା ଦେଇଥିଲା ।

ସଲିମ୍ ପାଇଁ ଚାହା, ଜଳଖିଆ ମଗାଇଲା ମୁକେଶ୍ ।

× × ×

ମଝିରେ ମଝିରେ ସୂରଜବାବୁ ପ୍ରଡକ୍‌ସନ୍ ୟୁନିଟ୍‌ଗୁଡ଼ିକ ବୁଲି ଦେଖିଯାଆନ୍ତି ଓ ଏକାଉଣ୍ଟସ୍ ମଧ୍ୟ ଚେକ୍ କରନ୍ତି । ଏଥର ଏକାଉଣ୍ଟସ୍ ଦେଖି ଭାରି ଖୁସି ହୋଇ ଯାଇଥିଲେ ସେ ଓ ବାହାବା ଦେଇଥିଲେ ମୁକେଶ୍‌କୁ । ଆଉ ମଉକା ଦେଖି ମୁକେଶ୍ ଏମ୍.ଡି.ଙ୍କ ଠାରେ କର୍ମଚାରୀମାନଙ୍କ ବୋନସ୍ ବଢ଼ାଇବା ବିଷୟରେ ସୂଚନା ଦିଏ ।

ମୁକେଶ୍‌ର ପ୍ରସ୍ତାବକୁ ସାଦରେ ଗ୍ରହଣ କରିଥିଲେ ସୂରଜବାବୁ ।

ମୁକେଶ୍‌କୁ ଲକ୍ଷ୍ୟ କରି ସୂରଜବାବୁ କହିଲେ, ''ଏଥର ଦୁର୍ଗାପୂଜା ଛୁଟିଟି ଭୁବନେଶ୍ୱରରେ କଟାଇବାକୁ ଇଚ୍ଛା ହେଉଛି, ଆଉ ତୁମେ ବି ଆମ ସହିତ ଯିବ ।'' ସୁରଜ ବାବୁ ତାଙ୍କ ଫ୍ୟାମିଲି ସହିତ ବୁଲିଯିବେ ଭୁବନେଶ୍ୱର ।

ଅନନ୍ୟୋପାୟ ହୋଇ ହଁ ଭରିଲା ମୁକେଶ୍ ।

ଦୁର୍ଗାପୂଜା ଆସିଲା ।

ବମ୍ବେ - ହାଓ୍ୱଡ଼ା ମେଲ୍‌ରେ ସୂରଜବାବୁ ତାଙ୍କ ସ୍ତ୍ରୀ ଓ ଏକମାତ୍ର ଝିଅ ସୌମ୍ୟା ସହିତ ଭୁବନେଶ୍ୱର ଯାତ୍ରା କଲେ । ସପ୍ତମୀ ଦିନ ରାତିରେ ସେମାନେ ପହଞ୍ଚିବେ, ସେମାନଙ୍କର ରହିବା ବ୍ୟବସ୍ଥା ଗାର୍ଡ଼େନ୍ ଇନ୍‌ରେ ହୋଇଥିଲା । ଘରକୁ ଯିବ କି ନାହିଁ ? ଡାକ୍ତର ସୂରଜବାବୁଙ୍କୁ ଘରକୁ ନିମନ୍ତ୍ରଣ ନ କଲେ କ'ଣ ଭାବିବେ ସେ ? ନିଶ୍ଚିତ ଭାବେ ବଡ଼ ଅଭଦ୍ରାମି ହେବ । ଏତିକି ବେଳେ ଡାକ୍ତରବାବୁ ଆସି ତା' ପାଖରେ ବସି ପଡ଼ିଲେ । ''ଜାଣିଛ ମୁକେଶ, ମୁଁ ଜୀବନରେ ଆଜି ଯାହା ବି ହୋଇଛି, ମୋ ଗୁରୁଙ୍କ ପାଇଁ । ସେ ମୋ ଜୀବନର ଆଦର୍ଶ ଓ ଦେବତା ତୁଲ୍ୟ । ଅଷ୍ଟମୀ ଦିନ

ସକାଳେ ପ୍ରଥମେ ତାଙ୍କୁ ମୁଁ ଦର୍ଶନ କରିବାକୁ ଯିବି, ତା'ପରେ ପୂଜା ମଣ୍ଡପ ଯାଇ ଦେବୀଙ୍କୁ ଦର୍ଶନ କରିବି।''

ଭୁବନେଶ୍ୱରରେ ଗୁରୁଙ୍କର ଅଭାବ ନାହିଁ। କିଏ ତାଙ୍କର ଗୁରୁ, ଯାହାଙ୍କୁ ଦେଖିବା ପାଇଁ ଡାକ୍ତରବାବୁ ଯିବେ ସୁଦୂର ବମ୍ବେ ନଗରୀରୁ । ନିଜ ତରଫରୁ ତ ଡାକ୍ତରବାବୁ କିଛି କହୁନାହାଁନ୍ତି, ତାଙ୍କୁ ମଧ୍ୟ ନିମନ୍ତ୍ରଣ ଜଣାଇବାକୁ ସାହସ କରି ପାରୁନଥିଲା ମୁକେଶ୍।

× × ×

ଅଷ୍ଟମୀଦିନ ସକାଳୁ ଉଠି ସମସ୍ତେ ରେଡି ହୋଇଗଲେ । ଗାଡ଼ି ଆଗେଇ ଚାଲିଥାଏ ଡାକ୍ତର୍‌ବାବୁଙ୍କ ନିର୍ଦ୍ଦେଶ କ୍ରମେ । ପ୍ରଥମେ ଯିବେ ତାଙ୍କ ଗୁରୁଦେବଙ୍କ ଘରକୁ । ହଠାତ୍ ଗାଡ଼ି ଆସି ଅଟକିଲା ମୁକେଶ୍‌ଙ୍କ ଦୁଆର ମୁହଁରେ । ଡାକ୍ତରବାବୁ ମୁକେଶ୍‌କୁ ଅନାଇ ଟିକିଏ ହସି ଦେଲେ ।

ସକାଳଟାରେ ଗାଡ଼ିଟିଏ ତାଙ୍କ ଗେଟ୍ ପାଖରେ ଛିଡ଼ା ହେବାର ଦେଖି ଅମୂଲ୍ୟ ବାବୁ ଓ ତାଙ୍କ ପଛେ ପଛେ ଘରର ସମସ୍ତେ ଆସି ଗେଟ୍ ପାଖରେ ହାଜର ହେଲେ । ସବୁରି ମୁହଁରେ ପ୍ରଶ୍ନବାଚୀ ? ଚଷମାକୁ ଟେକି ଧରି ଅନାଇଲେ ଅମୂଲ୍ୟ ସାର୍, ଅମୂଲ୍ୟ ଚୌଧୁରୀ, ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ଆଦର୍ଶ ଶିକ୍ଷକ, ସୂରଜବାବୁଙ୍କ ପୂଜ୍ୟ ଗୁରୁଦେବ । ଗାଡ଼ିରୁ ସମସ୍ତେ ଓହ୍ଲାଇ ପଡ଼ିଲେ । ଅମୂଲ୍ୟବାବୁ ଚିହ୍ନିପାରିଲେ ତାଙ୍କର ପ୍ରିୟଛାତ୍ର ଡାକ୍ତର ସୂରଜଙ୍କୁ । ସାଷ୍ଟାଙ୍ଗ ପ୍ରଣାମ ଜଣାଇ ଆଶୀର୍ବାଦ ନେଲେ ସେ ଗୁରୁଦେବଙ୍କଠାରୁ ।

ଅମୂଲ୍ୟ ସାର ଅନେକ ଦିନ ପରେ ସୂରଜକୁ ଦେଖି ଆତ୍ମହରା ହୋଇ ପଡ଼ିଥିଲେ। ମୁକେଶ୍ ବାପାଙ୍କ ଚରଣ ତଳେ ଅଜାଡ଼ି ଦେଇଥିଲା ନିଜକୁ । ସୂରଜ ସହିତ ମୁକେଶ୍‌କୁ ପାଇ ଆନନ୍ଦରେ ଅଧିର ହୋଇ ପଡ଼ିଥିଲେ ଅମୂଲ୍ୟବାବୁ । ମୁକେଶ୍‌କୁ ପାଇ ଖୁସିରେ ନାଚି ଉଠିଥିଲେ ଭାଇ ଭଉଣୀ ଦୁହେଁ । ଏମିତି ଏକ ନାଟକୀୟ ଭାବେ ଘଟଣାଟି ଘଟିବା ଆଗରୁ କେହି ବି କିଛି ଜାଣି ପାରିନଥିଲେ । କେବଳ ଜାଣିଥିଲେ ଡାକ୍ତର ସୂରଜବାବୁ । ଆଜି ବାପାଙ୍କର ସୁକୃତିରୁ ଫଳ ପାଇଛି ମୁକେଶ୍ । ଅଭିମାନରେ ଘର ଛାଡ଼ି ସିନା ଚାଲି ଯାଇଥିଲା, କିନ୍ତୁ ଆଜି ସେ ମର୍ମେ ମର୍ମେ ଅନୁଭବ କରିଛି ବାପା ହିଁ ତା' ଜୀବନର ଆଲୋକବର୍ତ୍ତିକା ସମ । ଡାକ୍ତର ସୂରଜବାବୁଙ୍କର ଚରଣରେ ତା'ର ମଥାଟି ଆପେ ଆପେ ନଇଁ ଯାଉଥିଲା ।



# ଅଧିକାର

ଅଧିକାର, ଅଧିକାର ଶବ୍ଦଟିକୁ ବାରମ୍ବାର ଦୋହରାଉଥାଏ ପ୍ରଶାନ୍ତି । କେତେ ନେହୁରା ହୋଇଥିଲା ବାପାଙ୍କୁ ସେ, ତାକୁ ତା' ବାଟରେ ଛାଡ଼ି ଦେବା ପାଇଁ । ସେ ଶିକ୍ଷିତା, ସାବାଳିକା, ଭଲ ପାଇ ବିଭା ହୋଇଛି ସୌଭାଗ୍ୟକୁ । ସେମାନେ ଦୁହେଁ ଜଳେଶ୍ୱର କୋର୍ଟରେ ରେଜିଷ୍ଟ୍ରି ମ୍ୟାରେଜ କରିଛନ୍ତି । ସେ ତ କିଛି ପାପ କରିନାହିଁ । ସବୁ ଝିଅମାନେ ଯାହା ଚାହାନ୍ତି, ସେ ବି ତାହା ଚାହେଁ । ବାପାଙ୍କର ଗୋଟିଏ ଜିଦ୍ ସୌଭାଗ୍ୟ ତା'ର ଯୋଗ୍ୟ ନୁହେଁ, ସୌଭାଗ୍ୟ ହାତରେ ତାକୁ ଟେକି ଦେଇ ପାରିବେନି । ତାଙ୍କର କ'ଣ ଝିଅ ଉପରେ କିଛି ଅଧିକାର ନାହିଁ । ପିତୃତ୍ୱର ସମସ୍ତ ମମତା ଅଜାଡ଼ି ଦେଇଛନ୍ତି ତା' ଉପରେ ସେ । ପାଠ ପଢ଼ାଇ ତାକୁ ମଣିଷ କରିଛନ୍ତି । ତାକୁ ତା'ର ନିଜ ଗୋଡ଼ରେ ଛିଡ଼ା କରାଇଛନ୍ତି । ସେ ସ୍ୱାବଲମ୍ବୀ ହୋଇଛି । ତାଙ୍କର ଅନିଚ୍ଛା ସତ୍ତ୍ୱେ ସେ ବିଭା ହୋଇଗଲା ସୌଭାଗ୍ୟକୁ । ଏ ବିଭାଘର ସେ ମାନନ୍ତି ନାହିଁ । ଏ ବିଭାଘର ଭାଙ୍ଗି ଦେବାକୁ ପଡ଼ିବ । ଜବରଦସ୍ତି ବାପା ତାର ଶଂଖା ଭାଙ୍ଗି ଦେଇଛନ୍ତି ଓ ତା' ମୁଣ୍ଡରୁ ସିନ୍ଦୂର ଲିଭାଇ ଦେଇଛନ୍ତି । ବାପା ହୋଇ ଝିଅର ଏପରି ଅମଙ୍ଗଳ ଚିନ୍ତା କରିପାରିଲେ କିପରି ? ବାପାଙ୍କୁ କେତେ ବୁଝାଇବାକୁ ଚେଷ୍ଟା କରିଛି ସେ, ସେ ତା'ର କର୍ତ୍ତବ୍ୟ କେବେ ବି ଭୁଲି ଯିବନି । ତା'ଛଡ଼ା ସୌଭାଗ୍ୟ ସେମିତି ପିଲା ନୁହଁ, ବାପାଙ୍କୁ ସେ ବହୁତ ଭକ୍ତି କରେ ।

''ମୋ ଶଙ୍ଖା ସିନ୍ଦୂର ଫେରାଇ ଦିଅ ବାପା, ମୋତେ ଯିବାକୁ ଦିଅ ମୋ ସ୍ୱାମୀ ପାଖକୁ ।'' ପ୍ରଶାନ୍ତିର ଆଖିର ଲୁହ ତା' ବାପାର କଠିନ ହୃଦୟକୁ ତରଳାଇ ପାରି ନଥିଲା ।

× × ×

ବିଭାଘର ତିନିମାସ ବିତି ଯାଇଥାଏ । ଏଥିପାଇଁ ଥାନାରେ କେଶ୍ କରିଥିଲେ ବାପା । ସଦ୍ୟ ବିବାହିତ ସୌଭାଗ୍ୟ ଓ ପ୍ରଶାନ୍ତିକୁ ଥାନାରେ ହାଜର ହେବାକୁ ପଡ଼େ । ପ୍ରଶାନ୍ତିର ବାପା ବି ଆସିଥିଲେ ଥାନାକୁ । ଥାନାରେ ଫଇସଲା ହୋଇଯାଇଥିଲା । ଏ

ବାହାଘର ବରକନ୍ୟା ସୌଭାଗ୍ୟ, ପ୍ରଶାନ୍ତିର ସ୍ୱଇଚ୍ଛା ମୁତାବକ ହୋଇଥିବାରୁ ସେମାନଙ୍କୁ ଆଇନ୍ ଅଲଗା କରିପାରିବନି । ସେ ଦୁହେଁ ସାବାଳକ ହୋଇ ଯାଇଛନ୍ତି, ସେମାନଙ୍କ ଜୀବନର ଯେ କୌଣସି ନିଷ୍ପତ୍ତି ନେବା ପାଇଁ ସେମାନଙ୍କର ଯଥେଷ୍ଟ ବୟସ ହୋଇଛି । ବାପା ମୁହଁ ଶୁଖାଇ ଫେରି ଆସିଲେ ଥାନାରୁ । ପ୍ରଶାନ୍ତିର ଆଖି କୋଣରେ ଲୁହ ଜକେଇ ଆସିଥିଲା ସେଦିନ ।

ପ୍ରେମ ମାନେନା କିଛି ବାଧା ବନ୍ଧନ । ତା' ପାଖରେ ବାଛ ବିଚାର କିଛି ନଥାଏ । ଉଚ୍ଛୁଳା ନଈଟିଏ ସେ । ଉଚ୍ଚ ଖାଲ ଡେଇଁ ବହିଯାଏ ଦୂରକୁ ବହୁତ ଦୂରକୁ ସାଗରର ସନ୍ଧାନରେ । ସୌଭାଗ୍ୟ ପ୍ରଶାନ୍ତିର ପ୍ରଥମ ଓ ଶେଷ ପ୍ରେମ । ସେ ତାକୁ ଏକାନ୍ତ ଭାବେ ଚାହେଁ । ସୌଭାଗ୍ୟର ପ୍ରେମ ସ୍ରୋତରେ ପ୍ରଶାନ୍ତି ଭାସି ଯାଇଛି ଅନେକ ବାଟ । କେମିତି ସେ ବୁଝାଇବ ତା'ର ବାପାଙ୍କୁ ?

ବାହାଘର ତିନିମାସ ପରେ ସେ ଆସିଛି ବାପ ଘରକୁ । ବିଭୁ, ସାନଭାଇ ଯାଇଥିଲା ତାକୁ ଆଣିବା ପାଇଁ । ବାପର ମନ ପରିର୍ତ୍ତନ ହୋଇଛି ଭାବି ଶାଶୁ ତାକୁ ବିଭୁ ସାଙ୍ଗରେ ପଠାଇ ଦେଇଥିଲେ । କିନ୍ତୁ ବାପ ଘରକୁ ଆସି ବାପାଙ୍କର ତା' ପ୍ରତି ଏଭଳି ବ୍ୟବହାରରେ ସେ ଖୁବ୍ ବ୍ୟଥିତ ହୋଇ ପଡ଼ିଥିଲା । ବାପାଙ୍କର ଏମିତି ଜିଦ୍‌କୁ ସେ କେବେ ମାନି ନେଇ ପାରିବନି । ତକିଆରେ ମୁହଁ ଗୁଞ୍ଜି କାନ୍ଦୁଥିଲା ପ୍ରଶାନ୍ତି । ମାଆ, ପ୍ରଶାନ୍ତିର ଦୁଃଖରେ ଧୈର୍ଯ୍ୟ ଧରି ରହି ପାରିଲେନି । ତା' ପାଖରେ ବସି ତା' ମୁଣ୍ଡରେ ହାତ ବୁଲାଇ ଶାନ୍ତ କରିବାକୁ ଚେଷ୍ଟା କଲେ ସେ । ମାଆଙ୍କର ସ୍ନେହପୂର୍ଣ୍ଣ ହାତର ପରଶ ପାଇ ପ୍ରଶାନ୍ତିର ଅଶ୍ରୁବିଗଳିତ ହେବାକୁ ଲାଗିଲା । ମାଆଙ୍କୁ ଜାବୁଡ଼ି ଧରି କୋହ୍‌ରେ କାନ୍ଦି ଉଠିଲା ସେ । ମାଆର, ଯାହାର ପାଟିରୁ ଦିନେ କାଳେ ଶବ୍ଦଟିଏ ବାହାରେ ନାହିଁ, ପ୍ରଶାନ୍ତିକୁ ଆଶ୍ୱାସନା ଦେଲେ ସେ, ''ସବୁ ଠିକ୍ ହୋଇଯିବ, ବ୍ୟସ୍ତ ହୁଅନା ପ୍ରଶାନ୍ତି ।''

ବାପାଙ୍କର ଏକାନ୍ତ ଅନୁଗତା, ମୂର୍ଖନାରୀ ଏଇ ମାଆଟି । ବାପାଙ୍କର କୌଣସି କଥାରେ ଅଂଶ ଗ୍ରହଣ କରିବାର ଅବକାଶ ନାହିଁ । ଅତ୍ୟନ୍ତ ଉଦାର ହୃଦୟା, ସ୍ନେହଶ୍ରଦ୍ଧାର ପ୍ରତିମୂର୍ତ୍ତିଟିଏ । ବାପା ନିର୍ଦ୍ଦେଶ ଦେଇଛନ୍ତି, ପ୍ରଶାନ୍ତିକୁ ନଜର ବନ୍ଦୀରେ ରଖିବା ପାଇଁ । ସେ ଆଉ କେବେବି ଶାଶୁ ଘରକୁ ଯାଇ ପାରିବନି । ମାଆ ଯଦି ବାପାଙ୍କ କଥାକୁ ଖିଲାପ କରିବେ, ତାଙ୍କର ବି ଏଠାରେ ସ୍ଥାନ ନାହିଁ । ସେଇ ମାଆଙ୍କ ମୁହଁରୁ ଶାନ୍ତ୍ୱନା ପାଇଁ ଆଶ୍ଚର୍ଯ୍ୟରେ ଅନାଇଥିଲା ପ୍ରଶାନ୍ତି ।

× × ×

ଶାଶୁଘରେ ବୋହୂ ବୋଲି ପ୍ରଶାନ୍ତିକୁ ସ୍ୱୀକାର କରି ନେଇଛନ୍ତି । ଶାଶୁ ତ ଶାଶୁ ନୁହଁନ୍ତି ସାକ୍ଷାତ ଦେବୀଟିଏ । ଶ୍ୱଶୁର ଇହଜଗତରୁ ବିଦାୟ ନେଇ ଚାଲି ଯାଇଛନ୍ତି ।

ଶାଶୁ ହିଁ ସଂସାରର ହର୍ତ୍ତାକର୍ତ୍ତା ବିଧାତା । କିନ୍ତୁ ଦାଦାଶ୍ୱଶୁର ପରିବାର ଚଳାନ୍ତି । ଏକମାତ୍ର ପୁଅ ସୌଭାଗ୍ୟର ସୁଖରେ ସମସ୍ତଙ୍କର ଖୁସି । ଘରେ ମାନି ନିଅନ୍ତି ସେମାନଙ୍କର ଏଇ ପବିତ୍ର ବନ୍ଧନକୁ । ପ୍ରଶାନ୍ତି ପରି ଶିକ୍ଷିତା ବୋହୂଟିଏ ପାଇ ଆନନ୍ଦରେ ମଜ୍ଜିଯାଆନ୍ତି ସାରା ପରିବାର । ପ୍ରଶାନ୍ତିକୁ ଏପର୍ଯ୍ୟନ୍ତ ପଦଟିଏ କେହି କିଛି କହି ନାହାନ୍ତି । ପ୍ରଶାନ୍ତି ବି.ଇଡି. ପାଶ୍ କରି କୈବଲ୍ୟପୁର ମ.ଇ. ସ୍କୁଲରେ ଶିକ୍ଷୟିତ୍ରୀ କାର୍ଯ୍ୟ କରେ । ବିବାହ ପରେ ବି ଏଥିରେ ଶାଶୁଘରେ କେହି ବାଧା ଦିଅନ୍ତିନି ।

ସୌଭାଗ୍ୟକୁ ପାଇ ପ୍ରଶାନ୍ତି ଖୁସି ହୋଇଛି । ଶାଶୁଘରେ ଏକ ନୂତନ ସଦସ୍ୟ ଭାବେ ନିଜକୁ ହଜେଇ ଦେଇଛି ସେ ନୂତନ ସ୍ୱାଦରେ ।

ବାପା କ'ଣ ଚାହାଁନ୍ତିନି ପ୍ରଶାନ୍ତି ଭଲରେ ରହୁ, ସୁଖରେ ସଂସାର କରୁ । ସେ ଜାଣେ ବାପା କେବେବି ପ୍ରଶାନ୍ତିର ଖରାପ ଚିନ୍ତା କରିବେନି । କ୍ରୋଧବଶତଃ ସେ କହି ପକାଇଛନ୍ତି କ'ଣ ସବୁ, ପରେ ସେ ନିଶ୍ଚେ ବୁଝିବେ, ମନରେ ଆଶା ଜାଗେ ପ୍ରଶାନ୍ତିର ।

ପ୍ରଶାନ୍ତି ଯେବେ କଲେଜରେ ଏଡ୍‌ମିଶନ୍ ନିଏ, ଏଇ ସୌଭାଗ୍ୟ ସାଙ୍ଗେ ତାର ପରିଚୟ ହୁଏ । ସେ ଯେ ତାଙ୍କ ବାପାଙ୍କର ଷ୍ଟୁଡେଣ୍ଟ ସେ ଜାଣି ପାରିଥିଲା ତା' କଥାବାର୍ତ୍ତାରୁ । କେତେଥର ସୌଭାଗ୍ୟ ତାଙ୍କ ଘରକୁ ଆସିଛି ଓ ବାପାଙ୍କ ସହିତ ଗପସପ ମଧ୍ୟ ହୁଏ, ତା'ର ପାଠପଢ଼ା ନେଇ । ସୌଭାଗ୍ୟ ଖୁବ୍ ଭଲ ପଢ଼େ ବୋଲି ବାପା ତା'ର ଉଚ୍ଚ ପ୍ରଶଂସା କରନ୍ତି । ସାଙ୍ଗ ହିସାବରେ ସେମାନଙ୍କର ଅବାଧ ମିଳାମିଶାକୁ ବାପା କେବେ ବି ବାଧା ଦେଇ ନାହାଁନ୍ତି । ସେମାନେ ଦୁହେଁ ପରସ୍ପରଠାରୁ ସାହାଯ୍ୟ ନେଇ ପାଠ ପଢ଼ାରେ ମନ ଦିଅନ୍ତି । ବାପା ତ କେବେ ମନା କରି ନାହାଁନ୍ତି । ସି.ଟି. ଫର୍ମ ପକାଇବା ପାଇଁ ବାପା ନିଜେ ସୌଭାଗ୍ୟ ସହିତ ଆଲୋଚନା କରିଥିଲେ । ପ୍ରଶାନ୍ତି କିଛି ଜାଣିବା ଆଗରୁ ସୌଭାଗ୍ୟ ଫର୍ମ ଆଣି ଧରାଇ ଦେଇଥିଲେ ତା' ହାତରେ ଓ ଫର୍ମ ପକାଇବାର ତାକୁ ହିଁ ଦାୟିତ୍ୱ ଦେଇଥିଲା ପ୍ରଶାନ୍ତି । ସୌଭାଗ୍ୟ ପ୍ରତି ଆକୃଷ୍ଟ ହେବା ପାଇଁ ଯଥେଷ୍ଟ ଭୂମିକା ଥିଲା ତା' ବାପାଙ୍କର । ଆଜି ବାପା କ'ଣ ପାଇଁ ବିମୁଖ ।

ଜୀବନର ଛବିଶ ଗୋଟି ବସନ୍ତ ଅତିକ୍ରମ କରି ଆସିଛି ପ୍ରଶାନ୍ତି । ଆଜିକୁ ପାଞ୍ଚ ବର୍ଷ ହେବ ଶିକ୍ଷୟିତ୍ରୀ ଭାବେ ଅବସ୍ଥାପିତା । ବାପାଙ୍କର ଇଚ୍ଛା ସେ ପୂରଣ କରିପାରିଥିଲା, ଯେଉଁଦିନ ସେ ପ୍ରଥମ କରି ଚାକିରୀରେ ଜଏନ୍ କଲା । ସେଦିନ ତାଙ୍କ ଘରେ ଏକ ଛୋଟ ଭୋଜିର ଆୟୋଜନ କରିଥିଲେ ବାପା । ସୌଭାଗ୍ୟ ବି ଆସିଥିଲା ବାପାଙ୍କ ନିମନ୍ତ୍ରଣ ପାଇ । ଧୁମ୍‌ଧାମ୍‌ରେ ଘରଟି ଉଚ୍ଛୁଳି ପଡ଼ିଥିଲା । ବାପାଙ୍କର ଖୁସି କହିଲେ ନ ସରେ । ତା' ପରେ ବାହାଘର ପାଇଁ କେତେ ପ୍ରସ୍ତାବ ତା' ପାଇଁ ଆସେ । କିନ୍ତୁ

ବାପା ନିରବ ହୋଇ ରହିଥା'ନ୍ତି । ପ୍ରତିଟି ବସନ୍ତ କାନେ କାନେ ଚୋରା ପୀରତିର ସୁଲଳିତ ତାନ ତୋଳି ଧରିଛି । ରଙ୍ଗୀନ ପ୍ରଜାପତିର ମନ ନେଇ ଚିତ୍ରିତ କରିଛି ପ୍ରଶାନ୍ତି ନିଜକୁ । ଆଇନା ଆଗରେ ନିଜ ରୂପ ଲାବଣ୍ୟକୁ ସଜାଇଛି ନୂତନ ସମ୍ଭାରରେ । ପ୍ରତିଥରହିଁ ତା' ସାମ୍ନାରେ ପ୍ରତୀୟମାନ ହୁଏ ସୌଭାଗ୍ୟ ତା' ଜୀବନର ପ୍ରଥମ ପୁରୁଷ, ପହିଲି ପ୍ରେମ ତା'ର । ବାପାଙ୍କର ନୀରବତା ତାକୁ ସୌଭାଗ୍ୟର ନିକଟତର କରିଛି । କେମିତି ବୁଝାଇବ ବାପାଙ୍କୁ ତା'ର । ଆଜି ପନ୍ଦର ଦିନ ହେବ ବାପାଙ୍କ ନଜରବନ୍ଦୀରେ ଅଛି ସେ ।

× × ×

ମାଆ ତା' ଦୁଃଖରେ ସମଦୁଃଖୀ ହୋଇ ଉଠେ । ନ ଖାଇ ନପିଇ ପ୍ରଶାନ୍ତି ଶୋଇଛି ଖଟ ଉପରେ । କେତେ ବୁଝାଇ ସୁଝାଇ ଝିଅ ମୁହଁରେ ଟିକିଏ କ'ଣ ଦେଇଛନ୍ତି ସେ । ମୁହଁ ଫେରାଇ ନିଏ ପ୍ରଶାନ୍ତି । ପ୍ରଶାନ୍ତିର କଷ୍ଟ ସହି ପାରେନି ମାଆ । ମାଆ ବିତ ଝିଅଟିଏ, ନାରୀଟିଏ । ପ୍ରଶାନ୍ତି ନିଜକୁ ଧିକ୍କାର କରି ଉଠେ । ଅଦ୍ଭୁତ ଏ ଝିଅ ଜନମ । ଜନ୍ମ ଗୋଟିଏ ଜାଗାରେ, ତ ମୃତ୍ୟୁ ଆଉ ଏକ ଜାଗାରେ । ହେତୁ ପାଇଲା ଦିନରୁ ତା'ର ନିଜର·ବୋଲି କିଛି ନାହିଁ । ସେ କ'ଣ ଖାଇବ, କ'ଣ ପିନ୍ଧିବ, କ'ଣ ପଢ଼ିବ ତା'ର ମତ ଦେବାର ଅଧିକାର ନାହିଁ । ତା' ପାଇଁ ଅଛନ୍ତି ବାପା, ମା, ଭାଇ ଓ ଅନ୍ୟମାନେ । ପରଘରୀ ହେବା ଯାକେ ସମସ୍ତେ ତା' ଉପରେ ଅଧିକାର ଜମେଇ ବସନ୍ତି । ଆଉ ପରଘରେ ଯାଇ ଅଜଣା ଜାଗାରେ ଅଜଣା ଲୋକଙ୍କୁ ନିଜର କରିବା ପାଇଁ ନିଜସ୍ୱ ଅଭିମାନକୁ ସମ୍ପୂର୍ଣ୍ଣ ବଳି ଦେବାକୁ ପଡ଼ିଥାଏ ତାକୁ । ଶାଶୁ, ଶ୍ୱଶୁର, ସ୍ୱାମୀଙ୍କୁ ଖୁସି କରିବାକୁ ଯାଇ ଦିନ ଗୁଡ଼ିକ ତା'ର ବିତିଯାଏ । ଆଖି ଆଗରେ ମାଆକୁ ଦେଖେ ପ୍ରଶାନ୍ତି । ବାପାଙ୍କ ସାମ୍ନାରେ ପାଟି ଫିଟାଇବାର ତା'ର ଜୁ ନାହିଁ । ବାପା କ'ଣ ଚାହିଁ ନଥିଲେ ପ୍ରଶାନ୍ତି ପରଘରୀ ହେଉ, ସଂସାର କରି ସୁଖରେ ରହୁ ବୋଲି । ବାପା କେବଳ ତା' ଉପରେ ଅଧିକାର ଜମେଇ ବସିଥିଲେ, ଆଉ ଝିଅ ପ୍ରତି ତାଙ୍କର କର୍ତ୍ତବ୍ୟ ସେ କ'ଣ ଭୁଲି ଯାଇଥିଲେ ? ତାଙ୍କର ଅଧିକାର କେବଳ ତାଙ୍କ ଝିଅ ପ୍ରଶାନ୍ତି ଉପରେ ଥିଲା ନା ତା'ର ଚାକିରୀ, ରୋଜଗାର ଉପରେ ବାପାଙ୍କର ଆଖି ରହିଛି । କିଛି ବୁଝିପାରୁ ନଥାଏ ସେ ।

ଭାବନାର ଖିଅ ଗୁଡ଼ିକ ଅଡୁଆ ହୋଇ ଯାଉଥାଏ । ବାପାଙ୍କର ମନ କଥା ସ୍ପଷ୍ଟ ଭାବେ ବୁଝି ପାରିଲାନି ସେ । ବାପା ତା' ପାଖରେ କ୍ରମେ ରହସ୍ୟମୟ ହୋଇ ଉଠିଛନ୍ତି ଭାବି ମନଟା ତା'ର ବିଷର୍ଣ୍ଣ ହୋଇ ଉଠିଲା ।

× × ×

ବହୁତ ଦୁର୍ବଳ ହୋଇ ପଡ଼ିଥାଏ ପ୍ରଶାନ୍ତି । ସେଇ ଅତ୍ୟନ୍ତ ଦୁର୍ବଳା ନାରୀ

ମାଆଟିର ଆଶ୍ୱାସନା ହିଁ ତାର ଏକମାତ୍ର ଭରସା । ପ୍ରଶାନ୍ତିକୁ କିଛି ରୁଚୁ ନାହିଁ । ବାନ୍ତି ବାନ୍ତି ଲାଗୁଛି କିନ୍ତୁ ବାନ୍ତି ହେଉନି । ମାଆ ଠିକ୍ କଳନା କରି ନିଏ ଝିଅ ତା'ର ଅନ୍ତଃସତ୍ତ୍ୱା । ମାଆ ବିବ୍ରତ ହୋଇ ପଡ଼େ । ପାଟି ଫିଟୁ ନଥିବା ମାଆଟିର ସହ୍ୟ ଶକ୍ତି ସୀମା ଲଙ୍ଘି ଯାଏ । ଝିଅ ପ୍ରତି ଅନ୍ୟାୟ ନ କରିବାକୁ କାନ୍ଦି କାନ୍ଦି ସ୍ୱାମୀଙ୍କର ଗୋଡ଼ ଦୁଇଟିକୁ ଜାବୁଡ଼ି ଧରିଥିଲା ସେ । କିନ୍ତୁ ବାପା ପାଲଟି ଯାଆନ୍ତି ପାଷାଣ ମୂର୍ତ୍ତିଟିଏ । ମାଆଙ୍କର କୌଣସି କଥା ସେ ଶୁଣିବାକୁ ଚାହାଁନ୍ତିନି । ନିରାଶାରେ ମନ ତା'ର ଭରିଯାଇଥିଲା । ବାପା ଶୁଣାଇ ଦେଇଥିଲେ ଝିଅ ତାଙ୍କର, ତାଙ୍କର ଯାହା ଇଚ୍ଛା ସେ କରିବେ ।

ପ୍ରଶାନ୍ତି କ'ଣ ମାଟିରେ ତିଆରି ନିର୍ଜୀବ କଣ୍ଢେଇଟିଏ, ମନ ବୋଲି ତା'ର କିଛି ନାହିଁ । କି ଅଧିକାର ନେଇ ବାପା ତା' ପ୍ରତି ଏମିତି କଠୋର ହୋଇ ଉଠିଛନ୍ତି । ତମ ତମ ହୋଇ ବାପା ବାହାରି ଚାଲିଗଲେ ଗାଁ ବିଚାରକୁ । କେତେ ରାତି ହେବ କେଜାଣି ନଖାଇ, ନପିଇ ଶୋଇ ବାଟ ଚାହିଁ ଜଗି ବସିଥିବ, ଏହି ସ୍ୱାମୀ ଅନୁରକ୍ତ ନାରୀଟି ।

ମୁହଁ ସଞ୍ଜ ବେଳ । ଚଉରା ମୂଳେ ସଂଜବତୀ ଦେଇ ପ୍ରଦକ୍ଷିଣ କରୁଥାଏ ମାଆ । ମନେ ମନେ କ'ଣ ସବୁ ମନ୍ତ୍ର ଜପି ଚାଲିଥାଏ । ମୁଣ୍ଡିଆ ମାରିସାରି ମାଆ ତରବର ହୋଇ ପଶି ଆସିଲେ ପ୍ରଶାନ୍ତିର ଘର ଭିତରକୁ । ପ୍ରଶାନ୍ତିର ବ୍ୟାଗ୍‌ଟିକୁ ସଜାଡ଼ି ଦେଇ ପ୍ରଶାନ୍ତିକୁ ସଜାଇ ଦେଲେ, ମାଆ ପାଖରେ ତାଙ୍କର ସାଇତା ସମସ୍ତ ପ୍ରସାଧନୀ ଦେଇ । ସରାଗରେ ଚୁମ୍ବନଟିଏ ଆଙ୍କି ଦେଲେ ତା'ର କପାଳ ଦେଶରେ । ପ୍ରଶାନ୍ତିର ମୁଣ୍ଡରେ ସିନ୍ଦୁର, ହାତରେ ଶଂଖା ପିନ୍ଧାଇ ଦେଲେ ସେ । ମାଆର ଅଧିକାର ଯେପରି ଜାଗ୍ରତ ହୋଇ ଉଠିଛି । ଆଖିରେ ତାଙ୍କର ଚିକ୍‌ମିକ୍ କରୁଥିଲା ଆନନ୍ଦାଶ୍ରୁ । ନଈ ବନ୍ଧରେ ଛିଡ଼ା ହୋଇ ଅନେଇ ଥାଆନ୍ତି ସେ ପ୍ରଶାନ୍ତିର ଯିବା ବାଟକୁ । ଆଗରେ ଅପାର ବ୍ୟାଗ୍ ଧରି ବିଭୁ, ଆଉ ତା ପଛେ ପଛେ ପ୍ରଶାନ୍ତି ।



# ଊର୍ମି

ସମୟ ଅପରାହ୍ଣ ଚାରିଟା ହେବ । ସ୍ମୃତି ମେମୋରିଆଲ ମେଡିକାଲରୁ ଫେରି ବହୁତ ହତାଶ ହୋଇ ପଡ଼ିଛନ୍ତି ଭବାନୀବାବୁ । ସକାଳରୁ ଯାଇ ଅପେକ୍ଷା କରି ଊର୍ମି ସହିତ ସାକ୍ଷାତ ହୋଇ ପାରିଲାନି । ଡାକ୍ତର ଊର୍ମି ଶତପଥି ମେଡିକାଲର ପ୍ରତିଷ୍ଠାତା ଓ ଚିଫ୍ ଅଟନ୍ତି । ଏଠାରେ କେବଳ ଗରିବ ଓ ଅସହାୟ ପିଲାମାନଙ୍କୁ ଫ୍ରି ଚିକିତ୍ସା କରାଯାଏ । ଊର୍ମିଦେବୀ ସାରାଦିନ ରାତି ଏତେ ବିଜି ରହନ୍ତି ଯେ, ଖାଇବା, ପିଇବା ବି ସେ ଭୁଲି ଯାଇଥାନ୍ତି । କେବଳ ସେ ନୁହଁନ୍ତି ଆହୁରି ମଧ୍ୟ ପାଞ୍ଚଜଣ ଡାକ୍ତର ତାଙ୍କ ସହିତ କାମ କରନ୍ତି । କିନ୍ତୁ ଓଭରହୋଲ ଦାୟିତ୍ୱ ତାଙ୍କର । ଡାକ୍ତର କର୍ମଚାରୀ, ନର୍ସ ମାନେ ଅତ୍ୟନ୍ତ ନିଷ୍ଠା ଓ ଆତ୍ମୀୟତାର ସହିତ କାର୍ଯ୍ୟ କରିଥାଆନ୍ତି । ଟିକିଏ ବି ତ୍ରୁଟି ବିଚ୍ୟୁତି ସହି ପାରନ୍ତିନି ଡାକ୍ତର ଊର୍ମି ।

ଏଇ ଊର୍ମି, ଭବାନୀ ବାବୁଙ୍କ ଜୀବନର ଶତ ତରଙ୍ଗ ସୃଷ୍ଟି କରିଥିଲା । ଊର୍ମି ଓ ଭବାନୀ ଶଙ୍କର ଦୁହେଁ ଥିଲେ ପଢ଼ାସାଥୀ । ଫକୀର ମୋହନ କଲେଜର ଷ୍ଟୁଡେଣ୍ଟ ସେମାନେ । କ୍ଲାସରେ କେହି କହାକୁ କମ୍ ନୁହଁନ୍ତି । କଲେଜରେ ସବୁଠାରୁ ବ୍ରିଲିଏଣ୍ଟ ଷ୍ଟୁଡେଣ୍ଟ ହେଉଛନ୍ତି ଭବାନୀ ଶଙ୍କର ଓ ଊର୍ମି । ଦୁହିଁଙ୍କ ମଧ୍ୟରେ ବନ୍ଧୁତା ଗଢ଼ି ଉଠେ କଲେଜ୍ ଲାଇଫ୍‌ରୁ । ପ୍ଲସ୍ ଟୁ ପରେ ପାଠପଢ଼ା ଲାଇନ୍ ବଦଳିଯାଏ ସେମାନଙ୍କର । ଊର୍ମି ଡାକ୍ତରୀ ପଢ଼ିବା ପାଇଁ ଭର୍ତ୍ତି ହୁଏ କଟକ ଏସ୍.ସି.ବି. ମେଡିକାଲ୍‌ରେ ଆଉ ଭବାନୀଶଙ୍କର ଓ.ୟୁ.ଏ.ଟି.ରେ ଏଗ୍ରିକଲ୍‌ଚର ଇଞ୍ଜିନିୟରିଂ ନେଇ ଭୁବନେଶ୍ୱରରେ ପଢ଼ନ୍ତି । ମାତ୍ର ସେମାନଙ୍କର ବନ୍ଧୁତାରେ ଟିକିଏ ବି ବ୍ୟତିକ୍ରମ ଦେଖାଯାଏନି ।

ସମୟ ଗଡ଼ିଚାଲେ । ପାଠ ପଢ଼ା ସାରି ଯେ ଯାହାର କର୍ମ ପଥରେ ଯୋଗଦାନ କରନ୍ତି । ସେମାନଙ୍କ ଭିତରେ ଗଢ଼ି ଉଠିଥିବା ଆନ୍ତରିକତା ଦୁହିଁଙ୍କୁ ବୈବାହିକ ଜୀବନରେ ବାନ୍ଧି ଦିଏ । ଦୁହେଁ ଦୁହିଁଙ୍କୁ ପାଇଁ ସ୍ୱର୍ଗସୁଖ ଅନୁଭବ କରନ୍ତି । ନୂଆ ଜୀବନ ଆରମ୍ଭ ହୁଏ ନୂଆ ଛନ୍ଦରେ । କେତେ ଯେ ବିନିଦ୍ର ରଜନୀ ପାହିଯାଏ ଗପ ସପରେ, ଜଣା ପଡ଼େନି । ପ୍ରତିଟି ମୁହୂର୍ତ୍ତରେ ସୁନେଲୀ ସ୍ୱପ୍ନରେ ଆତ୍ମହରା ହୋଇପଡ଼ନ୍ତି ଦୁହେଁ । ଭୁଲି

ଯାଆନ୍ତି ଅଫିସର ଓ ଡାକ୍ତରର କର୍ତ୍ତବ୍ୟ । ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ ଚକ୍ର ପରି ବୁଲୁଥାଏ ଏ ସଂସାରରେ । ଉର୍ମିର ମନରେ ଛନକା ପଶେ, କାଳେ ସେମାନଙ୍କ ସୁଖରେ ଗ୍ରହଣ ଲାଗି ଯିବନି ତ?

ସେଦିନ କଥାଆଜି ମନେ ପଡ଼ି ଅଶ୍ରୁ ଜକେଇ ଆସିଲା ଭାବାନୀ ଶଙ୍କରଙ୍କ ଆଖିରେ । ରାତି ପାହି ଆସୁଥାଏ । ଗାଢ଼ ନିଦରେ ଶୋଇଛନ୍ତି ସେ, ପାଖରେ ଉର୍ମି । ହଠାତ୍ ତାଙ୍କ ଗଳାକୁ ଦୁଇ ହାତରେ ଗୁଡ଼ାଇ ଧରି ଉର୍ମି ଚିତ୍କାର କରୁଥାଏ ଭବାନୀ ... ଭବାନୀ ....

କ'ଣ ହେଲା ବୋଲି କୋଳକୁ ଟାଣି ଆଣିଲେ ଭବାନୀ ବାବୁ ଓ ଉର୍ମିକୁ ଜୋର୍‌ରେ ଝିଙ୍କି ଦେଲେ ।

ଭୟରେ ଥରୁଥିଲା ଉର୍ମି । ଭବାନୀ, ଉର୍ମିର ମୁହଁରେ ଉଷ୍ମ ଚୁମ୍ବନ କେତୋଟି ଆଙ୍କି ଦେଇ ପଚାରିଲେ, 'କ'ଣ ହେଲା ମୋ ରାଣୀ' ସେତେବେଳକୁ ସ୍ୱପ୍ନ ଭାଜି ଯାଇଥାଏ ଉର୍ମିର ଓ ଲାଜରେ ସଢ଼ିଗଲା ସେ ।

'ତୁମେ ମୋ ମୁଣ୍ଡ ଛୁଇଁଲ, ତୁମେ ମୋତେ ଛାଡ଼ି କୁଆଡ଼େ ଯିବନି । ତୁମ ବିନା ମୁଁ ଦଣ୍ଡେ ବି ରହି ପାରିବିନି । ଭବାନୀର ହାତଟି ନେଇ ଉର୍ମି ତା ମୁଣ୍ଡରେ ରଖିଲା । ଜାଣିଛ ସ୍ୱପ୍ନରେ ଦେଖିଲି ତୁମେ ମୋ ଠାରୁ ବହୁ ଦୂରକୁ ଚାଲି ଯାଉଛ ଓ ମୁଁ ତୁମ ପଛେ ପଛେ ଅନ୍ଧାର ଭିତରେ ଦଉଡ଼ି ଦଉଡ଼ି ହାଲିଆ ହୋଇଗଲିଣି, ଅଥଚ ତୁମର ଦେଖା ନାହିଁ ।'

'ଆରେ ପାଗିଳୀ ସ୍ୱପ୍ନ ତ ସ୍ୱପ୍ନ, ଆଉ ତୁମେ ତ ମୋ କୋଳରେ ।' ସେଦିନ ଖୁବ ଲାଜେଇ ଯାଇ ଭବାନୀକୁ ଭିଡ଼ି ଧରିଥିଲା ଜୋର୍‌ରେ ଉର୍ମି ।

ତା ମୁଣ୍ଡରେ ହାତ ରଖି ସେ ଶପଥ କରିଥିଲେ, 'ଭବାନୀ କେବଳ ଉର୍ମିର ଓ ଉର୍ମି ଭବାନୀର' ଆଉ ସବୁ ମିଛ ।

ଭବାନୀ ଓ ଉର୍ମିର ପ୍ରେମର ସ୍ୱାକ୍ଷର ବହନ କରି ଉର୍ମିର କୋଳକୁ ଆସେ ସ୍ମୃତି, ସତେକି କଣ୍ଢେଇଟିଏ ।

ସ୍ମୃତିର ସ୍ମୃତିରେ ବ୍ୟଥିତ ହୋଇ ପଡ଼ନ୍ତି ଭବାନୀ ବାବୁ । କେଡ଼େ ସୁଖର ଦିନ ଗୁଡ଼ିକ ଥିଲା ତାଙ୍କର । ସ୍ମୃତିକୁ ନେଇ ମାତି ଉଠିଥାଆନ୍ତି ବାପା, ମାଆ ଦୁହେଁ । ଭବାନୀବାବୁ ବାରମ୍ୱାର ଅଫିସରୁ ଆସି ବୁଲି ଦେଇ ଯାଆନ୍ତି ଘରେ ଓ ପାଞ୍ଚଟା ବାଜିବା ମାତ୍ରେ ଘରେ ହାଜର । ଉର୍ମି ଅପେକ୍ଷା ଭବାନୀଶଙ୍କରଙ୍କ ଦାୟିତ୍ୱ ଅଧିକା । ଯେଉଁ ଦିନ ଉର୍ମିଙ୍କର ନାଇଟ୍ ଡ୍ୟୁଟି ଥାଏ, ସାରାରାତି ଭବାନୀ ହିଁ ସ୍ମୃତି ପାଖରେ ଥାଆନ୍ତି । ଯଦିବା ଜଣେ ଗଭର୍ନେସ୍ ରଖିଥାଆନ୍ତି, କିନ୍ତୁ ଟିକିନିଖି କଥା ବୁଝି ଥାଆନ୍ତି ମାଆ, ବାପା ଦୁହେଁ । ସ୍ମୃତି ଦିନକୁ ଦିନ ଶଶୀକଳା ପରି ବଢ଼ିଚାଲେ ।

ଅଫିସ୍ କାମରେ ଥରେ ଥରେ ଭବାନୀ ଶଙ୍କରବାବୁଙ୍କୁ ଟୁରରେ ଯିବାକୁ ପଡ଼ିଥାଏ । ସେତିକିବେଳେ ଭାରି ମିସ୍ କରନ୍ତି ସ୍ମୃତିକୁ ସେ ।

ସ୍ମୃତି ଖାଲି ସ୍ମୃତି ହୋଇ ରହିଯାଇଛି । ଅଭିମାନ ଭରା ଛଳ ଛଳ ମୁହଁଟି ତା'ର ଭାସି ଉଠେ ତାଙ୍କ ମାନସପଟରେ । ଟପ୍ କରି ଖସିପଡ଼େ ଦୁଇ ବିନ୍ଦୁ ଲୁହ ।

ସମୟର ରଥଚକ ତଳେ ମଣିଷ ଚାପି ହୋଇଯାଏ । ସମୟର ଖେଳ ଭବାନୀଶଙ୍କରଙ୍କ ଜୀବନରେ କାଳ ହୋଇ ଠିଆ ହୁଏ । ଇତି ମଧ୍ୟରେ ଏକ ସୁନ୍ଦର ଉଦ୍ୟାନଟିଏ ନିଜ ମନ ମୁତାବକ ଗଢ଼ିଛନ୍ତି ସେ । କୃଷି ବିଭାଗ ଅଫିସ୍‌ର ଇଞ୍ଜିନିୟର ହୋଇ ନିଜର ସମସ୍ତ ଆଇଡିଆ ସେ ସେଥିରେ ବିନିଯୋଗ କରିଛନ୍ତି । ଭୁବନେଶ୍ୱର - କଟକ ମଧ୍ୟସ୍ଥଳରେ କେନାଲ ବନ୍ଧ କଡ଼କୁ ଦଶ ଏକର ବିଶିଷ୍ଟ ତାରବାଡ଼ ଘେରା ବିରାଟ ଫାର୍ମଟି । ଫାର୍ମଟିର ମଧ୍ୟ ସ୍ଥଳରେ ଛୋଟ ଫାର୍ମ ହାଉସ୍‌ଟି । ଛୋଟ ହେଲେ ବି ଅତ୍ୟାଧୁନିକ ଡିଜାଇନ୍‌ର ତିଆରି କୋଠାଟି ଉଦ୍ୟାନଟିର ସୌନ୍ଦର୍ଯ୍ୟକୁ ଦ୍ୱିଗୁଣିତ କରି ଦେଇଥାଏ । କଳା ମୁଗୁନି ପଥରରେ ତିଆରି ଘରଟି ଚିକ୍‌ମିକ୍ କରୁଥାଏ । ଫାର୍ମ ହାଉସ୍‌ର ନାଁ ରଖିଛନ୍ତି 'ଉର୍ମିଭିଲା' । ଭବାନୀ ଶଙ୍କରଙ୍କ ଫାର୍ମକୁ ଯିଏ ଥରେ ଯାଇଛି ପ୍ରଶଂସାରେ ଶତମୁଖର ହୋଇ ଉଠିଛି । ସହଜରେ ଆଖି ଫେରାଇ ହୁଏନି ସେଠାରୁ । ଆମ୍ବ ବଗିଚା, ନଡ଼ିଆ ବଗିଚା, ବିଭିନ୍ନ କିସମର ଫଳ ବଗିଚା ପ୍ଲଟିଂ ଅନୁସାରେ ସୁନ୍ଦର ଭାବରେ ସଜା ହୋଇ ଲଗା ହୋଇଥାଏ । ଫାର୍ମହାଉସ୍‌କୁ ଲାଗି ଫୁଲ ବଗିଚାଟି ଦେଖିବା ଭଳି ହୋଇଥାଏ । ଦେଶୀ ବିଦେଶୀ ଡାଲିଆ, ଜିନିଆ, ଗୋଲାପ ଫୁଲର ସମାହାର ଦର୍ଶକଙ୍କ ମନ କିଣିନିଏ । ଦୁଇ ଏକରରୁ ଊର୍ଦ୍ଧ୍ୱ ହେବ ବିରାଟ ପୋଖରୀଟିରେ ନାଲି, ନେଳି ମାଛ ଓ ଦେଶୀ ମାଛର ଗୋଡ଼ାଗୋଡ଼ି ଖେଳ ଦେଖି ତଟସ୍ଥ ହୋଇ ଯାଆନ୍ତି ସମସ୍ତେ । ଚାକର ମୂଲିଆଙ୍କ ପାଇଁ ଛୋଟ ଛୋଟ ଘର ତୋଳାଇ ଦେଇଥାନ୍ତି ଭବାନୀବାବୁ । ଦିନରାତି ସେମାନେ ଖଟୁ ଥାଆନ୍ତି ସେଇ ବଗିଚାରେ । ସେଠାରେ ନାହିଁ ଗ୍ରାମ୍ୟ ଜୀବନର ଜଞ୍ଜାଳ କି ସହରୀ ସଭ୍ୟତାର କୋଳାହଳ ।

ଏତେସବୁ ସେ କାହା ପାଇଁ କରିଛନ୍ତି ? ଭବିଷ୍ୟତର ଏକ ସୁନ୍ଦର ସୁସ୍ଥ ପରିକଳ୍ପନା ନେଇ ସେ ଗଢ଼ିଥିଲେ ଏଇ ଉଦ୍ୟାନଟିକୁ । କିନ୍ତୁ 'ଉର୍ମି ଭିଲା' ଆଜି ଉର୍ମି ବିହୀନ ।

ଉର୍ମି ଓ ଭବାନୀଶଙ୍କର ମାନସପୁତ୍ର 'ଉର୍ମିଭିଲା'

ଉର୍ମି କାର୍ଯ୍ୟରୁ ଥରେ ଥରେ ଖସି ଆସେ ଭବାନୀବାବୁଙ୍କ ସଙ୍ଗେ ଏଠାକୁ । ଉଦ୍ୟାନ କାର୍ଯ୍ୟ କ୍ଷୀପ୍ର ଗତିରେ ଆଗେଇ ଚାଲିଥାଏ । ଗଜେନ୍ଦ୍ରଙ୍କୁ ପ୍ରଥମେ ମ୍ୟାନେଜର କରି ନିଯୁକ୍ତି ଦେଇଥିଲେ ସେ । ଗଜେନ୍ଦ୍ର ପାଖ ଗ୍ରାମର ଜଣେ ଅର୍ଦ୍ଧବୟସ୍କ ଲୋକଟିଏ । ଭାରି ସଚ୍ଚୋଟ ଓ ନିଷ୍ଠାପର ସେ । ଫାର୍ମଟିର ସମସ୍ତ ଦାୟିତ୍ୱ ପ୍ରାୟ ଛାଡ଼ି ଦେଇଥାନ୍ତି

ଗଜେନ୍ଦ୍ର ହାତରେ । ଫାର୍ମ ହାଉସ୍‌ଟିର କାର୍ଯ୍ୟ ସରି ଆସୁଥାଏ । ହଠାତ୍ ଦିନେ ଗଜେନ୍ଦ୍ର କାନ୍ଦି କାନ୍ଦି ତା ଝିଅକୁ ଧରି ଆସି ସେଠାରେ ପହଞ୍ଚେ । ମୁଣ୍ଡରେ ଓଢ଼ଣା ଟାଣି ଛିଡ଼ା ହୋଇ ଧକେଇ ଧକେଇ କାନ୍ଦୁଥିଲା ସେ । ଗଜେନ୍ଦ୍ରର ବଡ଼ଝିଅ ରୂପାକୁ ତା ଶ୍ୱଶୁର ଘର ଲୋକେ ବାଡ଼େଇ ବାଡ଼େଇ ଘରୁ ତଡ଼ି ଦେଇଛନ୍ତି । ଝିଅଟିର ପିଠିରୁ ଲୁଗା ଟେକି ଦେଖାଏ ଗଜେନ୍ଦ୍ର । ରୋଳା ପଡ଼ି ଯାଇଥାଏ ପିଠି ସାରା । ଯନ୍ତ୍ରଣାରେ ରୂପା ଚିତ୍କାର କରୁଥିଲା । ତାର କାନ୍ଦଣା ଦେଖି ସହିପାରିଲେନି ଭାବନୀଶଙ୍କର । ରୂପାକୁ ଫାର୍ମ ହାଉସ୍ ସଫାସଫି, ରୋଷେଇ ଓ ଅନ୍ୟାନ୍ୟ କାର୍ଯ୍ୟରେ ନିଯୁକ୍ତି ଦେଲେ ସେ । ରୂପା ନିତି ସକାଳୁ ଆସି ସନ୍ଧ୍ୟାରେ ସବୁକାମ ଶେଷ କରି ଘରକୁ ଚାଲିଯାଏ । ରୂପା ତାର ଯାଦୁକରୀ ହାତରେ ଫାର୍ମ ହାଉସ୍‌ର ସମସ୍ତ କାର୍ଯ୍ୟ ନିଖୁଣ ଭାବରେ କରିଯାଏ । ମାଲିକ, ମାଲିକାଣୀ ପ୍ରତି ଅନୁରକ୍ତ ହୋଇ ଧୀରେ ଧୀରେ ବାପ-ଝିଅ ସେମାନଙ୍କର ମନ କିଣି ନିଅନ୍ତି । ଭବାନୀବାବୁ ନଥିଲେ ସେଠାରେ ସେମାନଙ୍କର ହୁକୁମ ଚାଲେ । ଶାଶୁଘର କଥା କହି ଯେବେ କାନ୍ଦି ଉଠେ, ଭବାନୀବାବୁ ତାକୁ ସାନ୍ତ୍ୱନା ଦିଅନ୍ତି, ଆଖିରୁ ଲୁହ ପୋଛି ଦିଅନ୍ତି । ଏତିକିବେଳେ ଯୁବ ଭବାନୀବାବୁଙ୍କ ଲୋଲୁପ ଦୃଷ୍ଟି ରୂପାର ଶରୀରରେ ବୁଲିଯାଏ । କ୍ରମେ ରୂପାର ରୂପ ଲାବଣ୍ୟ ଆକୃଷ୍ଟ କରେ ଭବାନୀ ବାବୁଙ୍କୁ । ରଙ୍ଗୀନ ପ୍ରଜାପତି ପରି ଘୁରି ବୁଲେ ତାଙ୍କ ଚାରିପଟେ ସେ । ଯୌବନ ଖୁନ୍ଦି ହୋଇ ଯାଇଥାଏ ଶାମଳାଙ୍ଗୀ ରୂପାର ଦେହରେ । ରୂପାର ମୋହରେ ସେ ମୋହ ଗ୍ରସ୍ତ ହୋଇପଡ଼ନ୍ତି । ସ୍ୱାମୀ ସୋହାଗ ବଞ୍ଚିତା ରୂପା ଟିକିଏ ଆଦର ଯତ୍ନ ପାଇ ନିଜକୁ ସମର୍ପି ଦିଏ ଭବାନବାବୁଙ୍କ ପାଖରେ । ସେଠାରେ ଉର୍ମିର ପ୍ରେମ, ଭଲପାଇବା ସବୁ କିଛି ହାର ମାନିଯାଏ । ସ୍ମୃତିର ଆକର୍ଷଣ, ବାବା, ବାବା ଡାକ ଠାରୁ ଦୂରେଇ ହୋଇ ଯାଆନ୍ତି ସେ । ମାସ ମାସ ଧରି ଘରକୁ ଯିବା ଆଉ ସମ୍ଭବ ହୁଏନି ତାଙ୍କ ପକ୍ଷରେ । ସବୁକିଛି ଧୂଆଁଳିଆ ହୋଇ ଉଠେ ଆଖି ସାମ୍ନାରେ ତାଙ୍କର ।

ସେଦିନ ଉର୍ମିର ଫୋନ୍ ଆସିଥାଏ, ସ୍ମୃତି ଖୁବ୍ ଅସୁସ୍ଥ । ବାପାଙ୍କୁ ଦେଖିବ ବୋଲି ବାଉଳି ଚାଉଳି ହେଉଛି । ଅସୁସ୍ଥତା ବଢ଼ିଯିବାରୁ ତାକୁ ନେଇ ଉର୍ମି ଭର୍ତ୍ତି କରି ଦେଇଛି ଡାକ୍ତରଖାନାରେ । ଗଜେନ୍ଦ୍ର ଫୋନ୍ ଧରିଥିଲା । କାନ୍ଦି କାନ୍ଦି ସ୍ମୃତି ଅବସ୍ଥା ଦିନକୁ ଦିନ ଖରାପ ଆଡ଼କୁ ଗତି କରୁଛି ବୋଲି ଜଣାଇଥିଲା ଉର୍ମି । ଏକମାତ୍ର ଅତି ଆଦରର ଝିଅ ସ୍ମୃତିର ଅସୁସ୍ଥତା ଲେଶମାତ୍ର ପ୍ରଭାବ ପକାଇ ନଥିଲା ଭବାନୀ ଶଙ୍କରଙ୍କ ଉପରେ । ଭବାନୀବାବୁ ଟୁର୍‌ରେ ଅଛନ୍ତି ବୋଲି ଖବର ଦେଇଥିଲା ଗଜେନ୍ଦ୍ର । ଉର୍ମି ଏକୁଟିଆ ବହୁତ ଭାଙ୍ଗି ପଡ଼ିଥାଏ ସେଦିନ । ହସ୍‌ପିଟାଲ୍‌ର ଆଇ.ସି.ୟୁ.ରେ ସାତଦିନ ଯାଏ ମୃତ୍ୟୁ ସହିତ ସଂଗ୍ରାମ କରି ବିଦାୟ ନିଏ ସ୍ମୃତି । ବଡ଼ ବଡ଼ ଡାକ୍ତରମାନଙ୍କୁ ବାହାରୁ ଡକାଇ ସ୍ମୃତିର ଚିକିତ୍ସା ଚାଲିଥାଏ । କିନ୍ତୁ ନିମୋନିଆ ଆକ୍ରାନ୍ତ ସ୍ମୃତିକୁ

ରକ୍ଷା କରିବା ସମ୍ଭବ ହୋଇ ପାରି ନଥିଲା । ଡାକ୍ତର ଉର୍ମିଙ୍କ ଜୀବନରେ ଏଭଳି ଏକ ଦୁର୍ଘଟଣା ଯେ ଘଟିଯିବ, ସେ ଭାବି ନଥିଲେ । ସ୍ମୃତିକୁ ହରାଇ ସେ ମୂକ ପାଲଟି ଯାଇଥିଲେ । ସେ ବିଶ୍ୱାସ କରିପାରି ନଥିଲେ ସ୍ମୃତି ତାଙ୍କର ନାହିଁ । ସ୍ମୃତିର ମାମୁଁ ଯେବେ ସ୍ମୃତିକୁ ଏକ ଧଳାକନାରେ ଗୁଡ଼ାଇ ମଶାଣିକୁ ନେଇଯିବାକୁ ବାହାରିଲେ, ଉର୍ମି ହଠାତ୍ ତାଙ୍କ ହାତରୁ ସ୍ମୃତିର ମରଶରୀରକୁ ଛଡ଼ାଇ ନେଇ ବୁକୁରେ ଚାପି ଧରିଥିଲେ ଓ ତା'ର ଶରୀରରେ ଆଙ୍କି ଦେଇଥିଲେ ସହସ୍ର ଚୁମ୍ବନ । ଟପ୍ ଟପ୍ ହୋଇ ଆଖିର ଲୁହରେ ସେଦିନ ଭିଜାଇ ଦେଇଥିଲେ ସ୍ମୃତିର ଶରୀରକୁ । ସ୍ମୃତିର ମୃତ୍ୟୁ ଖବର ପାଇ ସେଠାରେ ଆସି ପହଞ୍ଚିଥିଲେ ଭବାନୀବାବୁ । ଭବାନୀବାବୁଙ୍କୁ ଦେଖି ପାଗଳ ପ୍ରାୟ ହୋଇ ଉଠିଥିଲା ଉର୍ମି । ସ୍ମୃତିର ଶରୀରକୁ ସ୍ପର୍ଶ କରିବାକୁ ଦେଇ ନଥିଲେ ସେ ।

ସ୍ମୃତିର ସ୍ମୃତିରେ ଗଢ଼ି ଉଠିଥିଲା, 'ସ୍ମୃତି ମେମୋରିଆଲ୍ ମେଡିକାଲ' । ଗୋଟିଏ କଦମ୍ବର ବିନାଶରେ ସେଠି ଫୁଟୁଥିଲା ଶତ କଦମ୍ବ । ତାଙ୍କର ନିଜର ସ୍ମୃତିର ହସ ସିନା ଲିଭି ଯାଇଛି, ମାତ୍ର ଲକ୍ଷ ଲକ୍ଷ ସ୍ମୃତିର ହସରେ ନିଜକୁ ଭୁଲାଇ ଦେଇଛନ୍ତି ଡାକ୍ତର ଉର୍ମି । ଭୁଲି ଯିବାକୁ ଚାହାନ୍ତି ଅତୀତଟାକୁ ।

ଭବାନୀଶଙ୍କରବାବୁ ଥକି ପଡ଼ିଛନ୍ତି । ତାଙ୍କ ଜୀବନ ଆଜି ବ୍ୟର୍ଥତାରେ ପରିଣତ ହୋଇଛି । ଏ ଫାର୍ମ, ଫାର୍ମ ହାଉସ୍ ତାଙ୍କୁ ଖାଇ ଗୋଡ଼ାଇଛି । ସେ ଯେଉଁ ଭୁଲ କରିଛନ୍ତି, ତା'ର ପ୍ରାୟଶ୍ଚିତ୍ତ ନାହିଁ । ସ୍ମୃତିର ମୃତ୍ୟୁ ପାଇଁ ସେ ନିଜେ ଦାୟୀ, ତାଙ୍କ ପ୍ରାଣର ଧନକୁ ସେ ନିଜେ ତଣ୍ଟିଚିପି ମାରି ଦେଇଛନ୍ତି । ତାଙ୍କ ପ୍ରେମ, ଭଲ ପାଇବାର ସଲିଳ ସମାଧି ଘଟିଛି । ତାଙ୍କର ସପ୍ତରଙ୍ଗର ଉର୍ମି ଆଜି ନୀରବ ନିଶ୍ଚଳ ହୋଇ ଯାଇଛି ସବୁଦିନ ପାଇଁ ।



# ଅସ୍ତରବି

ଦରଭଙ୍ଗା ଘରଟିର ମାଟି କାନ୍ଥକୁ ଆଉଜି ବସିଥାଏ ଝୁମା । ଦିନମାନର ହାଡ଼ଭଙ୍ଗା ପରିଶ୍ରମ ପରେ କ୍ଳାନ୍ତ ଅବଶ ଦେହଟି ତା'ର ବିଶ୍ରାମ ଚାହେଁ । ସାଗର ବେଳାର ପରିତ୍ୟକ୍ତ ଶାମୁକାଟିଏ, ସ୍ୱପ୍ନଶୂନ୍ୟ ଜୀବନରେ ନା ଅଛି ଚିନ୍ତା ନା ଭାବନା । ମନ ମୟୂରୀ ତା'ର ଏଇ ଭଙ୍ଗା ଦଦରା ଚାରି କାନ୍ଥର ପରିଧି ମଧ୍ୟରେ ସୀମାବଦ୍ଧ ହୋଇ ଯାଇଛି । ଢୁଳେଇ ପଡ଼ିଥିବା ବିବଶ ଶରୀରଟି ସତେଜ ହୋଇ ଉଠିଲା ରାଜନ୍‌ର ଡାକରେ ।

ଝୁମା ନାନୀ, ଝୁମାନାନୀ ଡାକି ଘର ଭିତରକୁ ପଶି ଆସିଲା ସେ ।

କିରେ କଥା କ'ଣ ? ଏଥରକ କୁଆଡ଼େ ବୁଲି ଯାଉଛରେ ?

ରାଜନ୍ ସେଇ ଗାଁର ଦାସ ଘରର ପୁଅ । ଭାରି ଭଲ ପିଲାଟିଏ । ତା'ର ବ୍ୟବହାରରେ ସମସ୍ତେ ମୁଗ୍ଧ ହୋଇ ଯାଆନ୍ତି । ପାଠ ସିନା ପଢ଼ିଛି, ହେଲେ ଚାକିରୀ କାହିଁ ? ଭଲ ପଢୁଥିଲା ବୋଲି ପିଲାବେଳୁ ସମସ୍ତଙ୍କର ଆଦର ପାଇ ଆସିଛି । ଗାଁ କଲେଜରୁ ବି. ଏ. ପାସ୍ କରିଛି । ଅଧିକ ପଢ଼ିବାକୁ ବାହାରକୁ ପଠାଇବା ପାଇଁ ବାପା ପାଖରେ ପଇସା ନଥିଲା । ଯାହା ହେଉ ପିଲାଟି ଭଲ କାମରେ ହାତ ଦେଇଛି । ବେଶ୍ ଦି ପଇସା ରୋଜଗାର କରି ତା ବୁଢ଼ା ବାପାର ସାହାରା ହୋଇଛି । ସକାଳୁ ସକାଳୁ ଉଠି ଯାତ୍ରୀ ଗୋଟାଇବା ତାର ନିତି ଦିନିଆ କାମ । ବୁଢ଼ାବୁଢ଼ୀ ଠାରୁ ପିଲାଛୁଆ ଯାକେ ଏ ଖଣ୍ଡ ମଣ୍ଡଳରେ ସବୁରି ପାଖରେ ସେ ବେଶ୍ ପରିଚିତ ।

ତୀର୍ଥ ଦର୍ଶନ । ଆକୁମାରୀକା ଠାରୁ ହିମାଳୟ ମଧ୍ୟରେ ଯେତେ ଯେତେ ତୀର୍ଥ କେନ୍ଦ୍ର ଭ୍ରମଣ କରାଇ ଦର୍ଶନ କରାଇବା ତାର କାମ । ବସ୍ ପାଇଁ ଯାତ୍ରୀ କଣ୍ଟ୍ରାକ୍ଟ କରିବା ପାଇଁ ଗାଁ ଗାଁ ଘୁରି ବୁଲେ ସେ ।

ଝୁମା ନାନୀର ଇଙ୍ଗିତ ସେ ବୁଝି ପାରିଲା ।

ହଁ, ଝୁମା ନାନୀ, ଖାସ୍ ସେଇଥି ପାଇଁ, ତୋ ପାଖକୁ ଆସିଛି । ଏଥରକ ପରା ଉତ୍ତର ଭାରତ ଯାଉଛୁ, ତୁ ନିଶ୍ଚେ ଯିବୁ । ମୁଣ୍ଡର ବାଳପାଚି ଧଳା ହେବାକୁ ଗଲାଣି ।

ତୋର କିଛି କଥା ଏଥରକ ଶୁଣିବି ନାହିଁ । ତୁ ଅଲ୍‌ବତ୍ ଯିବୁ, ଯିବୁ । ତୋ ପାଇଁ ମୁଁ କନ୍‌ସେସନ୍ ଟିକେଟ କରି ଦେବି ।

ଧେତ୍, ପାଗଳଟା, ମୁଁ ଏକୁଟିଆ ମଣିଷ । କୁଆଡ଼େ ଯିବିରେ ।

ଦେଖ୍ ନାନୀ, ତୁ ମନା କରିବୁନି । ମୁଁ ତୋ ନାଁରେ ରିଜର୍ଭେସନ୍ କରି ଦେଇଛି ପରା । ହରିଦ୍ୱାର, ମଥୁରା, ବାରାଣାସୀ, ବୃନ୍ଦାବନ କେତେ ବଢ଼ିଆ ବଢ଼ିଆ ଜାଗା । ଭାରତର ବଡ଼ ବଡ଼ ତୀର୍ଥସ୍ଥାନ, ଦର୍ଶନ କଲେ ମୁକ୍ତି ପାଇବୁ । ତୋର ତ ଖାଲି କାମ କାମ । ସବୁଦିନେ ତ କାମ ଲାଗିଛି । ତୋର ବା ଆଉ କିଏ ଅଛି ଯେ । ଏବେ ହାତଗୋଡ଼ ଚଳୁଛି । ଆଉ ଆଗକୁ କ'ଣ ତୁ ଯାଇପାରିବୁ ?

ଅନ୍ୟମନସ୍କ ହୋଇ ପଡ଼ିଲା ଝୁମା ।

ଝୁମାର ବି କୁଆଁରୀ ମନଟି ଥିଲା ।

ସେ ବି କେତେ ସ୍ୱପ୍ନ ସଜାଇ ବସିଥିଲା କାହାରି ବାଟକୁ ଚାହିଁ । ଏକ ଛୋଟ ପରିବାରରେ ଅନୂଢ଼ା ଯୁବତୀଟିଏ । ବାପା, ମା, ଭାଇ, ଭଉଣୀ ତା'ର ବି ସମସ୍ତେ ଥିଲେ । ସଂସାରଟି ତାର ଥିଲା ଅତି ଆନନ୍ଦମୟ । ସୁଖ ଦୁଃଖର କାହାଣୀ, ସ୍ନେହ ପ୍ରୀତିର ପାର୍ବଣ ଝରୁଥିଲା । ସମୟର ସ୍ରୋତରେ କୁଆଡ଼େ ଭାସିଗଲା ସବୁକିଛି ।

ଜେଲରୁ ମୁକୁଳି ଯେବେ ଫାଟକ ବାହାରେ ପାଦ ଦିଏ, ସେ ଦିନ ତାକୁ ସଂଖୋଳି ବାକୁ କେହି ନଥିଲେ । ଜମିଦାର ବଳବନ୍ତ ରାୟର ଅତ୍ୟାଚାର ସହି ନ ପାରି ତାର ବାପା, ମା, ପରିବାର ଗାଁ ଛାଡ଼ି ଚାଲିଗଲେ । ଜମିଦାରର କ୍ରୋଧରେ ତାର ସଂସାର ପୋଡ଼ି ଛାରଖାର ହୋଇ ଯାଇଛି । ଦୀର୍ଘ ଚଉଦ ବର୍ଷର ସଶ୍ରମ କାରାଦଣ୍ଡ ପରେ ମୁକ୍ତି ପାଇ ଜେଲରୁ ଫେରିଆସେ ଝୁମା । ଜେଲର ଲୌହ ପାଚେରୀର ନିବୁଜ କକ୍ଷରେ ତା'ର ଯୌବନର ପ୍ରତିଟି ମୁହୂର୍ତ୍ତ କଟେଇଛି । ପଳ ପଳ କରି ହତ୍ୟା କରିଛି ମନ ମଧ୍ୟରେ ଡେଣା ମେଲିଥିବା ପ୍ରଜାପତିଟିକୁ ।

ବିଚିତ୍ର ଏ ଦେଶର ଆଇନ୍‌କାନୁନ୍ ।

ଝୁମା ପରି ଗୋଟିଏ ପବିତ୍ର କଳିକାର ମନର ଅବସ୍ଥାକୁ ଯେବେ ବୁଝି ପାରେନା, ତେବେ ସେ କାନୁନ୍ କେଡ଼େ ଅସହାୟ । ସେ ସିନା ନିଜର ଇଜ୍ଜତ୍‌କୁ ପଦାରେ ପକାଇ ପାରିଲାନି । ମୁହଁ ଖୋଲି କାଠ ଘର ଭିତରେ କହି ପାରିଲାନି, କିନ୍ତୁ ଆଇନ୍ କ'ଣ ଅବଳା ନାରୀ ଠାରୁ ଆହୁରି ଦୁର୍ବଳ ?

ସେଦିନ କାଠଗଡ଼ା ଭିତରେ ଠିଆ ହୋଇ ମୂକ ପାଲଟି ଯାଇଥିଲା ଝୁମା । ଓକିଲ ଜେରା କରି ଚାଲିଥାନ୍ତି । ସତର ବର୍ଷର କିଶୋରୀ ଝୁମାର ପାଟିରୁ ଶବ୍ଦଟିଏ ବି ବାହାରି ନଥିଲା । ମୁହଁ ରକ୍ତବର୍ଣ୍ଣ, କପାଳରେ ସ୍ୱେଦବିନ୍ଦୁ । ଶେଷରେ ଅଚେତ ହୋଇ କାଠଗଡ଼ା ଭିତରେ ଟଳି ପଡ଼ିଥିଲା ସେ । କିନ୍ତୁ ଆଇନ୍ ଅଟକି ଯାଇ ନଥିଲା ।

ଜମିଦାର ରାୟ ବାବୁଙ୍କର ସାନପୁତ୍ରକୁ ହତ୍ୟା କରିଥିବା ଅଭିଯୋଗରେ ଝୁମାକୁ ଚଉଦବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା ।

ସେଦିନର ସେଇ କାଳ ରାତ୍ରିର ଦୃଶ୍ୟ ଆଜି ତା'ର ଆଖି ଆଗରେ ଝଲସି ଉଠେ । ବାପା, ମା ଓ ତାର ସାନ ଭଉଣୀ ମାମୁଁଙ୍କ ଘରକୁ ଯାଇଥାନ୍ତି । ଘରେ ସେ ଓ ସାନ ଭାଇ ରବି ।

ଆଷାଢ଼ର ବର୍ଷର ମୁଖର ସନ୍ଧ୍ୟା । ବିଜୁଳି ଓ ଘଡ଼ଘଡ଼ି ସହିତ ଅସରାକୁ ଅସରା ବର୍ଷା, ଥମିବାର ନାଁ ନାହିଁ । ରାତ୍ରି ବଢ଼ି ଚାଲିଥାଏ । ଦାଣ୍ଡ କବାଟ ଲଗାଇ ଦେଇ ଝୁମା ଚୁଲି ମୁଣ୍ଡରେ ବସି ରୋଷେଇ ଆରମ୍ଭ କରେ । ରବି ଜୋର ଜୋର ପାଟିରେ ବର୍ଣ୍ଣବୋଧର ଗୀତ ବୋଲୁଥାଏ । ''କି ସୁନ୍ଦର ଆହା କି ଆନନ୍ଦମୟ .....'', ''ଥିଲେ ଥାଉ ପଛେ ଗୁଣ ହଜାର ....'' ଇତ୍ୟାଦି, ଇତ୍ୟାଦି । ବିଜୁଳି ଘଡ଼ଘଡ଼ି ସହ ଦଲକାଏ ପବନରେ ହଠାତ୍ ଲଣ୍ଠନଟି ଲିଭି ଗଲା । ରବି ଡରରେ ଚିତ୍କାର କରି ନାନୀକୁ ଯାଇ କୁଣ୍ଢାଇ ପକାଇଲା । ଚାରିଆଡ଼େ ଅନ୍ଧକାର ହିଁ ଅନ୍ଧକାର ।

ଝୁମା ପୁଣି ଲଣ୍ଠନଟି ଲଗାଇ ରବିକୁ ଗାଳି ଦେବାକୁ ଲାଗିଲା, ଡରକୁଳା କେଉଁଠୁକାର । ହଠାତ୍ ଏତିକି ବେଳେ କବାଟରେ ଠକ୍ ଠକ୍ ଶବ୍ଦ ଶୁଭିଲା । ଝୁମା ଚୁଲି ମୁଣ୍ଡରେ ରବିକୁ ଛାଡ଼ି ଲଣ୍ଠନଟି ନେଇ ଦାଣ୍ଡ କବାଟ ପାଖକୁ ଯାଇ ପଚାରିଲା, କିଏ କ୍ଷୀରଦାଦା କି ? ବାହାରୁ କେବଳ ହୁଁ ବୋଲି ଶୁଣାଗଲା । କ୍ଷୀର ଦାଦା ବୋଧହୁଏ ଖବର ଅନ୍ତର ବୁଝିବାକୁ ଆସିଛନ୍ତି ଭାବି କବାଟ ଫିଟାଇ ଦେଲା ଝୁମା । କିଛି ବୁଝିବା ଆଗରୁ କିଏ ଦୁଇ ତିନିଜଣ ତା ଉପରକୁ ଝାମ୍ପି ପଡ଼ିଲେ । କିଏ ? କିଏ ତୁମ୍ଭେମାନେ ବୋଲି ପାଟି କରି ଉଠିଲା ସେ । ତା ହାତରୁ ଲଣ୍ଠନଟି ଛିଟିକି ପଡ଼ି ଠଣ୍ ଠଣ୍ କରି କାଚ ଭାଙ୍ଗି ଗଲା । ଅନ୍ଧାରରେ କିଛି ଦିଶୁ ନଥାଏ । ଝୁମାର ପାଟି ଆଉ ଶୁଣାଗଲା ନାହିଁ, ଖାଲି ଗଁ ଗଁ ଶବ୍ଦ । କେବଳ ରବି ଛଡ଼ା ବାହାରର ଆଉ କେହି ତାର ଆର୍ତ୍ତ ଚିତ୍କାର ଶୁଣି ପାରିଲେନି । ଭୀତତ୍ରସ୍ତ ରବି କ'ଣ କରିବ କିଛି ଭାବି ପାରିଲାନି । ମାତ୍ର ବାର ବର୍ଷର ଅବୋଧ ବାଳକଟିଏ । ଝୁମା ନାନୀ ତା'ର ଘର ଭିତରେ ଛାଟିପିଟି ହେଉଛି । ସେମାନେ ତା ପାଟିରେ ଲୁଗା ବିଣ୍ଡି ମାରି ଦେଇଛନ୍ତି । ଘନ ଘନ ବିଜୁଳି ଆଲୁଅରେ କିଛି ଅଂଶ ଦେଖା ଯାଉଥାଏ ରବିକୁ । ଝୁମା ନାନୀକୁ କିଏ ଜଣେ ମାଡ଼ି ବସିଛି । ଆଗପଛ କିଛି ନ ଭାବି ରୋଷେଇ ଘର କୋଣରେ ଥୁଆ ହୋଇଥିବା ଧାରୁଆ କଟୁରୀଟିକୁ ଧରି ଆଗେଇ ଆସିଲା ସେଇ ଆଡ଼କୁ । ଜୋର୍‌ରେ କଟୁରୀଟିକୁ ମୁଠାଇ ଧରି ଲୋକଟିର ପିଠିରେ ଚୋଟଟିଏ ବସାଇ ଦେଲା ସେ । ଚିତ୍କାର କରି ଛିଟିକି ପଡ଼ିଲା ଲୋକଟି ଖଣ୍ଡେ ଦୂରକୁ । କ'ଣ ହେଲା ବୋଲି ଝୁମା ନିଜକୁ ସମ୍ଭାଳି ନେଇ ଛିଡ଼ା-ହୋଇ ପଡ଼ିଲା । ଅନ୍ୟ ଦୁଇଜଣ ଭୟରେ ଅନ୍ଧକାରରେ ଦଉଡ଼ି

ପଳାଇଲେ । ଘରର ଗୋଟିଏ କୋଣରେ ପଡ଼ି ଲୋକଟି ଛଟ ପଟ ହେଉଥାଏ । ରକ୍ତରେ ଜୁଡୁ ବୁଡୁ ଶରୀରଟି କ୍ରମେ ଶିଥିଳ ହୋଇ ଆସୁଥାଏ । ଝୁମା ବିଜୁଳି ଆଲୁଅରେ ସବୁ କିଛି ଅନୁମାନ କରିନେଲା । ରବିର ଆଖିରେ ଅଗ୍ନି ସ୍ଫୁଲିଙ୍ଗ । ଝୁମା, ରବିକୁ କୁଣ୍ଢାଇ ଧରି କାନ୍ଦି ଉଠିଲା । ଲୋକଟି କିଏ, ଅନ୍ଧାରରେ ଚିହ୍ନିବାର ଉପାୟ ନାହିଁ । ଦୁର୍ବୃତ୍ତର ଆକ୍ରମଣରେ ଝୁମାର ଫ୍ରକ୍‌ଟି ଛିଣ୍ଡି ଓହଳି ପଡ଼ିଥାଏ । ନଖ, ଦାନ୍ତର ଆକ୍ରମଣରେ ଠାଏଁ ଠାଏଁ ରକ୍ତ ଜମି ଯାଇଥାଏ । କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ଉଠିଲା ସେ । ଭାଇ, ଭଉଣୀଙ୍କ କାନ୍ଦଣା ସ୍ୱର ବାହାରର କାହାକୁ ଶୁଣାଗଲା ନାହିଁ ।

ଇତି ମଧ୍ୟରେ କିଛି ସମୟ ଅତିକ୍ରାନ୍ତ ହୋଇଗଲାଣି । ପୋଲିସ୍ ଗାଡ଼ିର ସାଇରନ୍ ଶବ୍ଦ ଶୁଣାଗଲା । ହଠାତ୍ କ'ଣ ଭାବି କଟୁରୀଟିକୁ ଉଠାଇ ଆଣି ଝୁମା ଉଠି ଛିଡ଼ା ହୋଇ ପଡ଼ିଲା । ରବିକୁ ପୋଲିସ ଆଗରେ ପାଟି ଫିଟାଇବାକୁ ମନା କରିଦେଲା ସେ । ଆଲୁଳାୟିତ କେଶଗୁଚ୍ଛ, ରକ୍ତବର୍ଣ୍ଣର ଆଖିର ଡୋଳା, ଏକ ଭୟଙ୍କର ମୂର୍ତ୍ତି ଧରି ଛିଡ଼ା ହୋଇଥାଏ ଝୁମା । ହାତରେ ରକ୍ତ ବୋଳା କଟୁରୀ । ଝୁମାନାନୀକୁ କୁଣ୍ଢାଇ ଧରି ଭୟରେ କାନ୍ଦୁଥାଏ ରବି ।

ଏତେ ରାତିରେ ପୋଲିସ୍ ଗାଡ଼ିର ଶବ୍ଦ ଶୁଣି ପାଖ ପଡ଼ିଶା ସମସ୍ତେ ଘରୁ ବାହାରି ଆସିଲେ, କାହାର କ'ଣ ହୋଇଛି ଜାଣିବା ପାଇଁ । ଗାଡ଼ିର ଲାଇଟ୍ ଚାରିଆଡ଼େ ବିଛେଇ ହୋଇ ପଡ଼ିଲା । ବଜ୍ରାଘାତରେ କିଛି ଅଘଟଣ ଘଟିଛି ନା ଚୋର ଧରାପଡ଼ିଛି, ଏମିତି କେତେ ପ୍ରଶ୍ନ ଉଙ୍କିମାରୁଥାଏ । ସମସ୍ତେ ମୁହଁ ଚାହାଁ ଚାହିଁ ହେଲେ ।

ଗାଡ଼ି ଆସି ଛିଡ଼ା ହେଲା ଝୁମାର ଘର ପାଖରେ । ଇନିସ୍‌ପେକ୍ଟର ଓ ତାଙ୍କ ସହିତ ଚାରିଜଣ କନେଷ୍ଟବଳ ଖପ୍‌ଖାପ୍ ଡେଇଁ ପଡ଼ିଲେ ଗାଡ଼ିରୁ ଓ ଝୁମାର ଘର ଭିତରକୁ ପଶିଗଲେ । କ୍ଷୀର ଦାଦା କ'ଣ ହୋଇଛି ବୋଲି ଭିତରକୁ ପଶିବାକୁ ଯାଆନ୍ତେ, କନେଷ୍ଟବଳଟି ତାଙ୍କୁ ଅଟକାଇ ଦେଲା ।

''ମର୍ଡ଼ର୍ କେଶ୍, କେହି ଭିତରକୁ ଯାଇପାରିବେନି ।'' ସମସ୍ତଙ୍କ ମୁହଁରେ ଆତଙ୍କର ଛାୟା ଖେଳିଗଲା । କିଏ କାହାକୁ ମର୍ଡ଼ର୍ କରିଛି ? ଝୁମାକୁ କିଏ ମାରି ଦେଇଛି ? ଲୋକଙ୍କର ଭିଡ଼ ଆସ୍ତେ ଆସ୍ତେ ଜମିବାକୁ ଲାଗିଲା । ଜମିଦାର ରାୟବାବୁ ଓ ତାଙ୍କ ପରିବାରର ଅନ୍ୟମାନେ ଭିଡ଼ ଆଡ଼େଇ ଭିତରକୁ ପଶିଲେ । ରାୟବାବୁଙ୍କ ସ୍ତ୍ରୀ ଧକେଇ ଧକେଇ କାନ୍ଦୁଥିଲେ ।

ଇନିସ୍‌ପେକ୍ଟର ନିଜେ ଆସିଛନ୍ତି, ଇନିଭେଷ୍ଟିଗେସନ୍‌ରେ । ଝୁମା ଓ ରବି ପାଟିରୁ ପଦଟିଏ କଥା ବାହାରିଲା ନାହିଁ । ଶବ ପୋଷ୍ଟମର୍ଟମ୍ ହେବ, କନେଷ୍ଟବଳଟିକୁ ଜଗେଇ ଦେଇ ବଡ଼ ବାବୁ ଝୁମାକୁ ନେଇ ଚାଲିଗଲେ ଥାନା ଅଭିମୁଖେ । ରାୟବାବୁଙ୍କ ସାନ ପୁଅକୁ ଜୀବନରୁ ମାରି ଦେଇଛି ଝୁମା । ପଛରୁ ରବି ଚିତ୍କାର କରୁଥିଲା ଝୁମା ନାନୀ,

ଝୁମା ନାନୀ । କ୍ଷୀର ଦାଦା ତାକୁ କୁଣ୍ଢାଇ ଧରି କାନ୍ଦୁଥିଲେ । ଗାଁ ଲୋକେ କାବା ହୋଇ ଅନେଇ ଥାଆନ୍ତି । ଜମିଦାରଙ୍କ ଉପରକୁ ଆଙ୍ଗୁଳି ଉଠେଇବ କିଏ ?

× × ×

ରାଜନ୍‌ର ଡାକରେ ଚମକି ପଡ଼ିଲା ଝୁମା । ତୁମର କ'ଣ ହୋଇଛି କି ନାନୀ, ମୁଁ ଏତେ କଥା ଗପି ଚାଲିଛି, ଅଥଚ ତୁମେ ..... ତୁମର ଦେହ ଭଲ ଅଛି ତ ?

ନାହିଁ, ନାହିଁ କିଛି ନାହିଁ । ଇଏ ନିଆଁଲଗା ଦେହର କ'ଣ ହେବ ଯେ ?

ଆଚ୍ଛା, ତୁ କହୁଥିଲୁ ପରା ତୋର ଭାରତ ଦର୍ଶନ କଥା । ଆଉ ମୋର ଯିବା କଥା କହୁଛୁ ଯେ, କେମିତି ଯିବି କହିଲୁ, କାଳେ ରବିଟା କେତେବେଳେ ଆସି ପହଞ୍ଚିଯିବ । ମୋତେ ନ ଦେଖି ପୁଣି ଯଦି କୁଆଡ଼େ ଚାଲିଯିବ । ରାଜନ୍‌କୁ ଦେଖିଲେ, ରବି କଥା ତା'ର ମନେ ପଡ଼େ । ରାଜନ୍‌ର ସାଙ୍ଗ ଥିଲା ରବି । ସେମାନେ ଗାଁ ସ୍କୁଲରେ ଏକାଠି ପଢୁଥିଲେ । ସେ ବି ଏଇ ରାଜନ୍ ପରି ବଡ଼ ହୋଇଯିବଣି । ଯେଉଁଠି ବି ଥାଉ, ଠାକୁରେ ତାକୁ ଭଲରେ ରଖି ଥାଆନ୍ତୁ । ଆଖିରୁ ଲୁହ ଦୁଇଧାର ପଡ଼ିଲା ତା'ର ।

ଝୁମା ନାନୀ ଆଖିରୁ ଲୁହ ପୋଛି ଦେଲା ରାଜନ୍, ସେ ବୁଝି ପାରିଲା ତା ମନର ଅବସ୍ଥା । ରାଜନ୍ ବି ମର୍ମାହତ ହୋଇ ପଡ଼ିଲା । ଦୀର୍ଘଦିନ ଧରି ଅପେକ୍ଷା କରି ବସିଛି ଝୁମାନାନୀ, ଦିନେ ନା ଦିନେ ରବି ନିଶ୍ଚେ ଫେରି ଆସିବ । ତାର ବଞ୍ଚିବାର ଏକମାତ୍ର ଭରସା ସେ । ବୟସ ଆସି ଚାଳିଶି ପାଖାପାଖି ହେଲାଣି । ମୁଣ୍ଡ ବାଳ ସବୁ ପାଚି ଧଳା ପଡ଼ି ଯାଇଛି । ଆଖି ଦୁଇଟି କୋଟରଗତ । ରାଜନ୍ ଯାଉ ଯାଉ ପୁଣି ଦୁଆର ମୁହଁରୁ ଫେରି ଆସିଲା । ଝୁମାନାନୀକୁ କିଏ ଜଣେ ଭଦ୍ରଲୋକ ଖୋଜୁଛନ୍ତି । ଝୁମାକୁ ଖବର ଦେଇ ମସିଣାଟିଏ ଆଣି ଦାଣ୍ଡ ଦୁଆରେ ପାରି ଦେଲା ସେ । ଭଦ୍ରଲୋକ ଜଣକ ସ୍ଥାନୀୟ ତହସିଲ୍‌ଦାର । ଗାଁ ମୁଣ୍ଡରେ ଗାଡ଼ି ରଖି ଖୋଜି ଖୋଜି ଆସି ପହଞ୍ଚିଛନ୍ତି ଝୁମାନାନୀ ଘରେ ଖବର ପହଞ୍ଚାଇବା ପାଇଁ । ରବୀନ୍ଦ୍ର ପରିଡ଼ା, ନିଶିକାନ୍ତ ପରିଡ଼ାଙ୍କ ପୁଅ କୁସୁମ ପୁର ଗାଁର, ଫେରି ଆସିଛନ୍ତି ସୀମାନ୍ତରୁ । ସରକାର ପଠାଇଛନ୍ତି ତାଙ୍କ ନିଜ ଲୋକ ଯାଇ ତାଙ୍କୁ ନେଇ ଆସିବେ । ଏଣୁଁ ଅଫିସର୍ ନିଜେ ଆସିଛନ୍ତି ଝୁମାଙ୍କୁ ନେବା ପାଇଁ ।

ରବି କଥା ଶୁଣୁ ଶୁଣୁ ଆନନ୍ଦାଶ୍ରୁ ବୋହିଗଲା ଝୁମାନାନୀର । ଦୀର୍ଘ ଦିନର ପ୍ରତୀକ୍ଷାର ଅବସାନ ଘଟିଛି । ଅଭିମାନରେ ଭରିଗଲା ତାର ମନ । ଓଢ଼ଣା ଟାଣି ଦୁଆର ମୁହଁରେ ଛିଡ଼ା ହେଲା ସେ । ଅଫିସରଙ୍କ ଉଦ୍ଦେଶ୍ୟରେ କହିଲା - ଏତେ ଦିନକେ ତା'ର ଏଇ ଅଭାଗିନୀ ଝୁମାନାନୀ କଥା ମନେ ପଡ଼ିଲା । ରାଜନ୍ ତୁ କହିଦେ, ''ମୁଁ ମାଇପି ଲୋକଟା ଘର ଛାଡ଼ି ଏତେ ଦୂର ଯିବି ତାକୁ ଆଣିବା ପାଇଁ । ସେ ତ

ପୁଅ ପିଲାଟା, ସେ କ'ଣ ଆସି ପାରିବନି? ଓଃ ବୁଝିଲି, ଏତେ ଦିନ ଧରି ଲୁଚି ରହିଥିବାରୁ ମୋତେ ସେ ତା'ର ମୁହଁ ଦେଖାଇ ପାରିବ ନାହିଁ। ଆପଣ ତାକୁ କହିବେ, ତା ପ୍ରତି ମୋର ରାଗ, ରୋଷ କିଛି ବି ନାହିଁ, ସେ ତା ଘରକୁ, ତା ଝୁମାନାନୀ ପାଖକୁ ଫେରି ଆସୁ, ବାସ୍ ।'' ତହସିଲ୍‌ଦାର ବାବୁ କେମିତି ବା କଥାଟା ପ୍ରକାଶ କରିବେ ବୁଝି ପାରିଲେ ନାହିଁ । ରାଜନକୁ ସବୁ କଥା ବୁଝାଇ କହିଲେ, ରବୀନ୍ଦ୍ର ଶହୀଦ ସିପାହୀ । ସେ ଦେଶ ପାଇଁ ଜୀବନ ଦେଇଛି, ଶତ୍ରୁର ଗୁଳିରେ ସେ ଶହୀଦ ହୋଇ ଯାଇଛି । ମାଟି ମାଆ ପାଇଁ ଜୀବନ ଦେଇଛି ।

ବଞ୍ଚିବାର ଏକମାତ୍ର ଆଶା ନେଇ ରବିର ଫେରିବା ବାଟକୁ ଚାହିଁ ରହିଥିବା ମଣିଷଟିକୁ ରାଜନ୍ କେମିତି ବା କହିବ ଏତେ ବଡ଼ କଥାଟି । ରବି ଆଉ ଜୀବନରେ ନାହିଁ, ଏପରି ସତ୍ୟକୁ କିପରି ବା ସାମ୍ନା କରିପାରିବ ଝୁମାନାନୀ । ମୁଣ୍ଡ ତା'ର ଗୋଳେଇ ଗଲା । କାନ୍ଦି କାନ୍ଦି ଦଉଡ଼ି ଯାଇ କ୍ଷୀରଦାଦାକୁ ସମସ୍ତ କଥା ଜଣାଇଲା ସେ । ଦାଦାଙ୍କ ଆଖିରୁ ଲୁହ ଝରି ଆସିଲା । ରବିର ମୃତ୍ୟୁ ଖବରରେ ଭାଙ୍ଗି ପଡ଼ିଲେ ସେ । ଅଫିସର ଜଣକ ସେମିତି ମୁଣ୍ଡ ପୋତି ବସିଥାଆନ୍ତି । କିଛି ସମୟ ଅତିକ୍ରାନ୍ତ ପରେ ସାହସ ବାନ୍ଧି ଝୁମା ପାଖକୁ ଯାଇ ତାକୁ କୁଣ୍ଢାଇ ଧରି କାନ୍ଦି ପକାଇଲେ ଦାଦା । ରବି ଶହୀଦ ହୋଇ ଯାଇଛିରେ ଝୁମା, ସେ ଆଉ ଜୀବନରେ ନାହିଁ। ହଠାତ୍ ଯେମିତି ଝୁମା ଉପରେ ବଜ୍ରପାତ ହେଲା । କିଛି ନ ବୁଝିଲା ପରି ସମସ୍ତଙ୍କ ମୁହଁକୁ କଲବଲ କରି ଅନାଇଲା ସେ, ଥପକିନା ବସିପଡ଼ିଲା ପିଣ୍ଡାରେ । ଯେମିତି କି ସେ ପଥର ମୂର୍ତ୍ତିଟିଏ ପାଲଟି ଯାଇଛି । ଦାଦା, ତା'ର ଏପରି ଅବସ୍ଥା ଦେଖି ମୁଣ୍ଡରେ ହାତ ଦେଇ ପିଣ୍ଡାରେ ବସି ପଡ଼ିଲେ । ରାଜନ୍ ଝୁମାନାନୀକୁ ହଲାଇ ଦେଇ ରବି ଯେ ଆଉ ଏ ସଂସାରରେ ନାହିଁ ସେ ଦେଶ ପାଇଁ ନିଜ ଜୀବନ ବଳି ଦେଇଛି, ବୁଝାଇବାକୁ ଯାଇ ଝୁମାନାନୀ କୋଳରେ ମୁଣ୍ଡ ଥୋଇ କାନ୍ଦି ଉଠିଲା ।

'ହା ରବି' କହି ଅଚେତ ହୋଇ ପଡ଼ିଲା ଝୁମା । ଖବରଟି ଚାରିଆଡ଼େ ପ୍ରଚାର ହୋଇଗଲା ନିମିଷକ ମଧ୍ୟରେ ।

× × ×

ବିମାନ ବନ୍ଦର ଠାରେ ପ୍ରବଳ ଭିଡ଼ । ସମସ୍ତେ ଅପେକ୍ଷା କରିଛନ୍ତି ଶହୀଦ ରବିନ୍ଦ୍ରକୁ ପାଛୋଟି ନେବା ପାଇଁ। ରାଷ୍ଟ୍ରୀୟ ମର୍ଯ୍ୟାଦା ଦେଇ ରବିର ମର ଶରୀରକୁ ସରକାର ଗ୍ରହଣ କରିବେ । ମୁଖ୍ୟମନ୍ତ୍ରୀ ଠାରୁ ଆରମ୍ଭ କରି ସାଧାରଣ ଜନତା ପର୍ଯ୍ୟନ୍ତ ଅପେକ୍ଷା କରିଛନ୍ତି । ଆମରି ଓଡ଼ିଆ ପୁଅ, ଭାରତର ଜବାନ ଦେଶ ପାଇଁ ପ୍ରାଣ ଦେଇଛି । ମାଟି ମାଆ ପାଇଁ ରକ୍ତର ହୋରି ଖେଳି ଯାଇଛି । ଧନ୍ୟ ଧନ୍ୟ ତା'ର ବାପ, ମାଆ, ଧନ୍ୟ ସେ । ଆମରି ଆକାଶର ଉଜ୍ଜ୍ୱଳ ତାରକାଟି ସବୁଦିନ ପାଇଁ

ଅସ୍ତମିତ ହୋଇ ଯାଇଛି । ଭିଡ଼ ଭିତର ଦେଇ ଆଗେଇ ଚାଲିଥାଏ ଝୁମା ଓ ରାଜନ୍ । ଖୋଦ୍ ଏସ୍.ପି. ସାହେବ ଆଗେ ଆଗେ ବାଟ କଢ଼େଇ ନେଇ ଚାଲିଛନ୍ତି । ଝୁମା ସହିତ ଥାଆନ୍ତି କ୍ଷୀରଦାଦା ଓ ରାଜନ୍ । ଝୁମା ଏସବୁ ଦେଖି କାବା ହୋଇ ଯାଇଥାଏ । ଏତେ ଲୋକ ଆସିଛନ୍ତି ରବିକୁ ଦେଖିବାକୁ । ସ୍ୱୟଂ ମୁଖ୍ୟମନ୍ତ୍ରୀ ଆଗେଇ ଅସି ଝୁମାକୁ ପ୍ରବୋଧନା ଦେଇ କହିଲେ, ''ଝୁମା ଦେବୀ, ରବୀନ୍ଦ୍ର ପରି ଭାଇ ପାଇଁ ଆପଣ ଧନ୍ୟା । ସେ ଆମର ବୀର ସନ୍ତାନ, ତା ପାଇଁ ଦେଶ, ଜାତି ଗର୍ବିତ ।'' ଓଢ଼ଣା ଟାଣି ତଳକୁ ମୁହଁ ପୋତି ଲୁହ ଗଡ଼ାଉଥିଲା ଝୁମା ।

ଠିକଣା ସମୟରେ ସ୍ପେଶାଲ୍ ଫ୍ଲାଇଟ୍ ଆସି ପହଞ୍ଚିଲା ଏୟାର୍‌ପୋର୍ଟରେ । ତୋପ ଫୁଟାଇ ଯଥା ସମ୍ମାନ ପ୍ରଦାନ କରାଗଲା କଫିନ୍ ଭିତରେ ରଖାଯାଇଥିବା ଶହୀଦ ରବୀନ୍ଦ୍ରର ମର ଶରୀରକୁ । ବିଶିଷ୍ଟ ଅତିଥି ମାନେ ପୁଷ୍ପଗୁଚ୍ଛ ପ୍ରଦାନ କରି ଶ୍ରଦ୍ଧାଞ୍ଜଳି ଅର୍ପଣ କଲେ । ଝୁମା ନାନୀ କଫିନ୍ ଭିତରେ ଥିବା ବାକ୍ସ ଉପରେ ହାତ ବୁଲାଇ ରବିକୁ ଅଣ୍ଡାଳିବାକୁ ଲାଗିଲା । କେତେ ଟୋପା ଅଶ୍ରୁ ଖସି ପଡ଼ିଲା ବାକ୍ସ ଉପରେ । ମାତ୍ର କେତୋଟି ମିନିଟ୍ ମଧ୍ୟରେ ଶବାଧାରଟି ଫୁଲରେ ଭର୍ତ୍ତି ହୋଇଗଲା । ସେଠାରେ ସେମାନେ ରବିର ମର ଶରୀରଟିକୁ ନେଇ ଆଗେଇ ଚାଲିଲେ ଗାଁ ଅଭିମୁଖେ । ଗାଁରେ ପହଞ୍ଚିଲା ବେଳକୁ ବେଳ ରତ ରତ । ଅସ୍ତାଚଳ ଗାମୀ ରବି, ରବିକୁ ଶେଷ ବିଦାୟ ଜଣାଇବାକୁ ଯେମିତି ନାରିକେଳ ଗଛ ଆଢୁଆଳରେ ଅପେକ୍ଷାରତ ।

ଗାଁ ମୁଣ୍ଡ ବରଗଛ ମୂଳେ ହଜାର ହଜାର ଲୋକ ରୁଣ୍ଡ ହୋଇ ଥାନ୍ତି ରବିକୁ ଦେଖିବା ପାଇଁ । ତାଙ୍କରି ଏଇ ମାଟିର ପୁଅ ମାଟି ମାଆ ପାଇଁ ଶହୀଦ ହୋଇ ଯାଇଛି । ଆବାଳ ବୃଦ୍ଧ ବନିତାଙ୍କ ଆଖିରେ ଅଶ୍ରୁ । ଆଗରେ ଚାଲିଛନ୍ତି ଜମିଦାର ରାୟ ମହାଶୟ ଫୁଲମାଳ ଧରି । ଗାଁ ଦାଣ୍ଡ ''ଆମରି ପୁଅ ରବି ଭାଇ ଅମର ରହେ'' ଧ୍ୱନିରେ ଭରିଗଲା । ଝୁମାର ଅନ୍ତର ଫାଟି ପଡୁଥାଏ । ଏଇ ରବି ଦିନେ ଝୁମା ନାନୀର ଇଜ୍ଜତ ବଞ୍ଚାଇବାକୁ ଯାଇ ରକ୍ତର ହୋରି ଖେଳି ଯାଇଥିଲା । ଆଜି ସେ ମାଟି ମାଆ ପାଇଁ ନିଜ ଜୀବନକୁ ବାଜି ଲଗେଇ ଦେଇଛି । ଝୁମା ଆଖିରୁ ବୋହି ଯାଉଥିଲା ଆନନ୍ଦାଶ୍ରୁ । ପାଗଳିନୀ ପରି ଝୁମା ଶେଷଥର ପାଇଁ ରବିର ମୁହଁରେ ଆଙ୍କିଦେଲା ଅଜସ୍ର ଚୁମ୍ବନ । ଅସ୍ତରବି ସଦୃଶ ରବିର ଅଲିଭା କିରଣର ଜ୍ୟୋତି ବୋଳି ହୋଇଗଲା ସବୁରି ମୁହଁରେ ।



# ପ୍ରତାରଣା

ଆଃ... କି ବିଭତ୍ସ ଦୃଶ୍ୟ । ଗାଢ଼ ନାଲି ପିଚ୍ ପିଚ୍ ରକ୍ତର ଧାର । ଭୟରେ ଚିତ୍କାର କରି ଉଠିଲା ବିନୀତା । ଅନ୍ଧକାର କୋଠରୀ ମଧ୍ୟରେ ତା'ର ଚିତ୍କାର ଯେପରି ପ୍ରତିଧ୍ୱନିତ ହେଉଥିଲା । ଆଖିପତା ତା'ର ସେମିତି ବନ୍ଦ ହୋଇ ରହିଥାଏ, ସମଗ୍ର ଶରୀରଟି - ଝାଳରେ ବୁଡ଼ି ଯାଇଥାଏ, କପାଳରେ ଟୋପା ଟୋପା ସ୍ୱେଦବିନ୍ଦୁ । ବିଛଣାରେ ଉଠି ବସିଲା ସେ । ପାଖ ରୁମ୍‌ରେ ପୁଅ ସୌଭାଗ୍ୟକୁ ଡାକିବାକୁ ଚେଷ୍ଟା କରି ବି ତା'ର ଗଳାର ସ୍ୱର ରୁନ୍ଧି ହୋଇ ଯାଇଥାଏ । ଭୟରେ ଛାତି ତା'ର ପଡୁଥାଏ, ଉଠୁଥାଏ, ହାର୍ଟବିଟ୍ ଅସମ୍ଭବ ଭାବେ ବଢ଼ି ଯାଇଥାଏ । ସେ ଅନୁଭବ କଲା, ତଣ୍ଟି ତା'ର ଶୁଖି ଯାଉଛି । ବେଡ୍ ଉପରେ ଥୁଆ ହୋଇଥିବା ପାଣି ବୋତଲଟି ଉଠାଇ ଆଣି ଢକ ଢକ କରି ମାନିତକ ପିଇଗଲା ସେ । ମୁଣ୍ଡର ସ୍ୱେଦ ବିନ୍ଦୁ ଗୁଡ଼ିକୁ ଛୋଟ ଟାୱେଲ୍‌ଟିରେ ଭଲ କରି ପୋଛି ଦେଲା । ରାତ୍ରିର ଶେଷ ପ୍ରହର । ଲାଇଟ୍ ଜଳାଇବାକୁ ତାକୁ ଭାରି ଭୟ ଲାଗୁଥାଏ ।

× × ×

ବାପା, ମାଆ ଓ ଆତ୍ମୀୟସ୍ୱଜନଙ୍କର ହଜାରେ ବାରଣ ସତ୍ତ୍ୱେ ବିନୀତା ଓ ଅବିନାଶ ଦୁହେଁ ବିବାହର ପବିତ୍ର ବନ୍ଧନରେ ବାନ୍ଧି ହୋଇଗଲେ । ନୂଆ ନୂଆ ସେମାନେ ଅଧ୍ୟାପକ ଭାବେ ଏକା କଲେଜରେ ଜଏନ୍ କରିଥାଆନ୍ତି । ଅଳ୍ପ ଦିନର ଆଳାପ ଓ ମିଳାମିଶା ଭିତରେ ଦୁହେଁ ଦୁହିଁଙ୍କ ପ୍ରତି ଆକୃଷ୍ଟ ହୁଅନ୍ତି । ହରିଜନ ସମ୍ପ୍ରଦାୟର ସନ୍ତାନ ହେଲେ ବି ଅବିନାଶର ବଳିଷ୍ଠ ଚେହେରା ବିନୀତାର ମନକୁ ବେଶ୍ ଛୁଇଁଥିଲା । ଅବିନାଶର ବିନମ୍ର ସ୍ୱଭାବ ବିନୀତାର ହୃଦୟ ଆସନର ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରି ପାରିଥିଲା । ବାପା, ମାଆଙ୍କୁ ସେ ବହୁତ କରି ବୁଝେଇଥିଲା, ସେ ଅବିନାଶକୁ ନେଇ ନିଶ୍ଚେ ସୁଖୀ ହେବ । ଜାତି, ଅଜାତି ସବୁ ଏଇ ମଣିଷର ସୃଷ୍ଟି, ହୀନମନ୍ୟତା । ତାଛଡ଼ା ସେ ସାବାଳିକା, ବୁଝିବାର ଶକ୍ତି ତା'ର ଯଥେଷ୍ଟ ବଢ଼ିଛି, ତାର କ'ଣ ସିଦ୍ଧାନ୍ତ

ନେବାର ଏତିକି ସ୍ୱାଧୀନତା ନାହିଁ ? ତା ଜୀବନକୁ ଗଢ଼ିବା ପାଇଁ ତା'ର ଅଧିକାର ନାହିଁ ? ମନରେ ପ୍ରଶ୍ନବାଚୀ ? ଅନେକ ପ୍ରଶ୍ନର ସମାଧାନ ଟାଣି ବିନୀତା ଓ ଅବିନାଶ ଦିହେଁ ବିଭା ହୋଇଗଲେ ।

ବାପା ମାଆଙ୍କର ଏକମାତ୍ର ଅଲିଅଳୀ ଝିଅ ବିନୁ, ଅଧ୍ୟାପିକା ବିନୀତା ଦେବୀ, କେତେ ଅଳି କରିଥିଲା ବାପାଙ୍କ ପାଖରେ ତା'ର ସିଦ୍ଧାନ୍ତକୁ ମାନିନେବା ପାଇଁ । ପ୍ରେମ ଅନ୍ଧ, ନିଆ ଅନ୍ଧ, ସେଠାରେ ବାପାଙ୍କର ବାରଣ କରିବାର ବା ସ୍ଥାନ କାହିଁ ? ମାଆର ଆଖି ଲୁହ, ଭାଇ, ଭଉଣୀର ସ୍ନେହ ମମତା ତାକୁ ବାନ୍ଧି ପାରି ନଥିଲା । ସେଦିନ ସମସ୍ତ ମାୟା ମମତା ତୁଟାଇ ସେ ବାହାରି ଆସିଥିଲା ଘର ଛାଡ଼ି ଆଖିରେ ଆଖିଏ ଲୁହ ନେଇ । ସେଇ ଦିନରୁ ବିନୀତା ଆଉ ବାପଘର ଦୁଆର ମୁହଁ ଦେଖିନାହିଁ । ବାପା, ମାଆଙ୍କର ଆଖିର ଲୁହ ଆଜି ତା ଉପରେ ଅଭିଶାପ ହୋଇ ଫଳିଛି ।

× × ×

ବିନୀତା ଓ ଅବିନାଶ ସେଦିନ କେତେଜଣ ସାଙ୍ଗ ସାଥୀଙ୍କ ଗହଣରେ କୋର୍ଟରେ ମ୍ୟାରେଜ୍ କଲେ । ସେ ବାହାଘରରେ ନଥିଲା ବାଜା, ନା ଥିଲା ରୋଷଣୀ । ସେ ଦିନ ବିନୀତାର କାନରେ ଓ ହୃଦୟରେ କେବଳ ଝଙ୍କାର ତୋଳିଥିଲା ଅବିନାଶର ପ୍ରେମ ସଂଗୀତ । ତାକୁ ହିଁ ପାଥେୟ କରି ଜୀବନ ଗଢ଼ିବାର ଅସୁମାରୀ ସ୍ୱପ୍ନରେ ସେ ବିଭୋର ହୋଇ ପଡ଼ିଥିଲା । ଚକୋର ଚକୋରୀ ପରି ଦୁହେଁ ପ୍ରେମ ଜାଲରେ ଛନ୍ଦି ହୋଇ ଘୁରି ବୁଲିଲେ ଆନନ୍ଦରେ । ବାପା, ମାଆଙ୍କର ସ୍ନେହ, ମମତା ହାର ମାନି ଯାଇଥିଲା ଅବିନାଶର ଭଲ ପାଇବା ପାଖରେ । ବାହାଘରର ଗୋଟିଏ ବର୍ଷ ନ ପୁରୁଣୁ ବିନୀତାର କୋଳ ମଣ୍ଡନ କରି ଆସିଲା ସୌଭାଗ୍ୟ । ଶୁଭ (ସୌଭାଗ୍ୟ)କୁ ନେଇ ମାତି ଉଠିଥିଲେ ସେମାନେ । ମାଆ ହେବାର ଗୌରବରେ ଆନନ୍ଦରେ ଅତ୍ମହରା ହୋଇ ପଡ଼ିଥିଲା ବିନୀତା । ପ୍ରତି ମୁହୂର୍ତ୍ତରେ ଅବିନାଶର ସାହଚର୍ଯ୍ୟ ପାଇ ସେ ନିଜକୁ ଧନ୍ୟ ମନେ କରୁଥିଲା । ମେଟରନିଟି ଲିଭ୍ ଧୀରେ ଧୀରେ ସରି ଆସୁଥାଏ । ଛୁଟି ଶେଷ ହେଲେ କଲେଜ ଯିବାକୁ ହେବ ବିନୀତାକୁ । ଶୁଭକୁ ନେଇ ଭାଳେଣୀ ପଡ଼ିଲା ବାପା ମାଆଙ୍କର । କାହା ପାଖେ ତା'ର ପ୍ରାଣର ଧନକୁ ଛାଡ଼ି ଦେଇ ଯିବ ବିନୀତା । କିଛି ଗୋଟାଏ ବନ୍ଦୋବସ୍ତ କରିବାକୁ ପଡ଼ିବ । ଅବିନାଶର ଭାଣିଜୀ ସୁଷମା ଗାଁ କଲେଜରେ ପଢୁଥାଏ, ସେ ଏବେ ଘରେ ବସିଛି । ଗତ ବର୍ଷ ପ୍ଲସ୍ ଟୁ ଫେଲ୍ ହେବା ପରେ ସେବେଠୁ ସେ ଆଉ ଲାଜରେ କଲେଜ ଯାଉନି । ନାନୀ କହୁଥିଲେ ବରପାତ୍ର ଯୋଗାଡ଼ ହେଲେ ସେ ତାର ବିଭାଘର କରିଦେବେ । ବିନୀତା, ଅବିନାଶକୁ ପଠାଇ ସୁଷମାକୁ ଗାଁରୁ ନେଇ ଆସିଲେ । ସୁଷମା ଆସିବା ପରେ ବିନୀତାର ବଡ଼ ବୋଝଟିଏ

ମୁଣ୍ଡରୁ ଓହ୍ଲେଇଗଲା । ବିନୀତାଙ୍କର ଛୁଟି ଶେଷ ହେଲା ପରେ କଲେଜ ଯିବା ଆରମ୍ଭ କଲେ । ସବୁଦିନ ସକାଳୁ ସକାଳୁ ଉଠି ପୁଅର ସମସ୍ତ କାମ ସାରି ରୋଷେଇ ବାସ କରିଦିଏ ବିନୀତା । ସୁଷମା ବି ମାଇଁଙ୍କୁ ସାହାଯ୍ୟ କରେ । ସକାଳ ଦଶଟା ପୂର୍ବରୁ ଖାଇ ପିଇ ମାମୁଁ, ମାଇଁ କଲେଜ ଯାଆନ୍ତି ଓ ସୁଷମା ଶୁଭର ଯତ୍ନ ନିଏ । ମାଇଁଙ୍କ କଥାରେ ବାକି ସମୟ ବସି ସୁଷମା ପଢ଼ାପଢ଼ି କରେ । ଏ ବର୍ଷ ତାଙ୍କରି କଲେଜରେ ପ୍ରାଇଭେଟ୍ ଷ୍ଟୁଡେଣ୍ଟ ଭାବେ ପରୀକ୍ଷା ଦେବା ପାଇଁ ମନସ୍ଥ କରିଛି ସେ । ସେମାନଙ୍କର ବସା ପାଖରେ କଲେଜ ହୋଇଥିବାରୁ ମଝିରେ ମଝିରେ ଆସି ବିନୀତା ପୁଅକୁ କ୍ଷୀର ପିଆଇ ଦେଇଯାଏ । ଅବିନାଶ ମଧ୍ୟ ତାଙ୍କର କ୍ଲାସ ନ ଥିବା ସମୟରେ ବସାରେ ଆସି ଶୁଭ ଓ ସୁଷମାର ହାଲଚାଲ ବୁଝି ଯାଆନ୍ତି । ପୁଅ ସାଙ୍ଗେ ଟିକେ ନ ଖେଳିଲେ ତାଙ୍କ ମନ ମାନେନା । ଶୁଭ ଏବେ ଖିଲି ଖିଲି ହୋଇ ହସିବା ଆରମ୍ଭ କରିଛି । ବିନୀତା ଓ ଅବିନାଶକୁ ଦେଖିଲେ ହାତ ଗୋଡ଼ ହଲାଇ ସୁସୁରୀ ମାରିବା ଭଳି ଶବ୍ଦ କରି ଖୁସି ଜାହିର କରେ । ତା ହସରେ ପ୍ରଥମ ସୂର୍ଯ୍ୟୋଦୟର ଅରୁଣିମା ଫୁଟି ଉଠେ ସୌଭାଗ୍ୟର ସାରା ମୁହଁରେ । ସତେ କି ନିଷ୍ପାପ, ପବିତ୍ର ଗୋଲାପ କଳିଟିଏ । ବାପା, ମାଆ ଶୁଭକୁ କୋଳକୁ ନେଇ ଆନନ୍ଦରେ ଆତ୍ମହରା ହୋଇ ପଡ଼ନ୍ତି । ସୁଷମାକୁ ତ ଯେମିତି କଣ୍ଢେଇଟିଏ ମିଳିଯାଇଛି । ସୁଷମା ସବୁକିଛି ସମ୍ଭାଳି ନିଏ ବୋଲି ବିନୀତାକୁ ବ୍ୟସ୍ତ ହେବାକୁ ପଡ଼େନି । ପୁଅ କଥା ବୁଝିବା ସାଙ୍ଗେ ସାଙ୍ଗେ ଏ ବର୍ଷ ପରୀକ୍ଷା ଦେବା ପାଇଁ ଜୋର୍‌ସୋର୍‌ରେ ପଢ଼ାପଢ଼ି ବି ଆରମ୍ଭ କରି ଦେଇଛି । ଭାରି ସ୍ନେହୀ ଝିଅଟିଏ ସୁଷମା । ସମୟର ତାଳେ ତାଳେ ବିନୀତାର ସୁଖର ସଂସାର ପାଣି ପରି ବହି ଚାଲେ ।

ସୌଭାଗ୍ୟ ଶଶୀକଳା ପରି ଦିନକୁ ଦିନ ବଢ଼ିବାକୁ ଲାଗେ । ଦୁଷ୍ଟାମୀରେ ସମସ୍ତଙ୍କୁ ଅତିଷ୍ଠ କରି ପକାଏ ସେ । ତାକୁ ଏବେ ତିନି ବର୍ଷ ପୁରି ଚାରି ଚାଲିଛି । କଲୋନୀରେ ଗଢ଼ି ଉଠିଥିବା ଏକ ଇଂଲିସ୍ ମିଡ଼ିୟମ ସ୍କୁଲରେ ନର୍ସରୀ କ୍ଲାସ୍‌ରେ ଏଡ୍‌ମିସନ୍ କରାଇ ଦେଇଛନ୍ତି ଅବିନାଶ । ଯା ହେଉ ଏବେ ସେ ଦଶଟାରୁ ଚାରିଟା ପର୍ଯ୍ୟନ୍ତ ସ୍କୁଲରେ ରହୁଛି । ଇତି ମଧ୍ୟରେ ସୁଷମାର ଗ୍ରାଜୁଏସନ୍ ସରିଲାଣି । ମାମୁଁ, ମାଇଁଙ୍କର ଅତିପ୍ରିୟ ହୋଇ ଉଠିଛି ସୁଷମା । ତା ପାଇଁ ସେପାରେଟ୍ ରୁମ୍‌ଟିଏ ପଢ଼ିବା ଓ ଶୋଇବା ପାଇଁ ଠିକ୍ କରି ଦେଇଛି ବିନୀତା । ସୁଷମାର ଆବଶ୍ୟକ ମୁତାବକ ସବୁ କିଛି କିଣି ଦେଇଛି ସେ । ଭଲିକି ଭଲି ଡ୍ରେସ୍, କସ୍‌ମେଟିକ୍ସ କୌଣସି ଥିରେ ଯେମିତି ତା'ର ଅଭାବ ନ ରହେ, ସେଥିପାଇଁ ଲକ୍ଷ୍ୟ ରଖିଥାଏ ବିନୀତା । କେବେ କେବେ ମାଇଁ ଭାଣିଜୀ ସାଥୀ ହୋଇ ମନ୍ଦିର ଓ ବଜାର ଆଡ଼େ ବୁଲି ଯାଆନ୍ତି ।

ସୁଷମା ମାଇଁର ଅତି ଗେହ୍ଲବସରିଆ ଭାଣିଜୀଟିଏ । ମାଇଁ ପାଖରେ ବସି ଗପସପ ହେବା, ଓଜର ଆପତ୍ତି କରିବାକୁ ଭୟ ନଥାଏ ତାର । ମାମୁଁଙ୍କୁ କିନ୍ତୁ ତା'ର ପ୍ରାଣରୁ ଡର ।

× × ×

ସମୟ ସୁଅରେ ଆଜି ଦିନ କାଲିକି ବଦଳି ଯାଏ । ନିଜର ମଣିଷ ପର ହୋଇଯାଏ, ପର ହୁଏ ଆପଣାର । ସେଦିନ କାମଦାମ ସାରି ନିଘୋଡ଼ ନିଦରେ ଶୋଇପଡ଼ିଛି ସୁଷମା । ତା ଛାତି ଉପରେ କାଳିଦାସ ରଚିତ 'ବାସବଦତ୍ତା' ଉପନ୍ୟାସଟି ଅଧା ମେଲା ହୋଇ ଥୁଆ ହୋଇଛି । ବୋଧେ ପଢୁ ପଢୁ ନିଦ ଲାଗି ଯାଇଛି । କବାଟରେ ଖଡ଼ ଖଡ଼ ଶବ୍ଦ ତା କାନକୁ ଶୁଭି ନାହିଁ । ତାଛଡ଼ା ଏହି ସମୟରେ ତ ଆଉ କେହି ଆସିବାକୁ ନାହିଁ । ନିଦକରେ ଶୋଇ ଯାଇଛି ସେ । ମାମୁଁ ମାଇଁ ତ କଲେଜରୁ ଫେରିବେ ଅପରାହ୍ଣ ଚାରିଟାରେ ଓ ଆସିଲା ବେଳକୁ ଶୁଭକୁ ସ୍କୁଲରୁ ନେଇ ଆସିବେ । କବାଟ ବାଡ଼େଇ ଚାଲିଛି ଅବିନାଶ, ଅବେଳରେ ଟଏଲେଟ୍ ଲାଗିବାରୁ ଘରକୁ ଚାଲି ଆସିଛି । ମାତ୍ର କବାଟ ଖୋଲିବାକୁ ନାହିଁ, ସୁଷମା ଉପରେ ରାଗ ଲାଗୁଥାଏ ଓ ଏପଟେ ବ୍ୟସ୍ତ ବି ଲାଗିଲାଣି । ହଠାତ୍ ପ୍ୟାଣ୍ଟ୍ ପକେଟ୍‌ରେ ହାତ ମାରି ଦେଖେ ତ ଡୁପ୍ଲିକେଟ୍ ଚାବି ପକେଟ୍‌ରେ ଥୁଆ ହୋଇଛି । ଦାଣ୍ଡ କବାଟଟିକୁ ଲକ୍ ସିଷ୍ଟମ୍ କରି ଦେଇଛନ୍ତି । ତରତରରେ ଚାବି ଖୋଲି ସିଧା ଦଉଡ଼ିଲେ ବାଥରୁମ୍ ଭିତରକୁ । ବହୁତ ଆରାମ୍ ଲାଗିଲା ଅବିନାଶକୁ । ପାଣି ପିଇବା ପାଇଁ ସୁଷମା, ସୁଷମା ଡାକି ତା ଘର ଭିତରକୁ ପଶିଗଲେ ସେ । ସୁଷମା ସେ ପର୍ଯ୍ୟନ୍ତ ନିଶ୍ଚିନ୍ତରେ ଶୋଇ ଘୁଙ୍ଗୁଡ଼ି ମାରୁଥାଏ । ଟେବୁଲ୍ ଉପରେ ଥୁଆ ହୋଇଥିବା ପାଣି ଜଗ୍‌ରୁ ଗ୍ଲାସେ ପାଣି ଢାଳି ପିଇଲା ଅବିନାଶ । ନିନ୍ଦ କାତୁରୀ ଝିଅଟା ଏ ପର୍ଯ୍ୟନ୍ତ ଶୋଇଛି କହି ସୁଷମାର ଛାତି ଉପରେ ଥୁଆ ହୋଇଥିବା ଉପନ୍ୟାସ ଟିକୁ ଉଠାଇ ଆଣୁ ଆଣୁ ଅବିନାଶ ଯେପରି ଆବିଷ୍କାର କଲା ସୁଷମାର ଅଫୁରନ୍ତ ଐଶ୍ୱର୍ଯ୍ୟ ଭଣ୍ଡାରକୁ । ଆଖି ଫେରାଇ ପାରିଲାନି ସେ ତା'ର ଉଦ୍ଧତ ଦୁଇ ବକ୍ଷୋଜ ଉପରୁ । ସମତଳ ଭୂମି ଉପରେ ଅଚାନକ ଭାବେ ଅତି ସୁନ୍ଦର ଦୁଇଟି ବାଲିର ପାହାଡ଼ ସୃଷ୍ଟି କରି ଶିଳ୍ପୀର ଚାତୁରୀ ଯେମିତି ଖେଳାଇ ଦେଇ ଯାଇଛି । ସୁଷମାକୁ କେବେ ଏତେ ପାଖରୁ ଦେଖିବାର ସୁଯୋଗ ପାଇ ନଥିଲା ଅବିନାଶ । ନାଲି ନାଲି ଅଧରରେ ମନ୍ଦ ମନ୍ଦ ହସ, ମୁଦ୍ରିତ ଆୟତ ଚକ୍ଷୁ ଦୁଇଟିର ସରୁ ଭ୍ରୁଲତା ଯେମିତି ତାକୁ ଇସାରା କରୁଥିଲା ମଧୁପ ସାଜି ଏଇ ଦରଫୁଟା ପୁଷ୍ପ କଳିକାଟିର ସବୁ ମଧୁ ଶୋଷି ନିଃଶେଷ କରି ଦେବାକୁ । ଲୋଭ ସମ୍ଵରଣ କରି ନ ପାରି ସୁଷମା ଉପରେ ଝୁଙ୍କି ପଡ଼ି ତାର ଅଧରରେ ନିଜର ଅଧର ଦାବି ଦେଲା ଅବିନାଶ । ଚିହିଙ୍କି

ଉଠି ସୁଷମା ଚିତ୍କାର କରିବା ପୂର୍ବରୁ ତା ପାଟିରେ ହାତ ଦେଇ ଦୁଷ୍ଟ ଭ୍ରମରଟି ପରି ତା କାନମୂଳେ ମାମୁଁ, ମାମୁଁ ବୋଲି ଗୁଣୁ ଗୁଣୁ କଲା ସେ । ସୁଷମା ଲାଜରେ ଅନାଇ ପାରି ନଥିଲା ତା ଆଡ଼କୁ । ସେମିତି ଆଖି ବୁଜି ନିସ୍ତେଜ ହୋଇ ପଡ଼ି ରହିଥାଏ ଅବିନାଶର ବାହୁ ବେଷ୍ଟନୀ ମଧ୍ୟରେ ଏକ ପୋଷା ଚଢ଼େଇଟି ପରି । ଅବିନାଶର ବାହୁ ପାଶରେ ସେ ପେଶି ହୋଇ ଯାଇଥାଏ । ଯୌବନର ପ୍ରଥମ ପୁରୁଷର ଛୁଆଁରେ ସେ ନିଜକୁ ଭୁଲି କୁଣ୍ଢାଇ ଧରିଲା ଅବିନାଶକୁ । ଅବିନାଶ ଏକ ମତ୍ତ ହସ୍ତୀ ପରି ସୁଷମାର ନଳିନୀବନକୁ ଧ୍ୱସ୍ତ ବିଧ୍ୱସ୍ତ କରିବାରେ ଲାଗିଲା । ପରିତୃପ୍ତିର ପ୍ରାପ୍ତି ପୂର୍ଣ୍ଣତାରେ ଦୁଇଟି ମନ ଆନନ୍ଦରେ ବିଭୋର ହୋଇ ଉଠିଲା । ସେମାନେ ସମ୍ପୂର୍ଣ୍ଣ ଭାବେ ଭୁଲି ଗଲେ ବାହାର ଦୁନିଆକୁ, ପାରିପାର୍ଶ୍ୱିକ ଅବସ୍ଥାକୁ ।

ଆଗପରି ମାମୁଁଙ୍କୁ ତା'ର ଆଉ ଡର ଭୟ ନାହିଁ । ମାଇଁ ଅପେକ୍ଷା ମାମୁଁଙ୍କ ପାଖରେ ଅଧିକ ପ୍ରଗଳ୍ଭା ହୋଇ ଉଠିଛି ସୁଷମା । କଲେଜରୁ ଆସୁ ଆସୁ ମାମୁଁଙ୍କ ସ୍କୁଟରରେ ବସି ପ୍ରାୟ ବୁଲିବାକୁ ଯାଏ ସୁଷମା । ମାମୁଁ ବି ଯେପରି ଆଗରୁ ତାକୁ ବୁଲେଇ ନେବା ପାଇଁ ରେଡି ହୋଇ ଥାଆନ୍ତି । ବିନୀତା ବ୍ୟସ୍ତ ହୋଇପଡ଼େ ଶୁଭକୁ ନେଇ । ତା ପାଖରେ ବା ସମୟ କାହିଁ ବୁଲିବା ପାଇଁ । ଆଗପରି ସୁଷମା ଓ ଅବିନାଶର ସାହାଯ୍ୟ ମିଳେନାହିଁ । ସେମାନେ ଫେରୁ ଫେରୁ ରାତି ଆଠ କି ଦଶ । କେଉଁ ଦିନ ବି ବଜାରରୁ ଖାଇ କରି ଆସନ୍ତି । ସେତେବେଳକୁ ଶୁଭ ପଢ଼ା ପଢ଼ି, ଖାଇବା ସାରି ଶୋଇ ପଡ଼ିଥାଏ । ଏହା ନିତ୍ୟ ନୈମିତ୍ତିକ ଭାବେ ଗଡ଼ିଚାଲେ । କ୍ରମେ ଅସହ୍ୟ ହୋଇ ଉଠେ ବିନୀତା ପକ୍ଷରେ । ସେ ବି ଗୋଟିଏ ମଣିଷ, ମେସିନ୍ ନୁହେଁ । ଅବିନାଶକୁ କେତେଥର ଏ ବିଷୟରେ କହିଲେ ବି ନ ଶୁଣିଲା ପରି ଅଭିନୟ କରନ୍ତି ସେ । ତାକୁ ଟିକିଏ ସାହାଯ୍ୟ କରିବା ପରିବର୍ତ୍ତେ ସୁଷମାକୁ ନେଇ ଅବିନାଶ ଯେମିତି ମାତି ଉଠିଛି, ତାହା ସାରା କଲୋନୀରେ ଏକ ଆଲୋଚନାର ବିଷୟବସ୍ତୁ ହୋଇ ପଡ଼ିଛି । ବିନୀତା ମନେ ମନେ ବିରକ୍ତ ହେଲେ ବି ମୁହଁ ଖୋଲି କିଛି କହି ପାରେନି । କାହା ଆଗେ ବା କହିବ, ''କହିଲେ କୁଳକୁଟୁମ୍ବକୁ ଲାଜ, ନ କହିଲେ କୁଳ ଭାସି ଯାଉଛି ।'' ବାହାର ଲୋକଙ୍କ ପରି ସେ କ'ଣ ତା'ର ସ୍ୱାମୀ, ଯିଏ ତାର ଇହ ପରକାଳର ଦେବତା, ତାଙ୍କୁ ସନ୍ଦେହ କରେ ? ସେ ଅବିନାଶକୁ ଭଲ କରି ପଦେ ଶୁଣାଇ ଦେବ, ସେ ନିଶ୍ଚେ ଏହାର ପ୍ରତିବାଦ କରିବ । କ'ଣ କରିବ, ବେଳେ ବେଳେ କିଛି କୂଳ କିନାରା ପାଏନା । କେବେ ଖାଏ, କେବେ ନ ଖାଇ ବି ଶୋଇ ପଡ଼େ । ତା'ର ଖବର ଅନ୍ତର ନେବାକୁ ଅବିନାଶର ବେଳ ନାହିଁ । ତତଲା ଲୁହର ଧାର କାନ ମୂଳ ଦେଇ ବହିଯାଏ, ତକିଆ ଭିଜିଯାଏ । ମନକୁ ପ୍ରବୋଧନା ଦିଏ,

ଅବିନାଶ ଓ ସୁଷମା ପ୍ରତି ତାର ଧାରଣା ସମ୍ପୂର୍ଣ୍ଣ ଭୁଲ । ଲୋକଙ୍କର କିଛି କାମ ନାହିଁ, ଯେତେ ଖରାପ କଥା ଗପିବାରେ ସେମାନେ ଧୁରନ୍ଧର । ପୁଅ ଶୁଭ ଉପରେ ହାତ ପକାଇ ସେ ଶୋଇ ପଡ଼େ ।

× × ×

ଆଜି ରବିବାର, ଛୁଟି ଦିନ । ଦିନ ଦ୍ୱିପ୍ରହରରୁ ଘରେ ଭିଡିଓ କ୍ୟାସେଟ୍ ଲାଗିଛି । ରାତି ଆସି ଦଶଟା ହେଲାଣି କାହାରି ହୋସ୍ ନାହିଁ । ବିନୀତାର ଡାକରେ ଅବିନାଶ ଓ ସୁଷମା ଖାଇବା ପାଇଁ ଉଠିଆସିଲେ । ଖାଇବା ଟେବୁଲରେ ବସି ଚାଲିଲା ହିରୋ ହିରୋଇନ୍ ବିଷୟ ଆଲୋଚନା । ରାତିରେ ସେମାନେ ଆଉ ଏକ କ୍ୟାସେଟ୍ ଦେଖିବେ, ସମ୍ପୂର୍ଣ୍ଣ ପାରିବାରିକ ପିକ୍‌ଚର 'ସ୍ୱର୍ଗନର୍କ' ।

ହଠାତ୍ ଧଡ଼୍‌କରି କବାଟ ଶବ୍ଦରେ ବିନୀତାର ନିଦ ଭାଙ୍ଗିଗଲା । ବିଛଣାରେ ଅଣ୍ଡାଳିଲା ଅବିନାଶକୁ, ମାତ୍ର ଅବିନାଶ କାହିଁ ? ତେବେ କ'ଣ ଏ ପର୍ଯ୍ୟନ୍ତ ମାମୁଁ ଭାଣିଜୀର ସିନେମା ଦେଖା ଚାଲିଛି ।

ବିଛଣାରୁ ଉଠି ଟିଭି ରୁମ୍‌କୁ ଯାଇ ଦେଖେ ତ ସେଠାରେ କେହି ନାହାନ୍ତି । ତେବେ ଏମାନେ ଗଲେ କୁଆଡ଼େ ? ଚାରିଆଡ଼େ ଅନ୍ଧାର, କେବଳ ବାଥ୍‌ରୁମ୍ ଲାଇଟ୍‌ର କ୍ଷୀଣ ରେଖା ବାହାରକୁ ଦେଖା ଯାଉଛି । ବାଥରୁମ୍ ନିକଟକୁ ଯାଇ ଅଟକି ଗଲା ସେ ଓ କବାଟ ଫାଙ୍କ ଦେଇ ଭିତରକୁ ଅନାଇ ସେ ଯାହା ଦେଖିଲା, ମୁଣ୍ଡ ତାର ବୁଲାଇ ଦେଲା ଓ ସ୍ତମ୍ଭିତ ହୋଇଗଲା ସେ । ସୁଷମା ଓ ଅବିନାଶର ଆଦିମ ଉଦ୍ଦାମତା । ଦୁହେଁ ଦୁହିଁଙ୍କୁ ଅକ୍ଟୋପାସ୍ ପରି ଗ୍ରାସ କରି ଚାଲିଛନ୍ତି । ଅବିନାଶ ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ସୁଷମାକୁ ନିଜ ଛାତିରେ ଜୋର୍‌ରେ ଚାପି ଧରିଛନ୍ତି । ବିନୀତା ସେଠାରେ ଅଚେତ ହୋଇ ପଡ଼ିଗଲା ।

ସକାଳୁ ଆଖି ଖୋଲି ଦେଖେ ତ ବିନୀତା ତା'ର ବେଡ୍ ଉପରେ ଶୋଇଛି ଓ ଅବିନାଶ ତା ମୁଣ୍ଡ ପାଖରେ ବସି ପାଣି ପଟି ଦେଇ ଚାଲିଛନ୍ତି । ସୁଷମା ତା ଗୋଡ଼ ପାଖରେ ବସିଛି ତଳକୁ ମୁହଁ ପୋତି । ସେମାନେ ଯେମିତି ଅନୁତପ୍ତ । ଦୁଃଖ ଓ ଘୃଣାରେ ବିନୀତାର ଆଖି ଦୁଇଟି ପୁଣି ବୁଜି ହୋଇଗଲା । ଏଇ ତେବେ ତା'ର ପ୍ରେମର ପ୍ରତିଦାନ, ଭଲ ପାଇବାର ପୁରସ୍କାର । 'ଭଲ ପାଇବା ଅର୍ଥକୁ ଏପରି କଦର୍ଥ କରିଦେବ ଅବିନାଶ ସେ କେବେ ବି ଭାବି ନଥିଲା । ଯେଉଁ ପ୍ରେମ, ଭଲ ପାଇବା ନେଇ ସେ ଏବେବି ଗର୍ବ କରେ, ବାପା, ମାଆ, ଭାଇ, ଭଉଣୀର ସ୍ନେହ, ଶ୍ରଦ୍ଧାର ଏରୁଣ୍ଡି ବନ୍ଧ ଡେଇଁ ଅବିନାଶ ପାଇଁ ଘର ଛାଡ଼ିଥିଲା, ସେଇ ଭଲ ପାଇବାରେ ଏତେ ବିଶ୍ୱାସ ଘାତକତା । ଯାହାକୁ ସେ ଜନ୍ମ ଜନ୍ମାନ୍ତରରେ ଦେବତା ଭାବି ହାତ ଧରିଥିଲା,

ତା'ଠି ଆଲୋକ ପରିବର୍ତ୍ତେ ଏତେ ଅନ୍ଧକାର ଲୁଚି ରହିଥିଲା, ଏତେ ବର୍ବରତା ? ଆଉ ଆଗକୁ କିଛି ଭାବି ପାରି ନଥିଲା ସେ । ମୁଣ୍ଡଟା ଯେପରି ଶତଖଣ୍ଡରେ ପରିଣତ ହୋଇଯିବ ।

ବିନୀତାର ସ୍ୱାଭିମାନ ମରିଯାଇଛି ସବୁଦିନ ପାଇଁ । ଜୀବନ ଯୁଦ୍ଧରେ ସେ ହାରି ଯାଇଛି । ସେଦିନ କାହାରିକୁ କିଛି ନ କହି ଚୁପ୍‌ଚାପ୍ ପୁଅକୁ ନେଇ ସେ ବାହାରି ଆସିଥିଲା ଅବିନାଶ ସହିତ ସମସ୍ତ ସମ୍ପର୍କ ଛିନ୍ନ କରି । ଆଖିରେ ତାର ନଥିଲା ଅଶ୍ରୁ । ମୁଖ ମଣ୍ଡଳରେ ଫୁଟି ଉଠିଥିଲା ଦୃଢ଼ତା ଓ ସଂକଳ୍ପ, ଶୁଭ ପାଇଁ ଏକା ଏକା ତାକୁ ବାଟ ଚାଲିବାକୁ ହେବ ।

× × ×

ମାତ୍ର ଆଜି ତା ଭିତରେ ଏ ଦୁର୍ବଳତା କାହିଁକି ? ସ୍ୱପ୍ନ ଦେଖି ଭୟଭୀତ ହୋଇ ପଡ଼ିଥାଏ ସେ । ବିଛଣାରୁ ଉଠିବାକୁ ତା'ର ସାହସ ପାଉନାହିଁ । ପୁଅ ସୌଭାଗ୍ୟ କଲେଜରେ ପଢ଼ିଲାଣି, ଭଲମନ୍ଦ ବୁଝିବାର ତା'ର ବୟସ ହୋଇଛି । ସେଦିନ ସେ ତାର ଅନେକ ଦିନର ପୁରୁଣା ଡାଇରୀଟି ଶୁଭ ରୁମ୍‌ରେ ଦେଖି ଚମକି ପଡ଼ିଥିଲା । ସେ ଡାଇରୀଟିକୁ ନେବା ମୁହୂର୍ତ୍ତରେ ସେ ଶୁଭର ଆଖିରେ ଘୃଣା ଓ ପ୍ରତିହିଂସାର ବହ୍ନି ଦେଖିଥିଲା । ତେବେ କ'ଣ ସୌଭାଗ୍ୟ ପିତୃହନ୍ତା ? ସେ ତାର ପ୍ରଥମ ପ୍ରେମକୁ ହତ୍ୟା କରିଛି ? ଅବିନାଶକୁ ଜୀବନରୁ ମାରି ଦେଇଛି ? ରକ୍ତରେ ଜୁଡୁବୁଡୁ ଶରୀରଟିଏ ମନେ ହେଉଥିଲା ଅବିନାଶର । ଆଃ ..... ଏ କ'ଣ କଲା ସୌଭାଗ୍ୟ ? ରାତି ପାହି ଆସୁଛି, ଝରି ଯାଉଛି ବିନୀତାର ଦୁଇ ଆଖିରୁ ଅଶ୍ରୁର ଧାର । ସ୍ୱପ୍ନ ଯଦି ତାର ସତ ହୁଏ, ତେବେ ସବୁଦିନ ପାଇଁ ସେ ସୌଭାଗ୍ୟକୁ ହରାଇ ବସିବ, ଭାବି ଭାବି ଅସ୍ଥିର ହୋଇ ଉଠିଲା ସେ । ପାଖ ଘରେ ଯାଇ ଦେଖେ ତ ଶୁଭ ନିଶ୍ଚିନ୍ତରେ ଶୋଇଛି, ତା ମୁହଁରେ ପ୍ରଶାନ୍ତିର ହସ । ବିନୀତାକୁ ଅବିନାଶ ଯେଉଁ ପ୍ରତାରଣା ଦେଇଛି, ତାକୁ ଯେତେ କ୍ଷମା ଦେଲେ ବି ସେ ତା'ର ଅଧିକାରୀ ହୋଇପାରିବନି । ତଥାପି ଚାହେଁ ତା'ର ପ୍ରଥମ ଓ ଶେଷ ପ୍ରେମର ସନ୍ତକ ଶୁଭ ବାପ ଛେଉଣ୍ଡ ନ ହେଉ । ଅବିନାଶ ଭଲରେ ରହନ୍ତୁ, ଶତାୟୁ ହୋଇ ବଞ୍ଚି ରହନ୍ତୁ ଏ ଦୁନିଆରେ ।



# ଚାନ୍ଦିନୀ ଓ ଟୁଟାତାରା

ଆଜି ବାପାଙ୍କ କଥା ବହୁତ ମନେ ପଡୁଥିଲା ମୋର । ମନଟା ଭାରି ଗୋଳେଇ ଘାଣ୍ଟି ହେବାକୁ ଲାଗିଲା । ବାପା ତୁମେ ଥରେ ଆସି ଦେଖିଯାଅ, ତୁମ ଚାନ୍ଦିନୀର ବେବସୀକୁ । ଚାନ୍ଦିନୀ ତୁମର ଭାରି ଏକୁଟିଆ ହୋଇଯାଇଛି ବାପା । ତୁମର କଥା କୁହା ଚାନ୍ଦଟି ମୋ ଠାରୁ ବହୁ ଦୂରକୁ ଚାଲି ଯାଇଛି ବାପା ! ତୁମ ଚାନ୍ଦିନୀକୁ ସେ ଭୁଲି ଯାଇଛି । ମୋ ପାଖରେ ଥାଇବି ମୋ ଠାରେ ନାହିଁ ବାପା । ବାପା ଗଢ଼ାଇ ଦେଇଥିବା ରୂପାର ଚାନ୍ଦଟିକୁ ଛାତିରେ ଚାପିଧରି ଅନ୍ତର୍ଦାହକୁ ଶୀତଳ କରିବାକୁ ଉଦ୍ୟମ କରୁଥାଏ ଚାନ୍ଦିନୀ ।

× × ×

ଚାନ୍ଦିନୀର ଆଜି ସବୁ କଥା ମନେ ଅଛି, ଯେବେ ପାଞ୍ଚ / ଛଅ ବର୍ଷର ହୋଇଥାଏ ସେ ।

ପୂର୍ଣ୍ଣମୀ ଆକାଶର ଚାନ୍ଦକୁ ଦେଖି କ'ଣ ଗୋଟିଏ ଖିଆଲ ପଶି ଯାଇଥିଲା ତା ମୁଣ୍ଡରେ । ଅଳି କଲା ସେଇ୍ ଚାନ୍ଦ ତାର ଦରକାର ।

ବାପାଙ୍କର କାନ୍ଧରେ ଥାଇ ଅଧିର ହୋଇ କାନ୍ଦୁଥାଏ, ''ମୋତେ ସେଇ ଜହ୍ନମାମୁଁ ଆଣି ଦିଅ ବାପା, ମୁଁ ସେଇ ଜହ୍ନମାମୁଁ ନେବି ।'' ଅଳିଅଳି ଝିଅଁକୁ ଯେତେ ଯାହା ଦେଲେ ବି ସେ କୌଣସିଥିରେ ଶାନ୍ତି ହେଲା ନାହିଁ । ଚାନ୍ଦିନୀର ସବୁଇଚ୍ଛା ପୂରଣ କରୁଥିଲେ ବାପା, କିନ୍ତୁ ଏ ପ୍ରକାର ଜିଦ୍ଦିକୁ ବା କିଏ ପୂରଣ କରିପାରିବ ?

ଜିଦ୍‌ରେ ଅଟଳ ଚାନ୍ଦିନୀ କାନ୍ଦି କାନ୍ଦି ଶୋଇ ପଡ଼ିଲା । ନଖାଇ ନ ପିଇ ହାଲିଆ ହୋଇ ଶୋଇ ପଡ଼ିଥିଲା ସେଦିନ । କିନ୍ତୁ ସକାଳୁ ଆଖି ଖୋଲୁ ଖୋଲୁ ବାପାଙ୍କ ହାତରେ ଚାନ୍ଦକୁ ଦେଖି ଖୁସିରେ ପାଗଳ ହୋଇ ଉଠିଥିଲା ଚାନ୍ଦିନୀ ।

ସାରା ରାତି ଅନିଦ୍ରା ରହି ବାପା ଛୁମନ୍ତର କରି ଆକାଶରୁ ମୋ ପାଇଁ ଚାନ୍ଦ ତୋଳି ଆଣିଛନ୍ତି ।

ମୋର ଆଉ ସେଥିରେ ମୁଣ୍ଡ ଖେଳାଇବାର ଅବସର ନଥିଲା । ବାପାଙ୍କ

କଥାକୁ ସତ ବୋଲି ଧରି ନେଇଥିଲି ।

ତୁମର ରୂପା ତିଆରି ସେଇ ଚାନ୍ଦଟି ମୋ ପାଖରେ ଏବେ ବି ରହିଛି ବାପା । ଆକାଶକୁ ଅନାଇ ଭୋ ଭୋ କରି କାନ୍ଦୁଥାଏ ଚାନ୍ଦିନୀ ।

× × ×

ସେତେବେଳ ମୁଁ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ପଢୁଥିଲି । ଚାଲି ଚାଲି ଦୁଇ ତିନି କିଲୋମିଟର ଗଲେ ଯାଇ ଆମ ସ୍କୁଲ । ମୋ ବେଳରେ ଝିଅ ପିଲା ପଢ଼ିବା ସଂଖ୍ୟା ବହୁତ କମ୍ । ଆମ କ୍ଲାସ୍‌ରେ ଆମେ ମାତ୍ର ଚାରିଜଣ ପଢୁଥିଲୁ । ଆମକୁ ସମସ୍ତେ ଭାରି ଚିଡ଼ଉଥିଲେ ।

ଝିଅ ପିଲା ପୁଣି ପାଠ କ'ଣ ପଢ଼ିବ । ରାମାୟଣ, ମହାଭାରତ ପୁରାଣ ପଢ଼ି ଜାଣିଲେ ହେଲା ।

ବାପା କିନ୍ତୁ କହୁଥିଲେ, ''ମୋ ଚାନ୍ଦିନୀ ଯେତେ ପାଠ ପଢ଼ିବ, ମୁଁ ପଢ଼େଇବି ।'' ସାର୍ କହୁଥିଲେ ଚାନ୍ଦିନୀ ଭଲ ପଢୁଛି । ବାପା, ସାରଙ୍କ କଥାରେ ଉତ୍‌ଫୁଲ୍ଲିତ ହୋଇ ଉଠୁଥିଲେ ।

ଥରେ ବଡ଼ ମାଆ କହିଥିଲେ, ଦେଖ ଚାନ୍ଦିନୀ, ପାଠ ପଢ଼ କି ଯାହା ବି କର ଘର କାମ ଟିକେ ଟିକେ ଭାଉଜଙ୍କ ଠାରୁ ଶିଖୁଥାଅ । ଝିଅ ପିଲା ନିଶ୍ଚେ ଶାଶୁ ଘରକୁ ତ ଯିବାକୁ ପଡ଼ିବ । ତା ଛଡ଼ା ବିଭା ବୟସ ବି ତୋର ହେଲାଣି । ମାଆ ବି ବଡ଼ ମାଆ ସଙ୍ଗେ ଯୋଡ଼ି ହୋଇ କେତେ କଥା କହିଲେ । ମୁଁ କାନ୍ଦି କାନ୍ଦି ବାପାଙ୍କ ପାଖରେ ଯାଇ ପହଞ୍ଚିଲି । ବାପା ପାନ ବରଜରେ କାମ କରୁଥିଲେ । ମୋର ଥମ ଥମ ମୁହଁକୁ ଦେଖି ସବୁ ଯେପରି ସେ ବୁଝି ଯାଇଥିଲେ । ତାଙ୍କ ନାଲି ଗାମୁଛାଟିରେ ମୋର ଲୁହ ଗୁଡ଼ିକୁ ସାଉଟି ନେଲେ ସେ ।

''ତୁ ଘରକୁ ଯାଆ ଚାନ୍ଦିନୀ, ମୁଁ ଗଲେ ତୋ କଥା ବୁଝିବି ।'' ମୁଁ ସେଠାରୁ ଆସି ଘର ଭିତରେ ମୁହଁ ମାଡ଼ି ଶୋଇ ପଡ଼ିଲି ।

ବାପା ଆସି ଗାଧୁଆ ସାରି ଖାଇବାକୁ ବସିଛନ୍ତି ।

ମାଆଙ୍କୁ ପଚାରିଲେ ଚାନ୍ଦିନୀ କାହିଁ ?

'ରଷିକରି ଶୋଇଛି', ମାଆଙ୍କର ଛୋଟ ଉତ୍ତର ।

ସେଇଥିରେ ବାପାଙ୍କର ରାଗ ପଞ୍ଚମକୁ ଚଢ଼ିଗଲା । କ'ଣ ନାହିଁ କ'ଣ ଶୋଧି ପକାଇଲେ ମାଆଙ୍କୁ । ବାପା ବି ଖାଇବା ଥାଳିରୁ ସେମିତି ଉଠି ଚାଲିଗଲେ । କାହାରି ପାଟିରେ ଭାଷା ନଥିଲା ।

ପିଲାଟା ପାଠ ପଢୁଛି, ତାକୁ ଉତ୍ସାହିତ କରିବ ନା ତା ମନ ଭାଙ୍ଗି ଦେବାର ସମସ୍ତ ବ୍ୟବସ୍ଥା କରିବ । ଘରେ ଚାଲିଲା କନ୍ଦାକଟା । କେହି ଖାଇ ନାହାନ୍ତି । ବାପା

ଆସି ମୋ ମୁଣ୍ଡରେ ହାତ ବୁଲାଇଲେ । ସେତେବେଳକୁ ମୋ ରାଗ ଶାନ୍ତ ପଡ଼ି ଯାଇଥାଏ । ତାପରେ ବାପାଙ୍କ ସହିତ ମୁଁ ଖାଇ ବସିଲି ।

ମାଆ ଅନ୍ୟମାନଙ୍କୁ ଡାକି ଖାଇବାକୁ ଦେଲେ ।

ବାପାଙ୍କର ଇଚ୍ଛା, ମୁଁ ବହୁତ ପାଠପଢ଼ିବି । କୋଟିକରେ ଗୋଟିଏ ହୋଇ ଚାନ୍ଦିନୀ ପରି ସଭିଙ୍କୁ ଚମକାଇ ଦେବି । ସେଇଥିପାଇଁ ମୋ ନାମ ଦେଇଥିଲେ ଚାନ୍ଦିନୀ ।

× × ×

ମ୍ୟାଟ୍ରିକ୍ ପରୀକ୍ଷା ମୁଣ୍ଡ ଉପରେ । ଜୋର୍ ସୋର୍‌ରେ ପାଠ ପଢ଼ା ଚାଲିଥାଏ । ସକାଳୁ ଉଠି କୋଚିଂ କ୍ଲାସ ଦଉଡ଼ିବାକୁ ପଡ଼େ । ମୋର ଜଣେ ସାର୍ ଆମରି ଗାଁର । ତାଙ୍କ ସହିତ ଯିବା ଆସିବା କରିବାକୁ ବାପା କହିଦେଇଥିଲେ ।

ଇତି ମଧ୍ୟରେ ବାପାଙ୍କର କାଶଟା ବଢ଼ି ଯାଇଥାଏ । ଅଧିକାଂଶ ସମୟରେ ଦେହ ଖରାପ ରହେ । ଭିତରେ ଭିତରେ ଭାରି ଦବି ଯାଇଥାନ୍ତି ବାପା ।

ମୁଁ ଦିନେ ସନ୍ଧ୍ୟାରେ ଗୋଡ଼ ହାତ ଧୋଇ ଠାକୁରଙ୍କୁ ମୁଣ୍ଡିଆ ମାରି ପଢ଼ିବାକୁ ବସିଥାଏ । ଲଣ୍ଠନଟିଏ ଲଗାଇ ଭାଉଜ ଆଗରୁ ଦାଣ୍ଡରେ ଥୋଇ ଦେଇ ଯାଇଥିଲେ ।

ବାପା ମୋତେ ତାଙ୍କ ପାଖକୁ ଡାକିଲେ ।

ମାଆ, ବାପାଙ୍କ ଛାତିରେ କ'ଣ ତେଲ ସବୁ ମାଲିସ୍ କରୁଥାନ୍ତି । ପାଖରେ ବସିପଡ଼ି ଦେହରେ ହାତ ବୁଲାଉ ବୁଲାଉ ପଚାରିଲି ବହୁତ କଷ୍ଟ ହେଉଛି କି ବାପା ! ଘଷି ଦେବି । ମୋର ଏତିକି କଥାରେ ବାପାଙ୍କ ଆଖିରୁ ଦୁଇଧାର ଲୁହ ବହି ଗଲା । ମୁଁ ସେତେବେଳକୁ ଅନେକ କଥା ବୁଝି ଗଲିଣି । ମୋ ଭିତରେ ଆଉ ସେ ଅଝଟ ପଣ ନଥାଏ । ଘର କାମରେ କେତେବେଳେ କେମିତି ସାହାଯ୍ୟ କରେ ଭାଉଜଙ୍କୁ, କିନ୍ତୁ ଭାଉଜ ମନା କରନ୍ତି । ଭାଉଜଙ୍କୁ ଜବରଦସ୍ତ ଉଠାଇ ଦେଇ ଚୁଲି ମୁଣ୍ଡରେ ବସିଯାଏ ମୁଁ । ଭାଉଜ ମିଛରେ କହନ୍ତି, ହେଇ ଚାନ୍ଦିନୀ, ବାପା ଆସିଲେଣି ଯେ । ବାପାଙ୍କ କଥା ଶୁଣି ମୁଁ ସେଠାରୁ ଦଉଡ଼ି ପଳାଇଯାଏ । ବାପାଙ୍କ ଆଗରେ କାମ କରିବାକୁ ମୋତେ ଡର ମାଡ଼େ । ମୋ ପାଇଁ ମିଛଟାରେ ସମସ୍ତେ ତ ଗାଳି ଶୁଣିବେ ଓ ମୁଁ ବି ବାଦ୍ ଯିବିନି ସେଥିରୁ ।

ବାପା, ମୋ ରାଣ - ତୁମ ଆଖିରେ ଲୁହ କାହିଁକି କୁହ ବାପା । କହିବି ବୋଲିତ ଡାକିଛି ମାଆ । ମୁଁ ଜାଣେ ମୋ ଚାନ୍ଦିନୀ ମୋ କଥାରୁ କେବେ ବାହାରିଯିବନି ।

କ'ଣ କୁହ ବାପା, ତୁମ ପାଇଁ ମୁଁ ସବୁ କରିପାରିବି ।

ମୋ ଜୀବନ ମାଗିଲେ ବି ଦେଇଦେବି, କିନ୍ତୁ ତୁମେ କାନ୍ଦନି ବାପା ।

ଏପରି କଥା ତୁ କହନି ମାଆ ।

କେମିତି କଥାଟା ପ୍ରକାଶ କରିବେ, ଭାଷା ଗୋଟାଉଥିଲେ ବାପା ।

''ତୁ ତ ବଡ଼ ହେଲୁଣି, ସଂସାର କ'ଣ ଜାଣିଲୁଣି, ଆଉ ମୋର ଏଇ ନିଆଁ ଲଗା ରୋଗଟା, ବୟସ ବୃଦ୍ଧି ସାଙ୍ଗକୁ ଭାରି କଷ୍ଟ ଦେଉଛି । କେତେବେଳେ କୋଉ କଥା । ଭାବୁଛି ଭଲ ବର ଓ ଘର ଦେଖି ତୋତେ ଛନ୍ଦି ଦେଇଯିବି ।''

ଏ କ'ଣ କହୁଛନ୍ତି ବାପା, ଦୁଆର ମୁହଁରେ ଆସି ପରୀକ୍ଷା ହେଲାଣି ମୋ ଜୀବନକୁ ବିକଶିତ କରିବାର ପ୍ରଥମ ପାହାଚ । ଅଥଚ ଏ କି ପରୀକ୍ଷା ପ୍ରଭୁ ! ତଳକୁ ମୁହଁ ପୋତି ବସି ରହିଲି, ମୁହଁରେ ମୋର ଭାଷା ନାହିଁ ।

ମ୍ୟାଟ୍ରିକ୍ ପରୀକ୍ଷା ତୁ ଦେବୁ ମାଆ, ମୁଁ କଥା କରି ନେଇଛି । ତୋ ପାଇଁ ମୋ ହାତ ମୁଠାକୁ ଚାନ୍ଦଟିଏ ଆସିଛି ଚାନ୍ଦିନୀ । ତାଙ୍କର ସେ ଦିନର ସେଇ ସ୍ନେହ ସଜଳ ମୁହଁଟି ଏବେବି ମନେ ପଡ଼େ ମୋର । ଆଉ ମୋର ସମସ୍ତ ଦୃଢ଼ତା ହାର ମାନି ଯାଇଥିଲା ସେଇ ମଣିଷଟି ପାଖରେ । ଚୁପ୍ ହୋଇ ବସି ରହିଥିଲି ମୁଁ । ପରୀକ୍ଷାକୁ ମାତ୍ର ଆଉ ଦୁଇ ମାସ ବାକି ଅଛି ।

ଏକ ଶୁଭବେଳାରେ ମୋର ବିଭାଘର ସମ୍ପନ୍ନ ହୋଇଗଲା । ପରଘରୀ ହୋଇଗଲି ମୁଁ । ତୁମରି ଆଶୀର୍ବାଦ ଫଳିଛି ବାପା, ମୋ ଜୀବନକୁ ଆଲୋକିତ କରିଛି । ତୁମରି ଝିଅ ଭାବରେ ଗର୍ବରେ ବାଟ ଚାଲୁଛି ଚାନ୍ଦିନୀ । ତାର ନିଜସ୍ୱ ଆଲୋକ ହୁଏତ ମଳିନ ପଡ଼ି ଯାଇଛି ତେଜିୟାନ ସୂର୍ଯ୍ୟ ପାଖରେ । ସୂର୍ଯ୍ୟ କିନ୍ତୁ କିଛି କିରଣ ବିଞ୍ଚି ଦେଇ ତାକୁ ଧନ୍ୟ କରିଛି ବାପା ?

ସୂର୍ଯ୍ୟକାନ୍ତଙ୍କ ହାତ ଧରି ଯେବେ ଶାଶୁ ଘରକୁ ଆସିଲି, ବହୁତ ଶଙ୍କି ଯାଇଥିଲି ମୁଁ । ମୋ ଠାରୁ ସମସ୍ତେ ଟିକେ ଦୂରତା ରଖି ଚାଲୁଥିଲେ, କାରଣ ମୁଁ କୁଆଡ଼େ ପାଠପଢ଼ା ବୋହୂ । ମାତ୍ର ଆଠଦିନ ଅଷ୍ଟମଙ୍ଗଳା ପର୍ଯ୍ୟନ୍ତ ରହିଥିଲି ମୁଁ । କଥାନୁସାରେ ମୋତେ ପରୀକ୍ଷା ଦେବାକୁ ପଡ଼ିବ । ସେଇ ଆଠ ଦିନ ଭିତରେ ଅନୁଭବ କରିଥିଲି, ସତରେ ବାପା ମୋ ପାଇଁ ଚାନ୍ଦ ନୁହେଁ, ତେଜିୟାନ ସୂର୍ଯ୍ୟଟିଏ ଖୋଜି ଆଣି ଦେଇଛନ୍ତି । ସୂର୍ଯ୍ୟକାନ୍ତଙ୍କ ଦେହର ଉତ୍ତାପ ମାଖି ଯାଇଥିଲା ମୋର ସମଗ୍ର ଶରୀରରେ । ପରୀକ୍ଷା ଦେବି କି ନାହିଁ ଭାବିପାରିଲିନି । ସୂର୍ଯ୍ୟକାନ୍ତ ଶପଥ କରି ନେଇଛନ୍ତି, ମୋତେ ଭଲ ନମ୍ବର ରଖି ପାଶ୍ କରିବାକୁ ପଡ଼ିବ । ଧେତେରିକା ସୂର୍ଯ୍ୟକାନ୍ତ କଥା ମନେ ପଡ଼ି ମୁହଁଟା ଲାଲ ହୋଇ ଉଠିଲା ମୋର । ଲାଜରେ ଝାଉଁଳି ପଡ଼ିଲି ମୁଁ । ଏତିକିବେଳେ ବାହାରେ ରୂପାର ଡାକ ଶୁଭିଲା । ବାଟ ବଦଳେଇ ଆସିଛି କୋଚିଂକ୍ଲାସ ଯିବାକୁ । ଘର ପଛପଟେ ଟ୍ୟୁବ୍‌ୱେଲ୍‌ରେ ମୁହଁ ଧୋଉଥିଲି । ରୂପାର ଡାକ ଶୁଣି ଦଉଡ଼ି ଆସି ତାକୁ କୁଣ୍ଢାଇ ପକାଇଲି । ସତେ କି ମୁଁ ତାକୁ କେତେ ବର୍ଷ ଧରି ଦେଖି ନଥିଲି । ତାପରେ ତରବର ହୋଇ ରଫ୍ ଖାତା ଓ ପେନ୍‌ଟିଏ ଧରି ଚାଲିଲି ରୂପା ସାଙ୍ଗେ କୋଚିଂ କ୍ଲାସ ।

ବାପା ତୁମର ଆଶୀର୍ବାଦ ମୋ ଉପରେ ଥିଲା, ନ ହେଲେ ମୁଁ କ'ଣ ଭଲ ନମ୍ବର ପାଇଁ ପାଶ୍ କରି ପାରିଥାଆନ୍ତି । ମୋ ବିଭାଘର ପରେ ପରେ ବାପା ଅଧିକାଂଶ ସମୟ ପୀଡ଼ିତ ଅବସ୍ଥାରେ ରହୁଥିଲେ । ବାପାଙ୍କୁ ଛାଡ଼ି ଆସିବାକୁ ମୋର ତିଳେ ବି ଇଚ୍ଛା ନଥାଏ । ମାତ୍ର ସୂର୍ଯ୍ୟକାନ୍ତ ଆସି ବାପାଙ୍କ ପାଖରେ ବସି ସୁଖ ଦୁଃଖ, ସ୍ୱାସ୍ଥ୍ୟ ଖବର ବୁଝି ବୁଝି ମୋର ଯିବା କଥାରେ ଅନୁମତି ନେଇ ଆସିଲେ ।

ସୂର୍ଯ୍ୟକାନ୍ତଙ୍କର ପୋଷ୍ଟିଂ ହୋଇଥାଏ ଭୁବନେଶ୍ୱରରେ । ଗୋଷ୍ଠୀ ଉନ୍ନୟନ ବିଭାଗର ଜଣେ ବରିଷ୍ଠ ଅଫିସର ଭାବରେ । ବାପାଙ୍କୁ କଥା ଦେଇଥିଲେ ମଝିରେ ମଝିରେ ଆଣି ମୋତେ ବୁଲେଇ ନେଇଯିବେ ।

ଭୁବନେଶ୍ୱର ଆସି ମୁଁ ଭାରି ଏକୁଟିଆ ହୋଇ ଯାଇଥିଲି । ସୂର୍ଯ୍ୟକାନ୍ତ ଅଫିସ୍ ଚାଲିଗଲେ ଘରେ ମୋତେ ଏକାକୀ ରହିବାକୁ ହୁଏ । ମ୍ୟାଟ୍ରିକ ରେଜଲ୍ଟ ଭଲ ହୋଇଥିବାରୁ ସୂର୍ଯ୍ୟକାନ୍ତ ମୋତେ ରମାଦେବୀ କଲେଜରେ ଆର୍ଟସ୍ ନେଇ ପଢ଼ିବା ପାଇଁ ଏଡ୍‌ମିଶନ୍ କରାଇ ଦେଲେ । ସେ ବୋଧହୁଏ ବୁଝି ପାରିଥିଲେ ଘରେ ବସି ବସି ମୁଁ ଭାରି ବୋର ହେଉଥିଲି ବୋଲି । ବାପା ଖବର ପାଇ ମୋ ପାଖକୁ ଚିଠି ଦେଇଥିଲେ । ଚିଠିରୁ ତାଙ୍କର ଖୁସି ବାରି ହୋଇ ପଡୁଥାଏ । ଦିନ ଗୁଡ଼ିକ ବେଶ୍ ଆନନ୍ଦରେ କଟିଯାଏ ମୋର । ସୂର୍ଯ୍ୟକାନ୍ତଙ୍କୁ ପାଇ ମୁଁ ଅନୁଭବ କରିଥିଲି, ସେ ମୋ ବାପାଙ୍କର ଦ୍ୱିତୀୟ ଅବତାର । ଭକ୍ତିରେ ମୋର ମୁଣ୍ଡ ନଇଁଯାଏ ତାଙ୍କରି ମହାନତା ଆଗରେ । ସ୍ୱାମୀ ଓ ସ୍ତ୍ରୀର ସମ୍ପର୍କ ବୋଧହୁଏ ମୋର ସେମିତି ମୁଣ୍ଡରେ ପଶି ନଥିଲା । ଶାଶୁ ଘରକୁ ଆସି ବି ଝିଅ ପରି ବୁଲୁଥିଲି, ଖାଉଥିଲି ଓ ପାଠ ପଢୁଥିଲି । ଶାଶୁ ବି ସେମିତି ମାଆ ପରି ସରଳ ଓ ସ୍ନେହୀ ମଣିଷଟିଏ ଥିଲେ । ଆଜି ତାଙ୍କ କଥା ମନେ ପଡ଼ି ମନଟା ମୋର ଓଦାଳିଆ ହୋଇଯାଏ ।

ଦୁଇ, ତିନି ମାସ ଅନ୍ତରରେ ଡିଉଟି ପକାଇ ସୂର୍ଯ୍ୟକାନ୍ତ ଗାଁକୁ ଆସୁଥିଲେ । ଆସିବା ମାତ୍ରେ ବାପାଙ୍କୁ ଭେଟିବାକୁ ଯାଉଥିଲି । ବାପା ଆମ ଦୁହିଁଙ୍କୁ ଆଶୀର୍ବାଦ କରି କହୁଥିଲେ 'ତୁମେ ଦୁହେଁ ସୁଖୀ ହୁଅ' ଏହା ମୋର ଅନ୍ତିମ ଇଚ୍ଛା । ଯେବେ ବି ଯାଉଥିଲି ବାପାଙ୍କୁ ଦେଖିବାକୁ ବାପାଙ୍କର ଅତିପ୍ରିୟ ବ୍ରିଟାନିଆ ବିସ୍କିଟ୍ ଟିଣଟିଏ ନିଶ୍ଚେ ନେଇଥିବି । ଫେରିବା ବେଳକୁ ବାପାଙ୍କ ହାତରେ ଧରେଇ ଦେଇ ଆସୁଥିଲି ଦୁଇଶ / ତିନିଶହ ଟଙ୍କା । ବାପା ତାଙ୍କ ମନଇଚ୍ଛା ଖର୍ଚ୍ଚ କରିବେ । ବାପା କିନ୍ତୁ ମନା କରୁଥିଲେ । ମୁଁ ଜବରଦସ୍ତି କରି କହୁଥିଲି, ବାପା 'ମୁଁ ଯଦି ତୁମର ପୁଅଟିଏ ହୋଇଥାନ୍ତି?' ବାପା ହସି ଦିଅନ୍ତି । ସେଇ ହସଟି ଏଯାଏ ଲିଭିନି ମୋ ମନରୁ ବାପା ।

ପଞ୍ଚାୟତି ରାଜ ବିଭାଗର ଜଣେ ବରିଷ୍ଠ ଅଫିସର ହୋଇଥିବାରୁ ସୂର୍ଯ୍ୟକାନ୍ତ ଅବାଧରେ ବିଭିନ୍ନ ଉନ୍ନୟନ ମୂଳକ କାର୍ଯ୍ୟ ନିଜ ଜନ୍ମ ମାଟି ପାଇଁ କରିପାରିଥିଲେ ।

କ୍ରମେ କ୍ରମେ ତାଙ୍କର ନାଁ ସେ ଅଞ୍ଚଳରେ ବିଖ୍ୟାତ ହେଲା । ରାସ୍ତା ଘାଟ, ପାଣି ସମସ୍ୟା, ସ୍ୱାସ୍ଥ୍ୟ ସେବା, କୃଷି ପ୍ରଭୃତି କ୍ଷେତ୍ରରେ ବିଭାଗ ମାନଙ୍କରୁ ଅଧିକ ଟଙ୍କା ମଞ୍ଜୁର କରି କାର୍ଯ୍ୟ କରି ପାରୁଥିଲେ । ଗାଁକୁ ଆସିଲେ ଘରେ ଦଣ୍ଡେ ଦେଖିବାକୁ ମିଳେନି ତାଙ୍କୁ । ଗାଁ, ଗାଁର ସମସ୍ୟାରେ ମାତି ଥାଆନ୍ତି ସେ । ସେ ଅଞ୍ଚଳରେ ସମସ୍ତଙ୍କ ଠାରେ ସେ ଅତି ପ୍ରିୟ ହୋଇ ଉଠିଥିଲେ । ଜ୍ୱାଇଁଙ୍କର ପ୍ରଶଂସାରେ ବାପା ଗଦ୍‌ଗଦ୍ ହୋଇ ଯାଆନ୍ତି, କହୁଥିଲେ ସେ ଜ୍ୱାଇଁ ନୁହେଁ, ପୁଅଟିଏ ପାଇଛନ୍ତି ।

ସେଦିନ ଏକ ମୁହୂର୍ତ୍ତ ଥିଲା, ଅଭୁଲା ଅତୀତଟିଏ । କୁଆଡୁ ଦିନମାନ ବୁଲି ବୁଲି ସନ୍ଧ୍ୟା ସମୟକୁ ଆସି ବାପାଙ୍କର ଶୋଇବା ବିଛଣାରେ ଧପ୍‌କିନି ବସିପଡ଼ିଲେ ସୂର୍ଯ୍ୟ । ବହୁତ ହାଲିଆ ହୋଇ ପଡ଼ିଥିଲେ ସେ । ବାପା ସୂର୍ଯ୍ୟକାନ୍ତଙ୍କୁ ଦେଖି ମୋତେ ଡାକ ପକାଇଲେ । ଭାଉଜ ଓ ମୁଁ ଚୁଲି ମୁଣ୍ଡରେ ବସି ଗପରେ ମଜି ଯାଇଥିଲୁ ।

କ'ଣ ହେଲା ବାପା ବୋଲି ଧାଇଁ ଆସିଲି ଓ ମୋ ପଛେ ପଛେ ମାଆ, ବଡ଼ ମାଆ, ଭାଉଜ ବି ।

ସୂର୍ଯ୍ୟକାନ୍ତଙ୍କୁ ବସିଥିବାର ଦେଖି ମୁଁ ଟିକିଏ ଆଶ୍ୱସ୍ତ ହେଲି ।

ଦେହ ମୁଣ୍ଡରେ ହାତ ବୁଲାଇ ପଚାରିଲି, ଏମିତି ଚିତ୍କାର କାହିଁକି କରୁଥିଲ ବାପା, ତୁମେ ସମସ୍ତଙ୍କୁ ଡରାଇଦେବ, କହି ମୁଁ ମୋ ଛାତିରେ ଥୁ ଥୁ କରି ଛେପ ପକାଇ ଦେଲି ।

ନାଇଁ ମ ! ସୂର୍ଯ୍ୟକାନ୍ତଙ୍କ ଅବସ୍ଥା ଦେଖି ମୁଁ ଛାନିଆରେ ଡାକ ପକାଇଲି ।

ଅବସ୍ଥା ଆଉ ହୁଅନ୍ତାନି । ସେଇ ସକାଳୁ ବାହାରି ଯାଇଛନ୍ତି ଯେ, ଏତେବେଳେ ବାବୁ ଆସୁଛନ୍ତି ଘରକୁ ।

ତୁମେ ଗୋଟିଏ କାମକର ଚାନ୍ଦିନୀ, ଦୁଇଖଣ୍ଡ ସପ ଆଣି ପାରିଦିଅ ।

କାହିଁକି କ'ଣ ହୋଇଛି, କ'ଣ ଆମ ଘରେ ଗୋଟିଏ ଜୋରଦାରିଆ ମିଟିଂ ହେବ ନା କ'ଣ ?

ଗାଁରୁ କିଛି ଲୋକ ଆସୁଛନ୍ତି । ମାଆଙ୍କୁ କହିଦିଅ କିଛି ସାଦା, କଡ଼ା ମିଶାଇ ପାନ ଭାଙ୍ଗି ଦେବେ । ଆଉ ଟିକିଏ ପରେ ସବୁ କଥା ଜାଣି ଯିବନି ?

ଦାଣ୍ଡରେ ଘୋଷ ଘୋଷ ଶବ୍ଦ । ଗାଁ ଲୋକେ ଭର୍ତ୍ତି ହୋଇ ଯୁକ୍ତିତର୍କ ଚାଲିଛି । ଇଲେକ୍‌ସନ୍ ଆସିଛି, ସେମାନେ ଆସିଛନ୍ତି ବାପାଙ୍କ ପାଖରୁ ରାୟ ନେବାକୁ ।

କିଛି ସମୟ ପରେ ରାଧୁ ଦାଦା ଉଠିପଡ଼ି କହିଲେ, ପଣ୍ଡୁଭାଇ ପଞ୍ଚାୟତ ଇଲେକ୍‌ସନ୍ ଆସିଛି । ସବୁବର୍ଷ ଗୋଟିଏ ଅଲଗା ଥିଲା । କିନ୍ତୁ ଏ ବର୍ଷ ନୂଆ ନୀତି, ନୂଆ ନିୟମ ହୋଇଛି । ରିଜର୍ଭେସନ୍ ହୋଇଯାଇଛି, ଝିଅ ବୋହୂମାନେ ବି ଇଲେକ୍‌ସନ୍ ଲଢ଼ିବେ । ଆମର ଏ ପଞ୍ଚାୟତର ସଦସ୍ୟ ଆସନ ମହିଳାଙ୍କ ପାଇଁ ସଂରକ୍ଷିତ

ହୋଇଯାଇଛି । ଆମେ ସମସ୍ତେ ସୂର୍ଯ୍ୟକାନ୍ତଙ୍କ ସଙ୍ଗେ କଥା ହୋଇଛୁ । ଆମେ ଆମର ଚାନ୍ଦିନୀକୁ ଠିଆ କରେଇବୁ, ସେ ହେବ ଆମ ବ୍ଲକ୍‌ର ଚେୟାରମ୍ୟାନ । ସରକାରୀ କଥା ନେଇ ଆଣି ଥୋଇବା ଭଳି ଆଉ କେହି ଦୁଃଖୁ ନାହାନ୍ତି, ଚାନ୍ଦିନୀ ଆମର ପାଠୁଆ ଝିଅ, ତାକୁ ଏ ସବୁ ବଳେଇଯିବନି ।

ବାପା କହିଲେ, ଆରେ ମୋତେ କ'ଣ ପଚାରୁଛ, ସୂର୍ଯ୍ୟକାନ୍ତ ଯେବେ ରାଜି, ମୋର ଅମତ ହେବାର କାରଣ ନାହିଁ । ସେ ଦିନ ମୋ ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ କରିଥିଲେ ବାପା ।

ଚେୟାରମ୍ୟାନ୍ ଭାବେ ଶପଥ ନେଲି । ସେଦିନ ଥିଲା ମୋ ଜୀବନ ଧାରାର ଅନ୍ୟ ଏକ ପାହାଚ । ଜଗନ୍ନାଥଙ୍କୁ ଜଣାଇଲି, ମୋ ଜୀବନର ଖୁସି ତୁମ ହାତରେ ପ୍ରଭୁ । ବାପା ମୋତେ ସତର୍କ କରି ଦେଇଥିଲେ, ଭଲ କାମ କରି ଖୁବ୍ ନାଁ କରିବୁ ଚାନ୍ଦିନୀ, ହେଲେ ମନେ ରଖିବୁ ଏ ପଥଟି ଏତେ ସହଜ ନୁହେଁ ।

ପ୍ରକୃତରେ ମୋତେ ଭାରି କଷ୍ଟ ହେଉଥାଏ । ସମସ୍ୟା ହିଁ ସମସ୍ୟା, ଯେମିତି ତାର ଅନ୍ତ ନାହିଁ । ଜନ ଜୀବନ ସହିତ ଜଡ଼ିତ ହୋଇ ପଡ଼ିଥିଲି ମୁଁ । ନିଜ ଲୋକଙ୍କ ପାଖରେ ବସି ଟିକେ ସୁଖ ଦୁଃଖ ହେବାକୁ ବି ମୋ ପାଖରେ ସମୟ ନାହିଁ । ବାପାଙ୍କର ଅଭିମାନ ଭରା ଅଭିଯୋଗ ଶୁଣିବାକୁ ହୁଏ ।

ବାପାଙ୍କ ଦେହର ଅବସ୍ଥା କ୍ରମେ ଖରାପ ଆଡ଼କୁ ଗତି କରେ । ବୟସ ବୃଦ୍ଧି ସାଙ୍ଗକୁ ଆଜକୁ ଦଶ/ବାର ବର୍ଷ ହେବ ଭୋଗୁଛନ୍ତି ଆଜ୍‌ମାରେ । ରାତି ରାତି ଅନିଦ୍ରାରେ କଟିଯାଏ ତାଙ୍କର । ମୁହଁର ହନୁହାଡ଼ ବାହାରି ପଡ଼ିଛି ଓ ଚକ୍ଷୁ ଦୁଇଟି କୋଟରଗତ, ମାଂସପେଶୀ ଧୁଡୁ ଧୁଡୁ ହୋଇଗଲାଣି । ଦୂରରୁ ଦେଖିଲେ ଜଣାଯାଏ ଏକ କଙ୍କାଳସାର ମଣିଷଟିଏ । କେବେ କେତେବେଳେ ଯେ ବାପା, ଆମକୁ ଛାଡ଼ି ଚାଲିଯିବେ ଭାବି ମୁହଁଟା ମୋର ଶୁଖିଯାଏ ।

ମୋର ଶୁଖିଲା ମୁହଁ ଓ ଚାହାଣୀରୁ ବାପା ଯେମିତି ସବୁ ବୁଝି ନିଅନ୍ତି । ମୋର ଅବସ୍ଥା ଦେଖି ତୁ ଦୁଃଖ କରୁଛୁ ଚାନ୍ଦିନୀ, ଆରେ ଜୀବନ ମୃତ୍ୟୁ ତ ଏ ସଂସାରର ଖେଳ, ଜୀବ ମାତ୍ରେ ମୃତ୍ୟୁ ଅବଶ୍ୟମ୍ଭାବୀ । ତୋତେ ଦେଖିଲେ ମୋ ମନଟା ପୁରିଯାଏ, କେଜାଣି କାହିଁକି ମୁଁ ମୋର ସବୁ କଷ୍ଟ ଭୁଲିଯାଏ । ଝିଅ ହୋଇ ତୁ ତ ପୁଅଠାରୁ ବଳି କାମ କରି ପାରୁଛୁ, ତୋ ପାଇଁ ମୁଁ ଗର୍ବ କରେ ଚାନ୍ଦିନୀ । ମୋର ସବୁ ଇଚ୍ଛା ପୂରଣ ହୋଇଛି ।

ମୋ ହାତଟିକୁ ଧରି ପକାଇ କହିଲେ, ସୂର୍ଯ୍ୟକାନ୍ତଙ୍କୁ ଦେଖିବାକୁ ମନଟା ଉଚ୍ଚାଟ ହେଉଛି । କଥା ଗୁଡ଼ିକ ପାଟିରେ ଲାଖି ଯାଉଥାଏ, କିଛିଟା ଅସ୍ୱଭାବିକ ।

ବାପାଙ୍କର କଥା ଗୁଡ଼ିକ କେମିତି ବେଖାପ ଶୁଣାଯାଉଥିଲା ।

ସେଦିନ ବ୍ଲକରେ ଏକ ଜରୁରୀ ମିଟିଂ ଚାଲିଥାଏ । ହଠାତ୍ ଖବର ଆସି ପହଞ୍ଚିଲା, ବାପା ଖୁବ ଅସୁସ୍ଥ ହୋଇ ପଡ଼ିଛନ୍ତି । ମିଟିଂ ସ୍ଥଗିତ ରଖି ସେମିତି ବ୍ଲକ୍ ଜିପ୍‌ରେ ଯାଇ ପହଞ୍ଚିଥିଲି । ପୁଅ ବି ମଟର ସାଇକେଲରେ ଆସି ପହଞ୍ଚିଲା ଅଜାଙ୍କର ଖବର ପାଇ । ବାପା, ନିଶ୍ୱାସ ପ୍ରଶ୍ୱାସ ନେଇ ପାରୁନାହାନ୍ତି । ଡାକ୍ତର ବାବୁଙ୍କୁ ସାଙ୍ଗରେ ଧରି ଯାଇଥିଲି ମୁଁ । ନାତିର ହାତକୁ ଛାତିରେ ଚାପି ଧରି ଖନେଇ ଖନେଇ ବାପା କହୁଥାନ୍ତି, ଭାରି ଜ୍ୱାଳା ... ହେ..... ଉ... ଛି... ରେ ।

ମୁଁ ମୁଣ୍ଡ ପାଖରେ ବସିପଡ଼ି କହିଲି, ବାପା ବ୍ୟସ୍ତ ହୁଅନା, ଡାକ୍ତର ବାବୁ ଆସିଛନ୍ତି, ସବୁ ଠିକ୍ ହୋଇଯିବ ।

ବାସ୍ ମୋର ଏଇ ପଦିକ କଥାରେ ସବୁ ଯେମିତି ଠିକ୍ ଠାକ୍ ହୋଇଗଲା । ଡାକ୍ତରବାବୁ ଚେକ୍‌ଅପ୍ କରି କହିଲେ, ସବୁ ନର୍ମାଲ ଅଛି, ଦୁର୍ବଳତା ବଢ଼ି ଯାଇଛି । ଗୋଟିଏ ଇଞ୍ଜେକ୍‌ସନ୍ ଓ ସେଲାଇନ୍ ଦେବା ଆବଶ୍ୟକ । ମୁଁ ସାଥିରେ ନେଇଥିବା ବେଦନାରୁ କିଛି ବାହାର କରି ରସ ଚିପୁଡ଼ି ଚାମଚରେ ପିଆଇ ଦେଲି । ବେଶ୍ ସୁନ୍ଦର ଭାବରେ ଢୋକି ଚାଲିଥାନ୍ତି ବାପା । ଶ୍ୱାସ, ପ୍ରଶ୍ୱାସ ବି ନର୍ମାଲ ହୋଇ ଆସିଲା । ସମସ୍ତେ ଟିକିଏ ଆଶ୍ୱସ୍ତ ହେଲେ ।

ସକାଳ ଠାରୁ କେହି କିଛି ପାଟିରେ ଦେଇ ନାହାନ୍ତି । ମାଆ ବସି କାନ୍ଦୁଥାଏ ବାପାଙ୍କ ଗୋଡ଼ ପାଖରେ ।

ଡାକ୍ତରବାବୁ କହିଲେ, ଯାଆନ୍ତୁ ଆପଣମାନେ କ'ଣ ଟିକେ ଖାଇ ନିଅନ୍ତୁ, ମଉସା ଭଲ ହୋଇଗଲେଣି ।

ଇଞ୍ଜେକ୍‌ସନ୍ ଦେଇ, ଡାକ୍ତର ବାବୁ ପୁଣି ସେଲାଇନ୍ ଲଗେଇ ଦେଇ ଚାଲିଗଲେଣି । ସମସ୍ତଙ୍କୁ ଖାଇବାକୁ ପଠାଇ ଦେଇ ମୁଁ ଏକୁଟିଆ ଜଗି ବସିଲି ବିଛଣାରେ । ବାପା ମଝିରେ ମଝିରେ ଶୋଇ ପଡୁଥାଆନ୍ତି, ଯେମିତି ଅର୍ଦ୍ଧ ଚୈତନ୍ୟ ଅବସ୍ଥା ।

ସମୟ ସନ୍ଧ୍ୟା ପାଞ୍ଚଟା । ଦୂର ଦିଗ୍‌ବଳୟରେ ସୂର୍ଯ୍ୟ ଅସ୍ତାଚଳଗାମୀ । ବନ୍ଧୁ ବାନ୍ଧବ, ସାନ ଭଉଣୀ ଓ ତା' ବର ସାଇପଡ଼ିଶା, ଗାଁ ଲୋକେ ଦେଖିବାକୁ ଆସିଛନ୍ତି ବାପାଙ୍କୁ ।

ହଠାତ୍ ସେଲାଇନ୍ ବନ୍ଦ ହୋଇଗଲା । ପୂନର୍ବାର ସେଇ ଅବସ୍ଥା । ବଡ଼ ଭାଇ ଆସି ସେଲାଇନ୍ ଛୁଞ୍ଚି କାଢ଼ି ଦେଇ ଅକ୍ସିଜେନ୍ ଦରକାର, ହସ୍‌ପିଟାଲ ନେବାକୁ ହେବ ବୋଲି କହିଲେ । ବାପା କେବଳ ଆଖି ମୁଦି ରହିଥାନ୍ତି, ତାଙ୍କୁ ଯେମିତି କିଛି କଷ୍ଟ ଜଣା ପଡୁ ନଥାଏ । ମୁଁ ବାପାଙ୍କ ବିଛଣାରୁ ଉଠି ଗାଡ଼ିଟିଏ ଛକରୁ ଧରି ଆଣିବା ପାଇଁ ଭଣଜାକୁ ପଠାଇ ଦେଲି । ଗାଡ଼ି ଆସିଲା, ମାତ୍ର ବାପାଙ୍କୁ ଆଉ ହସ୍‌ପିଟାଲ୍ ନେବାର ହେଲା ନାହିଁ । ବାପା ବୋଲି କହି ତାଙ୍କ ଉପରେ କଚାଡ଼ି ପଡ଼ିଲି ମୁଁ । ମାଆଙ୍କୁ ତ

ସମ୍ଭାଳିବା ମୁସ୍କିଲ୍ ହୋଇ ପଡ଼ିଥିଲା । ସବୁଦିନ ପାଇଁ ବହୁ ଦୂରକୁ ଚାଲିଗଲେ ବାପା ଆମ ଠାରୁ ।

× × ×

ବାପାଙ୍କର ସ୍ନେହ, ଆଶୀର୍ବାଦରେ ବହୁ ନାଆଁ କମେଇଛି । ହେଲେ ହଜେଇ ଦେଇଛି ଜୀବନର ସୁଖ ଶାନ୍ତି, ଯାହା ପାଇଁ ମଣିଷ ଦେଖେ ବଞ୍ଚିବାର ସ୍ୱପ୍ନ । ସୂର୍ଯ୍ୟକାନ୍ତ ଆଜି କିଛି ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି, ଭଲମନ୍ଦରେ ସେ ମୋ ପାଖରୁ ଦୂରେଇ ଯାଇଛନ୍ତି । କୁହ ବାପା, କ'ଣ କରିବ ତୁମ ଚାନ୍ଦିନୀ, କାହା ପାଖେ ସୁଖ ଦୁଃଖ ହୋଇ ମନକୁ ହାଲୁକା କରିବ । ସେଦିନ ଏଇ ରୂପା ଚାନ୍ଦକୁ ଦେଇ ମୋତେ ତୁମେ ଭୁଲାଇ ଦେଇଥିଲ, ଆଜି ମୋର କିଏ ଲୁହ ପୋଛି ଦେବ ବାପା । ଆକାଶକୁ ଅନେଇ ରହିଥିଲି ମୁଁ । କାହିଁ ତା'ର ତ କିଛି ବି ପରିବର୍ତ୍ତନ ହୋଇନି । ହଠାତ୍ ଆକାଶରୁ ତାରାଟିଏ ଖସିବାର ଦେଖିଲି ମୁଁ । ଆଖି ମୁଦି, ହାତ ଯୋଡ଼ି ଛିଡ଼ା ହୋଇ ମନେ ମନେ ସୂର୍ଯ୍ୟକାନ୍ତଙ୍କୁ ମାଗିଲି । ସେଇ ପୂର୍ବର ଯୁବ ସୁଲଭ ସୂର୍ଯ୍ୟକାନ୍ତ, ଯାହାର କିରଣରେ ମୁଁ ଇନ୍ଦ୍ରଧନୁ ରଚନା କରିଥିଲି । ଅନୁଭବ କଲି ସୂର୍ଯ୍ୟକାନ୍ତ ମୋ ପଛରେ ଆସି ଛିଡ଼ା ହୋଇଛନ୍ତି । ମୁଁ ଥରେ ସୂର୍ଯ୍ୟକାନ୍ତଙ୍କୁ ଓ ଥରେ ସେଇ ଟୁଟା ତାରାକୁ ଅନାଇଲି । ମୋ ପାଟିରୁ ବାହାରି ଗଲା ମୋତେ ସେଇ ତାରାଟିକୁ ଆଣିଦିଅ ସୂର୍ଯ୍ୟକାନ୍ତ ।

ଧେତ୍‌ତେରିକା ପାଗିଳୀଟିଏ କହି ସେ ମୋତେ ତାଙ୍କ ଛାତି ଉପରକୁ ଆଉଜାଇ ନେଲେ । ଆଶ୍ଚର୍ଯ୍ୟ ହୋଇ ଯାଇଥିଲି ମୁଁ, ବାପା ! ତେବେ ତୁମେ କ'ଣ ସେଇ ଟୁଟା ତାରା ??



# ଅମର ପ୍ରେମ

ତାଳସାରୀ ସମୁଦ୍ର କୂଳ । ଭାରି ନିଛାଟିଆ ଜାଗା । ମାଇଲ ମାଇଲ ଧରି ଝାଉଁ ଜଙ୍ଗଲ ଆକ୍କାଶକୁ ମୁଣ୍ଡ ଟେକିଛି । ଓଡ଼ିଶା ଓ ୱେଷ୍ଟ ବେଙ୍ଗଲ ବୋର୍ଡ଼ର । ସମୟ ସକାଳ ୮ଟା ହେବ । ଏତେ ସକାଳୁ ସକାଳୁ ସେଠାରେ ଲୋକଙ୍କର ଭିଡ଼ ଜମିଥିବା ଦେଖି ସମସ୍ତେ ସେଇଆଡ଼କୁ ଧାଇଁ ଥାଆନ୍ତି । କ'ଣ ଗୋଟିଏ ନିଶ୍ଚେ ଅଘଟଣ ଘଟିଛି । ସମସ୍ତଙ୍କ ମନରେ ଉଦ୍‌ବେଗ, ଉକ୍ରଣ୍ଠା ।

ପ୍ରଥମେ ମାଛ ଧରାଳୀଙ୍କ ନଜରରେ ପଡ଼େ । ବିଭତ୍ସ ଦୃଶ୍ୟଟିଏ । ଦୁଇଜଣ ପ୍ରେମୀ ଅଥବା ସ୍ୱାମୀ, ସ୍ତ୍ରୀ କହିବା ମୁସ୍କିଲ । ରକ୍ତରେ ଜୁଡୁବୁଡୁ ଦୁଇଟି ଶରୀର । ସ୍ତ୍ରୀ ଲୋକଟିର ପେଟରେ ଏକ ଶାଣିତ ଛୁରୀ । ଛୁରୀଟିକୁ ଦୁଇହାତରେ ଜୋର କରି ମୁଠାଇ ଧରିଛି ସେ । ଡୋଳା ଦୁଇଟି ବାହାରକୁ ବାହାରି ଆସିଛି । ପାଖା ପାଖି ଶୋଇ ରହିଛନ୍ତି ଦୁଇଜଣ । ତାଜା ରକ୍ତରେ ଲାଲ ହୋଇ ଯାଇଥାଏ ସେ ସ୍ଥାନଟି । ସକାଳ ସୂର୍ଯ୍ୟ କିରଣର ନାଲିଛଟା ଶବ ଦୁଇଟି ଉପରେ ପଡ଼ି ଚିକ୍‌ମିକ୍ କରୁଛି । ଏମିତି ନିର୍ମମ ଭାବେ ଏମାନଙ୍କୁ କିଏ ବା ହତ୍ୟା କରିଛି ? ସଦ୍ୟ ଫୁଟନ୍ତା ରକ୍ତଜବା ଫୁଲ ଦୁଇଟିକୁ ସତରେ କିଏ ବା ଯେମିତି ଥୋଇ ଦେଇ ଯାଇଛି, ଏଇ ବାଲୁକା ରାଶି ଉପରେ ।

କି ବେଳାରେ ଏମାନେ ଘରୁ ବାହାରିଥିଲେ କେଜାଣି । କ'ଣ ଏମିତି ନିର୍ଦ୍ଦୟ ଭାବରେ ଏମାନଙ୍କର ଏଠାରେ ମରିବାର ଥିଲା, ଏହାର ରହସ୍ୟ କ'ଣ ? କିଏ ଏମାନେ ? ୱେଷ୍ଟ ବେଙ୍ଗଲର ନା ଓଡ଼ିଶାର ? ଏମିତି ଅନେକ ପ୍ରଶ୍ନ ଉଙ୍କି ମାରୁଥାଏ ସଭିଙ୍କ ମନରେ । ପୋଲିସ୍ ଗାଡ଼ି ଲମ୍ବା ହର୍ଣ୍ଣ ବଜାଇ ଆସି ପହଞ୍ଚିଲା ସେଠାରେ । ଓଡ଼ିଶା ପୋଲିସ୍ ! ଗୋଟିଏ କିଛି ଘଟଣା ଘଟି ସାରିଲେ ଏମାନେ ଭାରି ସତର୍କ ହୋଇ ଯାଆନ୍ତି । ତା ପୂର୍ବରୁ ସେମାନେ ଭୁଲି ଯାଇଥାଆନ୍ତି ସେମାନଙ୍କର କର୍ତ୍ତବ୍ୟ ।

ଭିଡ଼ ଠେଲି ପଶି ଆସିଲେ ପୋଲିସ୍ ବାଲା, ସାମ୍ବାଦିକ ଓ ଫଟୋ ଗ୍ରାଫର । ଇନ୍‌ଭେଷ୍ଟିଗେସନ୍ ଚାଲିଲା । ଫଟୋ ବାଲା ବିଭିନ୍ନ ପୋଜ୍‌ରେ ଫଟୋ ଉଠାଇଲେ ।

ଉପସ୍ଥିତ ଜନତାଙ୍କୁ ପଚରା ଉଚୁରା କରୁଥାନ୍ତି ପୋଲିସ୍ ଇନିସ୍‌ପେକ୍ଟର ।

ମାତ୍ର କେହି କିଛି କହି ପାରିଲେ ନାହିଁ । ଶବ ଦୁଇଟିକୁ ପୋଷ୍ଟମର୍ଟମ୍ ପାଇଁ ପଠା ହେବ, କିନ୍ତୁ ସେମାନଙ୍କର କେହି ନିଜ ଲୋକ ସାକ୍ଷୀ ପଡ଼ିବା ଦରକାର ।

ଥାନା ଅଧୀନରେ ଯେତେ ଫାଣ୍ଡି ଅଛି, ନିମିଷକ ମଧ୍ୟରେ ସବୁଠି ଖବର ପଠାଗଲା ।

କନେଷ୍ଟବଲମାନେ ଗୋଟିଏ ସପ୍ତାହର ଡାଇରୀ ବୁକ୍ ଧରି ଆସି ପହଞ୍ଚିଲେ ସେଠାରେ । କମର୍ଦ୍ଧା ଫାଣ୍ଡିରେ ଗୋଟିଏ କେଶ୍ ଡାଇରୀ କରିଛି କନେଷ୍ଟବଳ । ଆଜକୁ ଚାରିଦିନ ତଳେ ବୁଢ଼ୀଟିଏ ଆସି ଫାଣ୍ଡିରେ ଜଣାଇଥିଲା ତାର ଝିଅ ଗୀତା କୁଆଡ଼େ ଚାଲି ଯାଇଛି । ଆଉ ସେଇ ବୁଢ଼ୀ ମାଆ ସହିତ ଆସିଥିଲା ପାଞ୍ଚ କି ଛଅ ବର୍ଷର ହେବ ପୁଅଟିଏ । ବୁଢ଼ୀର ନାତି, ଝିଅ ଗୀତାର ପୁଅ ସେ । ବୁଢ଼ୀମାଆ ଗୀତାକୁ ଖୋଜି ଆଣିବା ପାଇଁ ପ୍ରତିଦିନ ଆସି ସକାଳଠୁ ସନ୍ଧ୍ୟା ଯାଏ ନେହୁରା ହୁଏ । ପୋଲିସ୍ ବାବୁ କହନ୍ତି, ଖୋଜା ଚାଲିଛି, ଖବର ପାଇଲେ ଜଣେଇବେ । ଅନାଥ ଛୁଆଟିକୁ ଦେଖାଇ କାନ୍ଦି ଉଠେ ବୁଢ଼ୀମାଆ । ପୋଲିସ୍‌ର ସନ୍ଦେହ ଘନିଭୂତ ହୁଏ, ମର୍ଡ଼ର ହୋଇଥିବା ଝିଅଟି ବୁଢ଼ୀର ନୁହେଁ ତ । ଇନିସ୍‌ପେକ୍ଟର ନିର୍ଦ୍ଦେଶ ଦେଲେ ତୁରନ୍ତ ଯାଇ ବୁଢ଼ୀକୁ ନେଇ ଆସ ଥାନାକୁ ।

× × ×

ସମୟ ପୂର୍ବାହ୍ଣ ଗୋଟାଏ ହେବ । ଥାନା ଚାରିପାଖେ ଲୋକଙ୍କର ପ୍ରବଳ ଭିଡ଼ । ଲାଶ୍ ଦୁଇଟିକୁ ପିଣ୍ଡାର ଗୋଟିଏ କଡ଼କୁ ଶୁଆଇ ଦିଆଯାଇଛି । ଧଳା ଥାନରେ ଘୋଡ଼ାଇ ଦିଆଯାଇଛି ମରଶରୀରକୁ । ଉତ୍ୟକ୍ତ ଜନତାଙ୍କୁ ସମ୍ଭାଳିବା ମୁସ୍କିଲ୍ । କେତେ ପ୍ରକାର ଟିକା ଟିପ୍ପଣୀ ଦେଇ ଚାଲିଛନ୍ତି ସେମାନେ, ଏ ମର୍ଡ଼ର ପଛରେ ପୋଲିସ୍ ବାଲାର ହାତ ଅଛି ମ ! ସବୁ ଜାଣି ଅଜଣା ହେଉଛନ୍ତି ଏମାନେ ।

ସାମ୍ବାଦିକ ମାନେ ବିଭିନ୍ନ ପ୍ରଶ୍ନ ପଚାରିବାରେ ବ୍ୟସ୍ତ ।

ଆଜ୍ଞା, ଏ ହତ୍ୟାକାଣ୍ଡ ପଛରେ କାହାର ହାତ ଅଛି ? ଏଭଳି ଘଟଣାର ଆଗରୁ କିଛି ସୁରାକ୍ ମିଳିଥିଲା କି ନାହିଁ ? ନିଖୋଜ ରିପୋର୍ଟରେ ଆଗରୁ ଡାଇରୀ ଅଛି କି ନାହିଁ ? ଯଦି ହୋଇଛି କେବେ ? ରିପୋର୍ଟ ଲେଖାଇ ସାରି ପୋଲିସ୍ ବାଲା ନୀରବ ଥିଲା ନା ସତର୍କ ଥିଲେ ?

ବଡ଼ ବାବୁ ହାତ ଯୋଡୁଥାଆନ୍ତି, ଆଜ୍ଞା ଆପଣମାନେ ଭିଡ଼ ଭାଙ୍ଗନ୍ତୁ । ଅସଲ ହତ୍ୟାକାରୀ କିଏ ଆମେ ନିଶ୍ଚେ ଖୋଜି ବାହାର କରିବୁ । କିଏ ବା ଶୁଣୁଛି ତାଙ୍କୁ । ଭିଡ଼ ଭିତରୁ ଶୁଭୁଥାଏ, ଇଏ କ'ଣ ଖୋଜିବେ ମ ? ଟଙ୍କା ଆଗରେ ସବୁ ବଙ୍କା ହେଇଯିବ ଯେ ? ଇଏ ଗୋଟିଏ ପୋଲିସ୍‌ର ବାହାନା ମ ।

ସ୍ଥାନୀୟ ଯୁବକ ସଂଘର ପିଲାମାନେ ଥାନା ଉପରକୁ ମାଡ଼ି ଆସୁଥାଆନ୍ତି ।

ଥାନା ଭାଙ୍ଗି ଦିଅ, ପୋଡ଼ିଜାଳି ଦିଅ, ଅବସ୍ଥା କ୍ରମେ ଅସମ୍ଭାଳ ହୋଇ ପଡୁଥାଏ । ଇତି ମଧ୍ୟରେ ଇନିସ୍‌ପେକ୍ଟର ହେଡ୍‌କ୍ୱାର୍ଟରରୁ ଦୁଇ ପ୍ଲାଟୁନ୍ ଫୋର୍ସ ମଗାଇ ଦେଇଥାଆନ୍ତି ।

× × ×

ପୋଲିସ୍ ଗାଡ଼ିଟି ସାଇରନ୍ ବଜାଇ ବୁଢ଼ୀର ଘର ପାଖରେ ଯାଇ ପହଞ୍ଚିଲା । ଗାଁକୁ ପୋଲିସ ଗାଡ଼ି ଆସିଛି ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ବୁଢ଼ୀର ଝିଅ ଗୀତା ମିଳିଛି, ବଡ଼ବାବୁ ବୁଢ଼ୀକୁ ଥାନାକୁ ଡକାଇଛନ୍ତି ।

ବୁଢ଼ୀର ଆନନ୍ଦ କହିଲେ ନ ସରେ । ଗୀତାର ଖବର ଶୁଣି ବୁଢ଼ୀର ଗୋଡ଼ ତଳେ ଲାଗୁ ନଥାଏ । ପୋଡ଼ାମୁହିଁ କୁଆଡ଼େ ବକଟେ ଛୁଆକୁ ଛାଡ଼ି ଏତେ ଦିନଯାଏ ଚାଲି ଯାଇଥିଲା କେଜାଣି, ହେଉ ଆଜି ତା'ର ଦିନେ କି ମୋର ଦିନେ । ତରବର ହୋଇ ନାତିଟୋକାକୁ ଧରି ବୁଢ଼ୀ ବାହାରି ପଡ଼ିଲା ଓ ଗାଡ଼ିରେ ଆସି ବସିଲା । ଗାଁ ମୁଖିଆକୁ ବି ଡାକି ନେଇ ଆସି ଥାଆନ୍ତି ପୋଲିସ୍ ବାବୁ । ଗାଡ଼ି ଧୂଳି ଉଡ଼ାଇ ଆଗେଇ ଚାଲିଲା ଥାନା ଅଭିମୁଖେ । ଗାଁର ଯୁବକମାନେ ବି ନିଜ ନିଜ କୌତୁହଳ ସମ୍ଭାଳି ପାରିଲେ ନାହିଁ । ଘଟଣା କ'ଣ ଜାଣିବା ପାଇଁ ପୋଲିସ୍ ଗାଡ଼ି ପଛେ ପଛେ ଥାନାକୁ ବାହାରିଲେ ।

× × ×

ଗାଡ଼ି ଆସି ଥାନାରେ ପହଞ୍ଚିଲା । ଇନିସ୍‌ପେକ୍ଟର ନିଜେ ବାହାରି ଆସି ଉତ୍ତେଜିତ ପରିସ୍ଥିତିକୁ ଶାନ୍ତ କରିବାକ୍ ଚେଷ୍ଟା କଲେ । ସେତେବେଳକୁ ସ୍ଥାନୀୟ ନେତାମାନେ ବି ଆସି ଥାନାରେ ପହଞ୍ଚିଗଲେଣି । ''ଆପଣମାନେ ଟିକିଏ ଚୁପ୍ ହୋଇ ଯାଆନ୍ତୁ । ଲାଶ୍ ଚିହ୍ନଟ କରିବା ପାଇଁ ଆମେ ଅନୁମାନ କରି କେତେଜଣକୁ ଧରି ଆଣିଛୁ, ଦୟା କରି ଆମକୁ କାର୍ଯ୍ୟ କରିବାକୁ ଦିଅନ୍ତୁ । ଆମକୁ ସାହାଯ୍ୟ କରନ୍ତୁ ।'' ଉତ୍ୟକ୍ତ ପରିସ୍ଥିତି କିଛିଟା ଶାନ୍ତ ପଡ଼ିବାର ଦେଖାଗଲା । ବୁଢ଼ୀମାଆକୁ ନେଇ ବଡ଼ବାବୁ ଲାଶ୍ ପାଖକୁ ଗଲେ, ତା ସହିତ ଗାଁର ମୁଖିଆ ବି ।

ଗୀତାର ଲାଶ୍ ଉପରେ ମୁଣ୍ଡ କୋଡ଼ି କାନ୍ଦୁଥାଏ ବୁଢ଼ୀ ମାଆ । ପୁଅଟି ବୁଢ଼ୀ ମାଆର କାନ୍ଦ ଦେଖି ମାଆ ମାଆ ବୋଲି ରଡ଼ି ଛାଡ଼ି ଜାବୁଡ଼ି ଧରିଥାଏ ଲାଶ୍‌ଟିକୁ । ମୁଖିଆ ଆଖି ପୋଛି ଠିଆ ହୋଇଥାଏ ଗୋଟିଏ କଡ଼କୁ ।

ମୁଖିଆକୁ ଡାକି କନେଷ୍ଟବଲ ଆର ଲାଶ୍‌ଟି ମୁହଁରୁ ଲୁଗା ଟେକି ଦେଖାଇଲେ । ପୁଅଟି ବି ତାଙ୍କରି ଗାଁର ଗୋପାଳ ଦାସ, ଦାସ ଘରର ପୁଅ ।

ପରିବେଶଟି ଅତ୍ୟନ୍ତ ଶୋକାକୁଳ ହେଇ ଉଠିଥିଲା । ଗୋପାଳ ଦାସ ଘରୁ ମଧ୍ୟ ଅନ୍ୟମାନେ ଆସି ପହଞ୍ଚିଲେ ଥାନାରେ ।

× × ×

ଗୋପାଳ ଆଉ ଗୀତା ଦୁହେଁ ପଢୁଥାଆନ୍ତି ଏକା ହାଇସ୍କୁଲରେ । ନିତି ଦୁହେଁ ସାଙ୍ଗ ହୋଇ ଯାଆନ୍ତି ପଢ଼ିବା ପାଇଁ । କମର୍ଦ୍ଦା ହାଇସ୍କୁଲ, ତାଙ୍କ ଗାଁ ଠାରୁ ଦୁଇ କିଲୋମିଟର ଦୂର ହେବ । କିଶୋର କିଶୋରୀ ଦୁହେଁ ଖୋଲା ଆକାଶର ବିହଙ୍ଗ ପରି ଉଡ଼ି ବୁଲନ୍ତି । ଯୌବନର ଛୁଆଁ ଲାଗେ ଦୁହିଁଙ୍କ ମନରେ । ଅଜାଣତରେ ପରସ୍ପର ପରସ୍ପରଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ନ୍ତି । ଦୁହେଁ ଦୁହିଁଙ୍କୁ ଦଣ୍ଡେ ନ ଦେଖିଲେ ପାଗଳ ହୋଇ ଉଠନ୍ତି । ଯୌବନର ଉଦ୍ଦାମତା ଦୁହିଁଙ୍କ ଠାରେ ପରିସ୍ଫୁଟ ହୋଇଉଠେ । ଉଜାଣି ନଈରେ ବଢ଼ି ଆସି ଗାଁ, ଗଣ୍ଡା ଯେପରି ଖାଇଯାଏ, ଠିକ୍ ସେମିତି । ଦୁହେଁ ଭଲ ପାଇବାର ଲକ୍ଷ୍ମଣରେଖା ଟପି ଯାଆନ୍ତି । କଥା ବାଜିଲେ ସହସ୍ର କୋଶ ।

ଗୋପାଳର ଠାକୁରବାପା ଥିଲେ ଅତ୍ୟନ୍ତ ରକ୍ଷଣଶୀଳ । ସେମାନେ ହେଉଛନ୍ତି ଦାସ ଘରର ଓ ଗୀତା ରାଜୁଘରର ଝିଅ । ଠାକୁର ବାପାଙ୍କ କାନରେ ଯାଇ କଥା ଉଠେ । ମନେ ମନେ ସେ କେବେ ଏହାକୁ ସ୍ୱୀକାର କରି ପାରିଲେନି । ନାତି ଟୋକାର ବି ହାବଭାବ କିଛି ଭଲ ନାହିଁ ଦେଖି ମର୍ମାହତ ହୋଇ ପଡ଼ିଲେ । ଉପାୟ ପାଞ୍ଚ ଦିନେ ନାତିଟୋକାକୁ ନେଇ ଚାଲିଲେ ତାଙ୍କ ଝିଅ ଘରକୁ ଓ ସେଠାରେ ପାତ୍ରୀଟିଏ ଯୋଗାଡ଼ କରି ଗୋପାଳର ବାହାଘର ସାରିଦେଲେ ।

ଗୋପାଳର ବାହାଘର ଖବର ପାଇ ପୁରାପୁରି ଭାଙ୍ଗିପଡ଼ିଲା ଗୀତା । ସ୍ୱପ୍ନର ବାଲିଘର ତାର ଧୂଳିସାତ୍ ହୋଇଗଲା । ନଖାଇ ନ ପିଇ କାନ୍ଦି କାନ୍ଦି ଦୁର୍ବଳ ହୋଇ ପଡ଼ିଲା ସେ । ବାପା ମାଆର ଗେଲ ବସରର ଗୋଟିଏ ବୋଲି ଝିଅ ଏଇ ଗୀତା । ଗାଁ ଦାଣ୍ଡରେ ଗୀତାକୁ ଆଉ କେହି ଦେଖିବାକୁ ପାଇଲେ ନାହିଁ । ଗାଁ ଠାକୁରାଣୀକୁ ସାକ୍ଷୀ ରଖି ଗୋପାଳ ତା ମୁଣ୍ଡରେ ସିନ୍ଦୁର ଦେଇଥିଲା ଓ ସେ ବି ନିଜକୁ ସମର୍ପି ଦେଇଥିଲା ତା ପାଖରେ । ମାଆ ତାର ଜାଣି ପାରିଲେ ଗୀତା ଅନ୍ତସତ୍ତ୍ୱା, ଚମକି ପଡ଼ିଥିଲେ ସେ । କେତେ ବୁଝାଇଥିଲେ, ପାପ ଗର୍ଭକୁ ନଷ୍ଟ କରିଦେବା ପାଇଁ । ଗୀତା ମାଆର କଥାରେ ଏକମତ ହୋଇ ପାରି ନଥିଲା । ତାର ପ୍ରଥମ ପ୍ରେମର ସତ୍ତାକୁ ସେ ହଜାଇ ଦେଇ ପାରିବନି, ମନେ ମନେ ସଂକଳ୍ପ ନେଇଥିଲା, ସେ ଜନ୍ମ ଦେବ ତା'ର ପ୍ରେମର ସନ୍ତକକୁ । ତାର ଭଲ ପାଇବା ଯଦି ସତ୍ୟ ହୋଇଥାଏ, ଦିନେ ନା ଦିନେ ସେ ତା'ର ଗୋପାଳକୁ ଫେରି ପାଇବ । ଏ ଜନ୍ମରେ ନ ହେଲେ ବି ପର ଜନ୍ମରେ ସେ ନିଶ୍ଚିତ ସଫଳ ହେବ । ବାପା, ମାଆ ଗୀତାର ଚିନ୍ତାରେ ପୀଡ଼ିତ ହୋଇ ବିଦାୟ ନିଅନ୍ତି ସଂସାରରୁ । ବୁଢ଼ୀ ମାଆଟି ହିଁ ହୋଇ ଉଠେ ଏକମାତ୍ର ଗୀତାର ସାହା ଭରସା ।

× × ×

ମାତୃତ୍ୱର ଆନନ୍ଦରେ ଅଧିରା ହୋଇ ଉଠେ ଗୀତା । ଗୋପାଳର ସନ୍ତାନର ମାଆ ହୋଇ ଗର୍ବରେ ବାଟ ଚାଲେ ସେ । ପୁଅଟି ଦିନକୁ ଦିନ ଶଶୀକଳା ପରି

ବଢୁଥାଏ । ଗାଁରେ ଏକଥା କାହାକୁ ଅଛପା ନାହିଁ । ପୁଅର ଆକର୍ଷଣରେ ଗୋପାଳ ଗୀତାର ନିକଟତର ହୁଏ । ଗୋପାଳକୁ ପାଖରେ ପାଇ ସେ ବି ଖୁସି ହୁଏ । ଗୀତା ଦିନେ ତା'ର ମନକଥା ପ୍ରକାଶ କରେ ଗୋପାଳ ପାଖରେ । ତାକୁ ନ ହେଲେ ନାହିଁ, ପୁଅକୁ ସ୍ୱୀକାର କରିବାକୁ ନେହୁରା ହୁଏ । କିନ୍ତୁ ଗୋପାଳର ପରିବାର ଏଥି ପାଇଁ ରାଜି ନଥିଲେ । ଗୀତା ଜାଣେ ଗୋପାଳ କେବେ ବି ସାହସ କରି ପାରିବନି, ଜୀବନ ସହିତ ମୁକାବିଲା କରିବା ପାଇଁ । ଗୋପାଳ ଭୀରୁ, ଦୁର୍ବଳ ପୁରୁଷଟିଏ । ମାଆର ମନ ବିଳାପ କରି ଉଠେ । ''ତେବେ କ'ଣ ତା ପୁଅ, ପ୍ରାଣର ଧନ ଅନାଥ ହୋଇ ଏ ସଂସାରରେ ବଞ୍ଚିବ ।'' ପ୍ରତିଶୋଧର ବହ୍ନି ଜଳି ଉଠିଥିଲା ତା ଅନ୍ତରରେ । ଏଇ କ'ଣ ତା'ର ଶେଷ ପରିଣତି ? ଏଥିପାଇଁ ଦାୟୀ କିଏ ? ଅନ୍ତ କରି ଦେଇଥିଲା ଦୁଇଟି ଜୀବନ ପ୍ରତିଶୋଧର ନିଆଁ ।

ଗୀତା ଗୋପାଳର ପରିଣତି ସ୍ପଷ୍ଟ ହୋଇ ଯାଇଥିଲା ସମସ୍ତଙ୍କ ସାମ୍ନାରେ । ରାତି ପାହି ଆସୁଥାଏ । ଗାଁ ବରଗଛ ମୂଳେ ମଶାଣି ପଦାରେ ରୁଣ୍ଡ ହୋଇ ଥାଆନ୍ତି ଆବାଳ ବୃଦ୍ଧ ବନିତା । 'ବୋଲ ହରିଆ, ହରିବୋଲ' ଧ୍ୱନିରେ ଗାଁ ଦାଣ୍ଡ ପୁରି ଉଠୁଥାଏ । ଚାଙ୍ଗୁଡ଼ି ଦୁଇଟି ଫୁଲରେ ସଜା ହୋଇଥାଏ । ଗାଁ ଭାଇମାନେ କାନ୍ଧରେ କାନ୍ଧେଇ ଗାଁ ଦାଣ୍ଡରେ ଚାଲିଥାଆନ୍ତି । ଗୋପାଳର ଜେଜେ ବାପା ବାଡ଼ି ଠୁକୁ ଠୁକୁ କରି ଆସି ପହଞ୍ଚିଲେ ସେଠାରେ । ଗୋପାଳର ଚାଙ୍ଗୁଡ଼ିରେ ହାତ ଦେଇ ଭୋ ଭୋ ହୋଇ କାନ୍ଦି ଉଠିଲେ ସେ । ଗୀତାର ମୁହଁକୁ ଟେକି ଧରି କହି ଉଠିଲେ, ''ଅଭିମାନରେ ଶୋଇ ପଡ଼ିଛି ମାଆ ମୋର, ରାମୁ ଗାଁ ମାଇପିଙ୍କୁ ଡାକରେ, ମାଆକୁ ମୋର ଅହ୍ୟରାଣୀ ବେଶ କରିଦେବ । ଅଳତା, ସିନ୍ଦୁର ଲଗାଇ ଦିଅରେ, ମୋତେ ପ୍ରାୟଶ୍ଚିତ୍ତ କରିବାକୁ ଦିଅ । ମୋର ଟିକିଏ ଭୁଲ ପାଇଁ ପିଲା ଦୁଇଟି ମୋ ଉପରେ ରାଗି କରି ବହୁ ଦୂରକୁ ଚାଲି ଯାଇଛନ୍ତି । ମୁଁ ତୋ ପାଖରେ ହାରି ଯାଇଛି ମାଆ ଗୀତା । ତୋତେ ଛୁଇଁ ଶପଥ କରୁଛି ତୋରି ଏଇ ପୁଅ ମୋର ନାତି, ହଁ ସିଏ କେବଳ ମୋରି ନାତି, କହି ନାତିକୁ କୁଣ୍ଢାଇ ପକାଇ କାନ୍ଦି ଉଠିଲେ ସେ ।'' ''ତୋର ପ୍ରେମ ପବିତ୍ର, ଶାଶ୍ୱତ ଓ ତାହା ଚିରଦିନ ଅମର ହୋଇ ରହିବ ।''

ଗାଁ ଲୋକଙ୍କ ମୁହଁରେ ହସ ଫୁଟି ଉଠୁଥିଲା । ବଞ୍ଚି ଥାଉ ଥାଉ ଯାହା ସମ୍ଭବ ହୋଇ ପାରିନି, ତାହା ଆଜି ପୂରଣ ହୋଇଛି ସେମାନଙ୍କ ଜୁଇରେ ।

ମଶାଣୀ ଭୂଇଁର ଲେଲିହାନ ଶିଖା ଦୁଇଟି ମିଶି ଏକାକାର ହୋଇ ଯାଉଥିଲେ । ଯେମିତି କି ହସି ହସି ପରସ୍ପରକୁ ଆଲିଙ୍ଗନ କରୁଥିଲେ ଗୋପାଳ ଆଉ ଗୀତା ।



# ପଣା ସଂକ୍ରାନ୍ତି

ଅନୁରାଧାଙ୍କର ଜୀବନ ଧାରା ଥିଲା ସମ୍ପୂର୍ଣ୍ଣ ଭିନ୍ନ । ସେ କେବଳ ନିଜ ପରିବାର ମଧ୍ୟରେ ସୀମାବଦ୍ଧ ନଥିଲେ । ଆଦର୍ଶ ପରିବାର ଗଠନ ସହିତ ଶିକ୍ଷୟିତ୍ରୀ ଭାବେ କାର୍ଯ୍ୟରତା ଅନୁରାଧା ଘରେ ବାହାରେ ନିଷ୍ଠାର ସହିତ କାର୍ଯ୍ୟ କରିବାକୁ ସଂକଳ୍ପ ନେଇଥିଲେ । ନିଷ୍ଠା ଓ ସମୟାନୁବର୍ତ୍ତିତା ହିଁ ଲକ୍ଷ୍ୟ ପ୍ରାପ୍ତିର ଏକମାତ୍ର ମାଇଲ୍‌ଖୁଣ୍ଟ । ତାଙ୍କ ଜୀବନରେ ବି ଆସିଥିଲା ଏଭଳି ଏକ ମୁହୂର୍ତ୍ତ ଯାହାକି ତାଙ୍କର ସ୍ୱପ୍ନ ସାର୍ଥକ ହୋଇଥିଲା । ଆଜିବି ମନେ ପଡ଼େ ତାଙ୍କର ସେ ଦିନଟି, ରବିବାର । ଛୁଟିଦିନ ପିଲାଙ୍କ ସହିତ ବେଶ୍ ହସ ଖୁସିରେ କଟିଯାଏ ଅନୁପମ୍ ଓ ଅନୁରାଧାଙ୍କର । ଅନୁରାଧା ସକାଳୁ ସକାଳୁ ଉଠି ଚାହା କେଟ୍‌ଲୀଟି ହିଟର୍‌ରେ ବସାଇ ଦେଇ ପିଲାଙ୍କ ସକାଶେ ଜଳଖିଆ ପ୍ରସ୍ତୁତ କରିବାକୁ ବ୍ୟସ୍ତ ଅଛନ୍ତି । ଏତିକିବେଳେ ହଠାତ୍ ଅନୁପମ୍‌ର ପାଟି ଶୁଣି ସମସ୍ତେ ଦଉଡ଼ିଲେ ଡ୍ରଇଂ ରୁମ୍‌କୁ ।

ଆରେ ଏ ପିଙ୍କି, ମିଟୁ ଦେଖିଲୁ, ଏ କାହାର ଫଟୋ ବାହାରିଛି । ପଢ଼ିଲୁ, ପଢ଼ିଲୁ କ'ଣ ଲେଖା ହୋଇଛି । ଜୋର୍‌ରେ ପଢ଼ିଲୁ, ଖୁସିରେ ପାଗଳ ହୋଇ ଉଠିଛନ୍ତି ଅନୁପମ୍ । ରାଷ୍ଟ୍ରପତି ପୁରସ୍କାର ପାଇବା ପାଇଁ ଓଡ଼ିଶାରୁ ଅନୁରାଧା ହିଁ ନିର୍ବାଚିତା ହୋଇଛନ୍ତି । ଅନୁରାଧାର ଫଟୋ ସହିତ ଏହି ସମ୍ବାଦଟି ପ୍ରକାଶ ପାଇଛି । ସମସ୍ତେ ଖବର କାଗଜ ଚାରିପଟେ ଘେରି ବସିଛନ୍ତି । ବାରମ୍ବାର ପିଙ୍କି ନ୍ୟୁଜ୍‌ଟିକୁ ପଢ଼ି ଚାଲିଛି । ପିଲାମାନେ ଅନୁରାଧାକୁ କୁଣ୍ଢାଇ ଧରି ଚୁମା ପରେ ଚୁମା ଦେଇଚାଲିଛନ୍ତି । ସେଦିନ ତା ପାଇଁ ଥିଲା ଜୀବନର ଏକ ସ୍ମରଣୀୟ ଦିବସଟିଏ । ଆନନ୍ଦାଶ୍ରୁ ବୋହି ଯାଉଥାଏ ଅନୁରାଧାଙ୍କ ନୟନ ଯୁଗଳରୁ । ଅନୁପମ୍‌ର ଆଖି ଦୁଇଟି ବି ସଜଳ ହୋଇ ଉଠିଲା । ଅନୁରାଧା ନୁହେଁ, ଅନୁପମକୁ ଯେପରି ରାଷ୍ଟ୍ରପତି ପୁରସ୍କାର ମିଳିଛି । ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଜନ୍ମଦିନ ପାଳନ ଉତ୍ସବରେ ଦିଲ୍ଲୀଠାରେ ଖୋଦ୍ ରାଷ୍ଟ୍ରପତି ଏହି ପୁରସ୍କାର

ପ୍ରଦାନ କରିବେ । ଏଥିପାଇଁ ଅନୁରାଧାଙ୍କୁ ଦିଲ୍ଲୀ ଯିବାକୁ ପଡ଼ିବ ।

ଏହି ଖୁସି ଖବର ପାଇ ଆତ୍ମୀୟସ୍ୱଜନଙ୍କର ଫୋନ୍ ଏଟେଣ୍ଡ କରି କରି ସେମାନେ ଥକି ପଡ଼ିଥିଲେ ଓ ତହିଁ ପରଦିନ ତାଙ୍କ ଘରେ ଏକ ଭୋଜିର ଆସର ବେଶ୍ ଜମିଥିଲା । ସମସ୍ତେ ବଧାଇ ଜଣାଇଥିଲେ ଅନୁରାଧାଙ୍କୁ ।

ଯା ଭିତରେ ପାଞ୍ଚବର୍ଷ ବିତିଯାଇଛି । ଆଦର୍ଶ ଶିକ୍ଷୟିତ୍ରୀ ଭାବେ କାର୍ଯ୍ୟ କରି ବେଶ୍ ସୁନାମ ଅର୍ଜନ କରି ପାରିଥିଲେ ସେ । ଚାକିରୀରୁ ଅବସର ଗ୍ରହଣ କରି ସାରିଛନ୍ତି ଅନୁପମ ଓ ଅନୁରାଧା । ମାତ୍ର ଏବେ ବି ପିଲାଏ ଆସନ୍ତି ତାଙ୍କ ଘରକୁ ଦିଦିଙ୍କ ପାଖରୁ ଇଂରାଜୀ ପଢ଼ିବା ପାଇଁ ।

ବାର୍ଦ୍ଧକ୍ୟର ଶେଷ ପାହାଚରେ ସେମାନେ ଉପନୀତ ହୋଇ ସାରିଲେଣି । ସଂସାରର ବୋଝରୁ ଦୁହେଁ ମୁକ୍ତ । ଝିଅ ପିଙ୍କି ଏବେ ଦିଲ୍ଲୀରେ, ତା କୋଳରେ ପୁଅଟିଏ । ଏକମାତ୍ର ପୁଅ ମିଟୁ ଦୁବାଇରେ ଏକ କମ୍ପାନୀରେ କାର୍ଯ୍ୟରତ । ବର୍ଷକରେ ମାତ୍ର ଥରଟିଏ ତାକୁ ଦେଖିବାକୁ ମିଳେ । ସଂସାର କହିଲେ, ସେ ଆଉ ଅନୁପମ । କର୍ମଜୀବୀ ମହିଳାଟିଏ ହେଲେ ବି ସଂସାରକୁ ସେ କେବେ ବି ଉପେକ୍ଷା କରି ନାହାନ୍ତି । ରାତି ରାତି ଉଜାଗର ରହି ପିଲାଙ୍କୁ ମଣିଷ କରିବାର ନିଶାରେ ନିଜକୁ ହଜାଇ ଦେଇଛନ୍ତି ସେ । ବ୍ୟସ୍ତ ଓ ଜଞ୍ଜାଳମୟ ଜୀବନରେ ଅନୁପମ ଓ ଅନୁରାଧା କେବେବି ଭୁଲି ନାହାନ୍ତି ସଂସ୍କୃତି ଓ ପରମ୍ପରାକୁ ।

ମହାବିଷୁବ ସଂକ୍ରାନ୍ତି । ଏହି ଦିନଟିର ଅପେକ୍ଷାର ଯେପରି ଶେଷ ନଥାଏ । ବର୍ଷକରେ ଏହି ସଂକ୍ରାନ୍ତି ଦିବସଟି ସେମାନଙ୍କ ପାଇଁ କୋଟିନିଧି ସଦୃଶ ମନେ ହୁଏ । ପଣା ସଂକ୍ରାନ୍ତିରେ ତାଙ୍କ ଘର ଖାଲି ଉଠୁଥାଏ, ପଡୁଥାଏ ପରିବାର ଓ ଆତ୍ମୀୟଙ୍କ ମେଳରେ । ଯିଏ ଯେଉଁଠାରେ ଥିଲେ ବି ସମସ୍ତେ ଏକାଠି ହୁଅନ୍ତି ଅନୁପମ୍‌ଙ୍କ ଘରେ । ବର୍ଷକର ଘଟଣା, ମନେ ପଡ଼ିଲେ ଅନୁପମ୍ ଓ ଅନୁରାଧା ହସି ହସି ଗଡ଼ି ଯାଆନ୍ତି । ସେତେବେଳେ ପିଙ୍କି ଓ ମିଟୁ ବହୁତ ଛୋଟ ଥିଲେ, ସ୍କୁଲରେ ପଢୁଥିଲେ । ଅନୁପମ ଓ ଅନୁରାଧାଙ୍କର ଯୁବା ବେଳର କଥା । ପଣା ସଂକ୍ରାନ୍ତି ଦିନ ସକାଳୁ ସକାଳୁ ସମସ୍ତେ ଗାଧୋଇ ପାଧୋଇ ଆଗ ମନ୍ଦିର ଯିବା ପାଇଁ ପ୍ରସ୍ତୁ ହୋଇ ଯାଆନ୍ତି । ପାଖ ଶିବ ମନ୍ଦିରରେ ଠାକୁର ଦର୍ଶନ ଓ ପଣା ଦେବା ପାଇଁ ପ୍ରବଳ ଭିଡ଼ ଜମେ । ସକାଳେ ଭୋର୍‌ରୁ ମନ୍ଦିରରେ ମାଇକ୍‌ରେ ଭାସି ଆସୁଥାଏ ଭକ୍ତିମୂଳକ ସଂଗୀତ ଓ ଗୀତିନାଟ୍ୟର ସଂଳାପ । ସମସ୍ତେ ନୂଆ ଲୁଗା ପିନ୍ଧନ୍ତି ସେଦିନ । ସେଦିନ ଅନୁପମ୍‌ର ଦୁଇ ଭାଇ ଓ ବୋହୂ, ପିଲାମାନେ ମାଆ ଓ ତାଙ୍କର ପିଙ୍କି, ମିଟୁ ଭୋଗରାଗ, ଧୂପ ଦୀପ ଧରି

ଚାଲିଲେ ମନ୍ଦିରକୁ ପୂଜାର୍ଚ୍ଚନା କରିବା ପାଇଁ । ହୃଦୟରେ ଭକ୍ତି ଓ ମନରେ ଆନନ୍ଦର ସୀମା ନଥାଏ । ପୂଜା ସାରି ଫେରୁ ଫେରୁ ଦିନ ବାରଟା ବାଜି ଯାଇଥାଏ । ମନ୍ଦିରର ପ୍ରବଳ ଭିଡ଼ ଭିତରେ ସମସ୍ତେ ଥକି ପଡ଼ିଥାଆନ୍ତି । ପିଲାଏ ଖାଇବା ଖାଇବା ବୋଲି ଅସ୍ଥିର କରି ପକାଇଲେ । ଅନୁରାଧା ଦୁଇ ଯାଆଙ୍କୁ ନେଇ ତରତରରେ ରୋଷେଇବାସ ଶେଷ କରି ଶାଶୁ, ସ୍ୱାମୀ, ଦିଅର ଓ ପିଲାମାନଙ୍କୁ ଖାଇବାକୁ ଦେଇ ଟିକିଏ ଶାନ୍ତିରେ ନିଃଶ୍ୱାସ ମାରିଲେ । ତାପରେ ଖାଇ ବସିଲେ ତିନି ଯାଆ । ଅନୁରାଧାକୁ ଲୁଚାଇ ଲୁଚାଇ ଦୁଇ ଯାଆ ସୀମା ଓ ରୀତା ସେମାନେ କ'ଣ ସବୁ କହୁଥିଲେ ଓ କିରି କିରି ହୋଇ ହସୁଥିଲେ । ସେ ବେଶ୍ ଟେର୍ କରି ପାରିଥିଲେ, ମାତ୍ର ଏତେଟା ଗୁରୁତ୍ୱ ଦେଇ ନଥିଲେ । ପିଲାମାନେ ଗୋଟିଏ ବେଡ୍‌ରୁମ୍‌ରେ ପଶି ଢୁଲ୍‌ଦାଲ୍, ଧୁମ୍‌ଧାମ୍ ଚଳେଇଥାଆନ୍ତି । ସେମାନଙ୍କର ଆନନ୍ଦ କହିଲେ ନ ସରେ । ଆଉ ତାଙ୍କର ତିନି ଭାଇ ପ୍ରାୟ ପାଖାପାଖି ବୟସର ହେବେ, କ'ଣ କଥା ହେଉଥାଆନ୍ତି କେଜାଣି, ମଝିରେ ମଝିରେ ସେମାନଙ୍କର ହସ ଭାସି ଆସୁଥାଏ । ଅନୁରାଧା, ସୀମା ଓ ରୀତା ପିଲାମାନଙ୍କୁ ଶୁଆଇବା ପାଇଁ ଚେଷ୍ଟା କରି କରି ବିଫଳ ହୋଇ ତଳେ ଚଟାଣରେ ଦରିଟିଏ ପାରି ଶୋଇ ପଡ଼ିଲେ ।

ସମୟ ଆସି ଅପରାହ୍ଣ ପାଞ୍ଚଟା ବାଜିଲାଣି । ଅନୁପମ୍‌ର ଡାକରେ ସେମାନଙ୍କର ନିଦ ଭାଙ୍ଗିଲା । ଥକ୍କା ହୋଇ ଶୋଇ ପଡ଼ିଥାଆନ୍ତି । ଏଣୁ ଜୋର୍‌ରେ ନିଦ ଲାଗି ଯାଇଥାଏ । ଅନୁପମ୍ ସେମାନଙ୍କୁ ଡାକି ଦେଇ ତିନି ଭାଇ ଯାକ ସାଇକେଲ୍ ଧରି ଚାଲିଲେ ବଜାରକୁ । ବଜାର ଦର ବୁଝିବେ ଓ ପଣା ପାଇଁ ନଡ଼ିଆ, କଦଳୀ ଓ ବେଲ କିଣା ହେବ । ପିଲାମାନେ ଅଗଣାରେ ଖେଳରେ ମାତି ଥାଆନ୍ତି । ଗୁଡ଼ା ଗୁଡ଼ି, ସୀତାଚୋରୀ ଖେଳ ଚାଲିଥାଏ । ସେମାନଙ୍କର ସୋର୍‌ଗୋଳରେ କମ୍ପି ଉଠୁଥାଏ ଅଗଣା । ଶାଶୁମାଆଙ୍କର ପାଟି ଶୁଭୁଥାଏ, ଆରେ ମିଟୁ, ଜଲି ଧୀରେ ସୁସ୍ଥେ ଖେଳ, ମାଡ଼ଗୋଳ କରିବନି । ତିନି ଯାଆ ଆଉ ସେମାନଙ୍କ ଆଡ଼କୁ ନ ଅନାଇ ସନ୍ଧ୍ୟାପାଇଟି କରିବାରେ ବ୍ୟସ୍ତ ହୋଇଗଲେ । ଘର ଓଳା, ବାସନମଜା, ଘର ସଜାଇବା ଇତ୍ୟାଦି ସାରି ତିନିହେଁ ଲୁଗାଧୁଆ କାମ ସାରିନେଲେ । ସେତେବେଳକୁ ସନ୍ଧ୍ୟା ନଇଁ ଆସିଲାଣି ।

ଠାକୁର ଘରେ ସନ୍ଧ୍ୟା ଦୀପ ଦେଇ ଚଉରାମୂଳେ ଦୀପ ଲଗାଇ ଅନୁରାଧା ମୁଣ୍ଡ ଲଗାଇ ପ୍ରଣାମ କରୁ କରୁ ମନେ ମନେ ମାଆ ବୃନ୍ଦାବତୀଙ୍କ ଠାରେ ଏମିତି ସୁଖର ଦିନ ସଭିଙ୍କର କାମନା କଲେ । ସୀମା, ରୀତା ଓ ପିଲାମାନେ ଆସି ଠାକୁରଙ୍କୁ ମୁଣ୍ଡିଆ ମାରି ପ୍ରଣାମ କଲେ । ଇତି ମଧ୍ୟରେ ଭାଇମାନେ ଆସି ଯାଇଥାନ୍ତି । ସକାଳୁ

ଶିବଙ୍କ ପାଖେ ଲାଗିଥିବା ପ୍ରସାଦ ପଣା ସହିତ ମିଶାଇ ଦେଲେ । ପେଟଭରା ପଣା ସମସ୍ତେ ପିଇବେ । ସୁସ୍ୱାଦୁ ପଣାର ବାସ୍ନା ଏବେବି ଅନୁଭୂତ ହୁଏ ।

ଅନୁରାଧା ଦୁଇ ଯାଆଙ୍କର ମତଲବ୍ ସେଦିନ ବୁଝି ପାରି ନଥିଲେ । ଲୁଚାଇ କରି ଭାଙ୍ଗ ବାଟି ସେମାନେ ମିଶାଇ ଦେଇ ଥିଲେ ଅନୁରାଧା ଓ ଅନୁପମ୍‌ଙ୍କ ଗ୍ଲାସରେ । ପିଉ ପିଉ ଅନୁପମ, ଅନୁରାଧା ଚାରି ପାଞ୍ଚ ଗ୍ଲାସ୍ ପିଇ ଯାଇଥିଲେ ବାଉଳାରେ । ସେଦିନ ରାତିରେ ଆଉ ସେମାନଙ୍କୁ ସମ୍ଭାଳେ କିଏ ? ରାତିସାରା ହସି ହସି ବେଦମ୍ ହୋଇ ଯାଇଥିଲେ ଅନୁରାଧା ଓ ଅନୁପମ୍ ନିଶା ଚୋଟରେ । ଅନ୍ୟମାନେ ବି ସେମାନଙ୍କ ସହିତ ଉଜାଗର । ଭାରି ମଜା ହୋଇଥିଲା ସେଦିନ ।

ସେଇ ମଜା ଦିନ ଗୁଡ଼ିକ କଥା ମନେ ପଡ଼ିଲେ ଆଖିରୁ ପାଣି ବାହାରି ଆସେ । ତଥାପି ଏଇ ଦିନ ଟିକୁ କେହି ଭୁଲି ନାହାନ୍ତି । ଏକାଠି ହୁଅନ୍ତି, ପୁଅ ଝିଅ, ଝିଆରୀ, ପୁତୁରା ଓ ଅନ୍ୟମାନେ । ଏବେବି ସେଇ ସଂସ୍କୃତି ପରମ୍ପରା ତାଙ୍କ ଘରେ ଉଜ୍ଜିବୀତ ରଖିଛନ୍ତି । ଆନନ୍ଦ ଉଲ୍ଲାସରେ ମାତି ଉଠିଛନ୍ତି ଦିହେଁ । ପିଲାମାନେ ଆସିବେ, ଆଉ ମାତ୍ର ପନ୍ଦର ଦିନ ରହିଲା । ଖୁସିରେ ନାତି, ନାତୁଣୀଙ୍କ ମେଳରେ ତାଙ୍କ ଅଗଣା ହସି ଉଠିବ ।

ମନରେ ସେମାନଙ୍କ ଦୁଃଶ୍ଚିନ୍ତା ଲାଗି ରହିଛି, ଏତେବଡ଼ ପର୍ବଟା ଏ ବୟସରେ ସେମାନେ କିପରି ପାଳିବେ । ଗତବର୍ଷ ପିଙ୍କି ଥିଲା ଯେ କିଛି ସମ୍ଭାଳି ଦେଇଥିଲା । ବାର୍ଦ୍ଧକ୍ୟର ତାଡ଼ନାରେ ଦିହେଁ ନଇଁ ପଡ଼ିଲେଣି, ଘରେ କେବଳ ସେ ଦୁହେଁ ଓ ଚାକର ପିଲା ଭୀମ । ପ୍ରତି କାର୍ଯ୍ୟରେ ଏବେ ଭୀମ ହିଁ ତାଙ୍କର ସାହା ଭରସା । ଭୀମଙ୍କୁ ନେଇ ପର୍ବଟି କଟାଇବା ପାଇଁ ମନସ୍ଥ କଲେ ସେମାନେ । ଭୀମ ବି କାର୍ଯ୍ୟରେ ଖୁବ୍ ଧୁରନ୍ଧର । ଅନୁପମ୍‌ର ଡାଇରେକ୍ସନ୍‌ରେ ଭୀମ ସବୁକାର୍ଯ୍ୟ ଘରସଜା ଠାରୁ ଆରମ୍ଭ କରି ହାଟ ବଜାର କରି ଆଣେ । ସମସ୍ତଙ୍କ ପାଇଁ ନୂଆ ଲୁଗା ଆସିବ, ଠାକୁରଙ୍କ ପାଇଁ ଝାଲେରୀ ତିଆରୀ ହେବ । କିଛି କାର୍ଯ୍ୟ ବାକି ରହେ ନାହିଁ । ଦୂରରୁ ଯେଉଁମାନେ ଆସିବେ ଚାରି ପାଞ୍ଚ ଦିନ ପୂର୍ବରୁ ଛୁଟି ନେଇ ଆସିବେ । ପିଙ୍କିର ଟେଲିଗ୍ରାମ ପହଞ୍ଚିଛି, ମିଟୁ କେବେ ଆସିବ, ଏ ପର୍ଯ୍ୟନ୍ତ ଖବର ପହଞ୍ଚି ନାହିଁ । ମନଟା ଭାରି ଗୋଳେଇ ଘାଣ୍ଟି ହୁଏ ପୁଅ ପାଇଁ । ଏତେ ଦୂରରେ ରହିଲା ଯେ ଥରେ ଦେଖିବାକୁ ମିଳିବା ସ୍ୱପ୍ନ ପରି ଲାଗେ । ତାଲିକା ଅନୁଯାୟୀ କାର୍ଯ୍ୟ ହେଲା କି ନାହିଁ ବାରମ୍ବାର ଚେକ୍ କରନ୍ତି ଅନୁପମ୍, ଅନୁରାଧା । ସବୁତ ଠିକ୍ ଅଛି, କହି ଅନୁପମ୍ ମନେ ପକେଇବାକୁ ଚେଷ୍ଟା କରନ୍ତି କ'ଣ ଆଉ ବାକି ରହିଲା ।

ଆଜି ପଣା ସଂକ୍ରାନ୍ତି । ସମସ୍ତେ ଆଜି ହିଁ ପହଞ୍ଚିବେ । କାରଣ ସମସ୍ତେ କାର୍ଯ୍ୟବ୍ୟସ୍ତ । ପିଙ୍କି, ମିଟୁ, ବି ବାଟରେ ସାଙ୍ଗ ଘର ଆଟେଣ୍ଡ୍ କରି ଆସିବେ । ମନ୍ଦିରରୁ ଫେରି ଅପେକ୍ଷା କରି ବସିଛନ୍ତି ଅନୁରାଧା । ଅନୁପମ୍ ଘର ବାହାରକୁ ହେଉଥାନ୍ତି । ଭୀମ ରୋଷେଇରେ ବ୍ୟସ୍ତ । ସମସ୍ତେ ଆସିଲେ ଏକାଠି ମିଶି ଖାଇବେ । ଗୋଟାଏ ଭିତରେ ସମସ୍ତେ ପହଞ୍ଚି ଗଲେ । ଅପେକ୍ଷା କେବଳ ସାନ ଦିଅରଙ୍କୁ । ସେମାନେ ରାଉରକେଲାରୁ ଆସିବେ । ଭୋର୍‌ରୁ ବାହାରିବେ ବୋଲି ଗତକାଲି ଖବର ପଠାଇଥିଲେ । ଅବଶ୍ୟ ରାତି ଚାରିଟାରୁ ବାହାରିଲେ ତ ଅତିବେଶୀରେ ବାରଟା ସୁଦ୍ଧା ପହଞ୍ଚିବା କଥା । ଖାଇବା ବେଳ ଉଚ୍ଛୁର ହୋଇ ଯାଉଛି । ଅନୁରାଧା ଶାଶୁଙ୍କ ପାଇଁ ଖାଇବା ବାଢ଼ି ଦେଇ ଅନ୍ୟମାନଙ୍କୁ ଖାଇ ନେବା ପାଇଁ କହିଲେ । ମାତ୍ର କେହି ମଙ୍ଗିବାକୁ ନାହିଁ, ଦାଦା ଆସିଲେ ଖାଇବେ, କହି ଝିଅାରି, ପୁତୁରା ତାସ୍ ଖେଳରେ, କେରାମ୍ ବୋର୍ଡ଼ ଧରି ବସିଲେଣି । ନାତି, ନାତୁଣୀଙ୍କୁ ଖୁଆଇ ପିଆଇ ଅନୁରାଧା ଶୁଆଇବାକୁ ଚେଷ୍ଟା କରନ୍ତି । ମାତ୍ର ଏତେ ଦୁଷ୍ଟ ହେଇଛନ୍ତି, ତାଙ୍କ ମାମା ମାନେ ନ ହେଲେ ସେମାନେ କ'ଣ ଶୋଇବେ । ସେମାନଙ୍କର ଦୁଷ୍ଟାମିରେ ମନ ପୁରି ଉଠୁଥାଏ ଦୁହିଁଙ୍କର । ମାତ୍ର ସାନ ଭାଇ ଶୋଭନ୍‌ର ଆସିବା ବିଳମ୍ବରେ ସମସ୍ତେ ଭାବନାରେ ପଡ଼ିଗଲେ । ଶୋଭନ୍ ଯେମିତିଆ ଲୋକ କୋଉଁଠି ଅଟକି ଯାଇଥିବେ । ଏପଟେ ବ୍ୟସ୍ତ ସାଙ୍ଗକୁ, ଦୁଃଶ୍ଚିନ୍ତା ବି ଲାଗି ରହିଥାଏ । ଏପର୍ଯ୍ୟନ୍ତ କେହି ଖାଇ ନାହାନ୍ତି, ସମସ୍ତେ ଅପେକ୍ଷା କରିଛନ୍ତି, ଦାଦା ଖୁଡ଼ୀ ଆସିଲେ ଖାଇବେ । ଶୋଭନ୍ ଭାରି କୌତୁକିଆ ମଣିଷଟିଏ । ହସାଇ ହସାଇ ସମସ୍ତଙ୍କୁ ବେଦମ୍ କରି ପକାଇବେ । ତାଙ୍କ ପାଖରେ ସମ୍ପର୍କର ତାରତମ୍ୟ କିଛି ନଥାଏ । ଏମିତି ମଜା ମଜା କଥା ବର୍ଷକରେ ଥରେ ମାତ୍ର ଶୁଣିବାକୁ ମିଳିଥାଏ । ତା ଆଗରୁ ସବୁ କାମ ସାରି ଦେଇ ସେଭଳି ମଜାରେ କେହି କିଚିରିକିରା କରିବାକୁ ଚାହାନ୍ତିନି ।

ଡେରି ହେଲେ ଢ଼େଉ ଯାଏ ଆସେ କ'ଣ ? ଆଜି ଗୋଟିଏ ଦିନ ଡେରିରେ ଖାଇବା । ପୁଣି ସେମାନେ କିଛି ବିସ୍କୁଟ ଓ ଚିପ୍‌ସ୍ ପ୍ୟାକେଟ୍ ଧରି ଖେଳରେ ମାତି ଗଲେ ।

ଅପରାହ୍ଣ ଚାରିଟା । ସମସ୍ତଙ୍କୁ ସରପ୍ରାଇଜ୍ ଦେଇ ଅଚାନକ ମାରୁତି କାର୍‌ଟି ଆସି ଅଟକିଲା ଗେଟ୍ ପାଖରେ । ଦାଦା ଆସିଲେଣି କହି ସମସ୍ତେ ଆନନ୍ଦରେ ଅଧିର ହୋଇ ଦଉଡ଼ିଲେ ଗେଟ୍ ପାଖକୁ । ମାତ୍ର ଗାଡ଼ିରୁ କେହି ଓହ୍ଲାଇବାକୁ ନାହିଁ । ଗାଡ଼ି ଭିତରକୁ ବାହାରୁ କିଛି ଦେଖା ଯାଉନି । ଡ୍ରାଇଭର ଓହ୍ଲାଇ ପଛ ଦରଜା ଖୋଲି ଛିଡ଼ା

ହେଲା ।

ସମସ୍ତେ ଏକା ସାଙ୍ଗରେ ଚମକି ପଡ଼ିଲେ । ଗୋଟିଏ ଧଳା କନାରେ ଆବୃତ ହୋଇ ପଛସିଟ୍‌ରେ ଜଣେ କିଏ ଶୋଇଛି । ଆଉ ତାଙ୍କ ମୁଣ୍ଡ ପାଖରେ ଆଲୁଳାୟିତ କେଶା ଏକ ନାରୀଟିଏ, ରୀତା ଖୁଡ଼ୀ । ଖୁଡ଼ୀ, ଏ କ'ଣ ହେଲା କହି କାନ୍ଦି ଉଠିଲେ ସମସ୍ତେ । ଡ୍ରାଇଭର ଓ ଅନ୍ୟମାନେ ଶୋଭନ୍‌ର ଶରୀରଟିକୁ ଟେକି ଆଣି ଶୁଆଇ ଦେଲେ ଚଉରା ମୂଳେ ଅଗଣାରେ । ଲୋଟି ପଡ଼ିଲେ ସମସ୍ତେ ଶୋଭନ୍‌ଙ୍କର ମୃତ ଶରୀର ଉପରେ । କ୍ଷଣିକରେ ମିଳାଇ ଗଲା ଆନନ୍ଦର ଲହରୀ । ଶୋକର ଛାୟା ଖେଳିଗଲା ଚାରିଆଡ଼େ । ଅନୁରାଧା, ଅନୁପମ ଦୁଃଖରେ ଭାଙ୍ଗି ପଡ଼ିଲେ । ରୀତା ଖୁଡ଼ୀଙ୍କୁ ଘେରି ସମସ୍ତେ କାନ୍ଦୁଥିଲେ । ମଜାରେ ସମସ୍ତଙ୍କୁ ମଜେଇ ରଖୁଥିବା ଶୋଭନ ଯେପରି ସମସ୍ତଙ୍କ ମଜା ଲୁଟି ନେଇଗଲେ । ଉତ୍ସବ ମୁଖର ବିଶୁବ ସଂକ୍ରାନ୍ତିରେ ଲିଭିଗଲା ସବୁରି ମୁହଁରୁ ହସ । ପ୍ରସ୍ତୁତ ହୋଇଥିବା ପଣା ପାତ୍ରଟି ଶୋଭନର ମୁଣ୍ଡ ପାଖରେ ଥୋଇ ପାଣି ଛଡ଼ାଇ ଦେଲେ ଅନୁରାଧା ଓ ଅନୁପମ । ସମସ୍ତେ ଆଣ୍ଠୁମାଡ଼ି ପ୍ରାର୍ଥନା କଲେ ବିଶ୍ୱନିୟନ୍ତାଙ୍କୁ ଶୋଭନର ଆତ୍ମା ସଦ୍‌ଗତି ପାଇଁ ।

ସଂସ୍କାର, ସଂସ୍କୃତି ଓ ପରମ୍ପରାକୁ ଜାବୁଡ଼ି ଧରିଥିବା ଏହି ପରିଣତ ବୟସରେ ଅନୁପମ୍ ଅନୁରାଧା ଦୁହେଁ ଭାଙ୍ଗି ପଡ଼ିଥିଲେ । ଶୋଭନ୍‌ର ଆକସ୍ମିକ ବିୟୋଗରେ । ଉତ୍ସବ ମୁଖର ସନ୍ଧ୍ୟାଟି କ୍ରନ୍ଦନର ରୋଳରେ ଭରିଗଲା ।



# ମୋତି

ମୋଡ଼ି ମାଡ଼ି ହୋଇ ମୋତି ବାରଣ୍ଡାର ଗୋଟିଏ କୋଣରେ ଶୋଇଛି । ଆଖିରୁ ଧାର ଧାର ହୋଇ ଲୁହ ଗଡ଼ି ଯାଉଛି ତାର । ଅନବରତ ପାଣି ଗଡ଼ି ଗଡ଼ି ଆଖି ତଳେ ପରସ୍ତେ କଳା ପଡ଼ି ଯାଇଛି । ମେଞ୍ଚା ମେଞ୍ଚା ଲେଞ୍ଜରା ଆଖି କୋଣରେ ଜମାଟ ବାନ୍ଧି ଶୁଖି ଯାଇଛି । ଧଳା ଚିକ୍ ଚିକ୍ ଦେହର ରଙ୍ଗରେ ମଇଳା ଧରି ଆସିଲାଣି । ଠାଏଁ ଠାଏଁ ବାଳ ସବୁ ଉପୁଡ଼ି ଯାଇଛି । ବାଳ ଉଠିଯାଇଥିବା ସ୍ଥାନ ଗୁଡ଼ିକ ଅତି ବିକୃତ ଦେଖା ଯାଉଛି । ମାଛି ଗୁଡ଼ିକ ତାଙ୍କ କାମରେ ବ୍ୟସ୍ତ । ଭଣ ଭଣ କରି ଚାରିପଟେ ବୁଲି କିଏ ବାସ୍ନା ନେଉଛି ତ କିଏ ତା ଦେହରେ ବସି ସଲ ସଲ କରୁଛି । ମୋତି ଯେମିତି ନିସ୍ତେଜ ହୋଇ ପଡ଼ିଛି । ଟିକିଏ ବି ଶକ୍ତି ସଞ୍ଚୟ କରିବାର ଆଉ ତାର ସାହାସ ନାହିଁ କି ବଳ ପାଉନି । ଯାହାକୁ ଆଶ୍ରା କରି ତା'ର ବାପା, ମା ଘରଦ୍ୱାର ଛାଡ଼ି ସେ ଆସିଥିଲା, ସେ ବି ପାଖରେ ନାହିଁ । ଏଠି ତାହାର ଆହା କରିବାକୁ କେହି ନାହିଁ । ଏଇ ବାବୁଙ୍କ ପିଣ୍ଡାହିଁ ତାର ଆଶ୍ରା ହୋଇଛି । ରାତିରେ ପଛପଟେ ସିଡ଼ି ତଳେ ମୁଣ୍ଡ ଗୁଞ୍ଜିବା ସ୍ଥାନଟି ସେ ଖୋଜି ପାଇଛି । ତାର ଭଲ ମନ୍ଦ ଖବର ନେବାକୁ କେହି ନାହାନ୍ତି ।

ବାବୁଙ୍କ ଘର ପିଲାମାନଙ୍କର ସ୍ନେହ, ଶ୍ରଦ୍ଧା ଶେଷ ଜୀବନରେ ତାକୁ ଏଠାକୁ ଟାଣି ନେଇ ଆସିଛି । କିନ୍ତୁ ଏବେ ଆଉ ସେ କିଛି କାମ କରିପାରୁନି । କିଏ ବା ତାକୁ ସେମିତି ଖାଇବାକୁ ଦେବ । ତାର ବିକୃତ ଦେହ ଦେଖି ଘୃଣାରେ ସମସ୍ତେ ନାକ ଟେକୁଛନ୍ତି । ଟେକା ପଥର ଫୋପାଡୁଛନ୍ତି । ଦୁର୍ ... ଦୁର୍ ... କହି ତା ଉପରକୁ ବାଲି ପକାଉଛନ୍ତି । ମୋତି କେବଳ କୁଳୁ କୁଳୁ ଆଖିରେ ସେମାନଙ୍କୁ ଅନେଇ ରହିଛି । ଏହା ବ୍ୟତୀତ ତାର ବା ଆଉ କରିବାର କ'ଣ ଅଛି ?

ବାପା, ମାଆ ପାଖକୁ ଫେରି ଯିବାର ଉପାୟ ନାହିଁ । ବାପା, ମାଆ ବଞ୍ଚିଛନ୍ତି କି ନାହିଁ ତାକୁ ବି ଜଣା ନାହିଁ । ଗତ ବର୍ଷ ଟିଙ୍ଗି ସଙ୍ଗେ ଦେଖା ହୋଇଥିଲା । ଟିଙ୍ଗି ତାର ସହୋଦର ଭଉଣୀ । ତାଠାରୁ ଶୁଣିଥିଲା ମାଆ ତାର ମରି ଯାଇଛି । ବାପା କୁଆଡ଼େ

ଚାଲି ଯାଇଛି ଯେ, ଦେଖା ନାହିଁ । ଦୁଇ ଭଉଣୀ ସୁଖ ଦୁଃଖ ହେଲେ, ବହୁତ କାନ୍ଦିଲେ । ପାଞ୍ଚ ଭାଇରେ ଦୁଇ ଭଉଣୀ । ମୋତି ଆଉ ଟିଙ୍ଗି । ଭାଇମାନେ ଅତି ଉଦ୍ଧତ ସ୍ୱଭାବର । ଦୁଇ ଭାଇ ବସ୍ ଚାପାରେ ମରି ଯାଇଛନ୍ତି । କେବେ କେମିତି ଦୁଇ ଭଉଣୀ ଚୁପ୍ ଚୁପ୍ ଦେଖା କରି ଏମିତି ଟିକିଏ ନିଜ ନିଜର ସୁଖ ଦୁଃଖ ହୁଅନ୍ତି । ଭାଇମାନେ ସୁରାକ ପାଆନ୍ତି ନାହିଁ । ନହେଲେ କେତେ ଅନର୍ଥ ହୋଇ ସାରନ୍ତାଣି ।

ପିଲାଦିନର ଅଭୁଲା ସ୍ମୃତିରେ ସେ ଖାଲି ଛଟପଟ ହୁଏ । ମୋତି ଥିଲା ବାପା, ମାଆଙ୍କର ଖୁବ୍ ଗେଲ ବସରିଆ ଝିଅ । ଭାଇମାନେ ବି ବହୁତ ସ୍ନେହ କରୁଥିଲେ । ପାଞ୍ଚ ଭାଇ ଭଉଣୀରେ ମୋତି ଥିଲା ଖୁବ୍ ସୁନ୍ଦରୀ । ଦେହର ରଙ୍ଗ ଧଳା ସାଙ୍ଗକୁ ମଥାରେ କଳାଚିପା ତାକୁ ଖୁବ୍ ମାନୁଥିଲା । ସତେ ଯେମିତି ସେ ଥିଲା ସମସ୍ତଙ୍କ ଠାରୁ ପୁରାପୁରୀ ଭିନ୍ନ । ମାଆ, ବାପା ଯାହା ଆଣୁଥିଲେ, ମୋତିର ଅଂଶ ସେଥିରେ ଅଧିକ । ଭାଇମାନେ ବି ଜାଣି ଶୁଣି ମିଛରେ କଳି କରୁଥିଲେ ଓ ଚିଡ଼ାଉଥିଲେ । କିନ୍ତୁ ମୋତି ପ୍ରତି ଆଦର ଯତ୍ନ ଥିଲା ଅପରିସୀମ । ବେଳେ ବେଳେ ମୋତି ଫୁଲେଇ ହେଇ ରୁଷୁ ଥିଲା, ଆହୁରି ଅଧିକ ସ୍ନେହ ପାଇବାକୁ । ସମସ୍ତଙ୍କ ଅଂଶରୁ ଖାଇ ପିଇ ମୋତି ଗୋଲ ଗାଲିଆ ହୋଇ ବଢ଼ିବାକୁ ଲାଗିଲା । ଭାଇମାନେ ସବୁଦିନେ ନେଇ ତାକୁ ପୋଖରୀରୁ ଗାଧୋଇ ଆଣନ୍ତି । ଯେଉଁଠିକି ଯାଆନ୍ତି, ସାଥିରେ ମୋତିକୁ ବି ନେଇ ଯାଆନ୍ତି । କିଶୋରୀ ମୋତିର ଡଉଲ ଡାଉଲ ଚେହେରା ସମସ୍ତଙ୍କୁ ଆକୃଷ୍ଟ କରେ ।

ଦିନେ ସନ୍ଧ୍ୟାରେ ଭାଇ ଭଉଣୀ ସମସ୍ତେ ମିଶି ଆର ସାଇକୁ ବୁଲି ବାହାରିଲେ । ସେମାନେ ଶୁଣିଥିଲେ ଆର ସାଇର ରାମୁ ମହାନ୍ତିର ଝିଅ ବାହାଘର । ଭଲ ଭଲ ଖାଦ୍ୟ ପ୍ରସ୍ତୁତ ହୋଇଛି । ମନ ଛନ ଛନ ହେଲା, ଖାଇବାର ବାସ୍ନା ଆସି ନାକରେ ବାଜିଲା । ସେମାନେ ଦେଖିଲେ ତାଙ୍କ ପରି ଅନ୍ୟମାନେ ବି ଆସିଛନ୍ତି । ବେଶ୍ ମନ ଖୁସିରେ ପଣସ ଗଛ ମୂଳେ ଗୋଟିଏ କଡ଼ରେ ଖାଇ ବସିଲେ । ଯେତେ ସବୁ ଭଲ ଜିନିଷ ମୋତିକୁ ବାଛି ବାଛି ଆଣି ଦେଉଥାନ୍ତି ଭାଇମାନେ । ଆଉ ମୋତି ମନ ଖୁସିରେ ଖାଇ ଚାଲିଥାଏ । ଯା ମଧ୍ୟରେ ଜାକି ଆସି ଦୁଇ ତିନିଥର ବୁଲି ଗଲାଣି । ସତେ କି ସେ ସମସ୍ତଙ୍କର ଖାଇବା ତଦାରଖ କରୁଛି । କ'ଣ ସବୁ କହି ଯା ତା ପାଖ ଦେଇ ଘସି ହୋଇ ଚାଲି ଯାଉଛି । ମୋତିର ଯଦିବା ନଜର ପଡ଼ିଛି ଜାକି ଉପରେ ହେଲେ, ଏତେଟା ଗୁରୁତ୍ୱ ଦେଇନି । ବିଶେଷ କରି ଜାକି ତାରି ପାଖରେ ବେଶୀ ପାଖେଇ ପାଖେଇ ହେଉଛି, ଯେମିତିକି ମୋତି ସଙ୍ଗେ କଥା ହେବାକୁ ଚାହେଁ । ମୋତି କିନ୍ତୁ ଚିଙ୍ଗୁଡ଼ି ମୁଣ୍ଡଟି ଅତି ଯତ୍ନରେ ଖାଇବାରେ ବ୍ୟସ୍ତ । ମୋତିର ଲୋଭନୀୟ ଚେହେରା ଜ୍ୟାକିକୁ ଭାରି ଭଲ ଲାଗିଛି । ମୋତିର ଆଖି ବି ଜ୍ୟାକିର ଚେହେରା

ଉପରେ ଥରେ ଥରେ ବୁଲି ଯାଉଛି । ଜ୍ୟାକିର କଳା ମଚ ମଚ ଦେହରୁ ଯେମିତି ତେଲ ଝରି ପଡୁଛି ।

ସେ କୁଆଡ଼େ ମହାନ୍ତି ସାହିର ଦାଦା ବୋଲି ମୋତି ଆଗରୁ ଶୁଣିଛି । ଜ୍ୟାକି ଯେଉଁଠି ଯାଉଛି, ତା ପଛରେ ଦଳେ ପଲଟନ୍ ଚାଲିଛନ୍ତି । ମୋତି ଖାଇବା ମଝିରେ ଥରେ ଥରେ ଦେଖୁଥାଏ ଜ୍ୟାକିକୁ । ଆଖିରେ ଆଖି ମିଶି ଯାଉଥାଏ ଓ ମୋତି ଲାଜରେ ଅନେଇ ନ ପାରି ତଳକୁ ମୁହଁ ପୋତି ଦିଏ । ମୋତିର ମନେ ହେଲା, ଜ୍ୟାକିର ବଡ଼ ବଡ଼ ଡୋଳା ଦୁଇଟି ଯେମିତି ତାକୁ ପରିକ୍ରମା କରୁଛି । ସେ ବି ଭିତରେ ଭିତରେ ଉଲ୍ଲସିତ ହୋଇ ଉଠୁଥାଏ । ମୋତି ଆଉ ଜ୍ୟାକିକୁ ଲକ୍ଷ୍ୟ କରୁଥାଏ ପିଟର । ପିଟର ଦଉଡ଼ି ଆସି ମୋତିର ଭାଇମାନଙ୍କୁ କ'ଣ କହିଦେଲା କେଜାଣି, ତାର ଭାଇ ମାନେ ମାଡ଼ି ଗଲେ ଜ୍ୟାକିକୁ ଆକ୍ରମଣ କରିବାକୁ ।

ପିଟର ମୋତି ସାହିର । ସେ ମନେ ମନେ ନୂଆ କରି ମୋତିକୁ ଭଲ ପାଇବାରେ ଲାଗିଛି । ଜ୍ୟାକିର ହାବଭାବ ସେ ଆଦୌ ସହି ପାରିଲା ନାହିଁ । ଜ୍ୟାକି ମଧ ନଛୋଡ଼ ବନ୍ଧା । ଆଉ ଖାଇବେ କ'ଣ ? ଉଭୟ ସାହି ମଧ୍ୟରେ ଚାଲିଲା ଘୋର ତର ଯୁଦ୍ଧ । ମୋତି ଭୟରେ ଛାନିଆ । ଜ୍ୟାକିର ସଦଳବଳେ ଆଗେଇ ଆସିଲେ ଯୁଦ୍ଧଂ ଦେହି ଡାକରା ଦେଇ । ଖଣ୍ଡିଆ ଖାବରା କରି ଛାଡ଼ି ଦେଲେ ପିଟର ଓ ମୋତିର ଭାଇମାନଙ୍କୁ । ଆମ ସାହିରେ ଆସି ଦାଦା ଗିରି କରିବ, ଛାଡ଼ିବୁ ନାହିଁ, ମାରି ଶୁଆଇ ଦେବୁ । ଜ୍ୟାକିର ଭୟଙ୍କର ଚାହାଣି ଦେଖି ପଣସ ଗଛ ତଳେ ଲୁଚି ଯାଇଥାଏ ମୋତି । ସେ ସ୍ଥାନ ଛାଡ଼ି ପଳେଇଛନ୍ତି ପିଟର ଓ ତା'ର ସାଥିମାନେ ।

ମୋତି ଥର ଥର କମ୍ପୁଥାଏ । ଯାହାର ମନ ଯେଉଠି, ଜ୍ୟାକି କିନ୍ତୁ ମୋତିକୁ ଲକ୍ଷ୍ୟ କରିଥାଏ । ମୋତିର ଭୟାତୁର ଅବସ୍ଥା ଦେଖି ତାର ସାଥୀମାନଙ୍କୁ ବିଦା କରି ଜ୍ୟାକି ଆସି ପହଞ୍ଚିଲା ତା ପାଖରେ । ତାକୁ ବହୁତ ଆଦର କରି ପ୍ରେମ ନିବେଦନ କଲା । ଜ୍ୟାକିର ପୌରୁଷତ୍ୱ ଆଗରେ ହାରମାନିଲା ମୋତି । ଚାଲିଲା ଜ୍ୟାକି ସହିତ ତା ସାହିକୁ । ସେହି ଦିନଠୁ ସେ ଆଉ ତାର ସାହିକୁ ଫେରି ନାହିଁ । ବାପା, ମାଆ, ଭାଇ,ବନ୍ଧୁ କୁଟୁମ୍ବ ସମସ୍ତେ ପର ହୋଇଗଲେ । ଜ୍ୟାକିର ଆଦରରେ ମୋତି ସମସ୍ତଙ୍କୁ ଭୁଲି ଗଲା । ମୋତି ଚାଲିଲା ତାର ନୂଆ ସଙ୍ଗୀ ସହିତ ନୂଆ ସଂସାର ପଥରେ ।

ବିଚିତ୍ର ଏଇ ଦୁନିଆ । ପ୍ରେମ ଅନ୍ଧ, ନିଆଁ ଅନ୍ଧ, ପାଣି ଅନ୍ଧ । ପ୍ରେମରେ ମତୁଆଲା ମୋତି ବି ଅନ୍ଧ ହୋଇଯାଇଥିଲା ସେଦିନ । ଆଜି ଭାରି ମନେ ପଡୁଛି ତା'ର ଆତ୍ମୀୟସ୍ୱଜନଙ୍କୁ । ସାତବର୍ଷରୁ ଅଧିକ କାଳ ହେଲାଣି । ଦେଖିଲେ ବି ହୁଏତ କିଏ ତାର ଭାଇ, କିଏ ତାର କୁଟୁମ୍ବ ସେ ଚିହ୍ନି ପାରିବନି । ଗୋଟିଏ ଯୁଗ ପରି

ଲାଗୁଛି । ଯେଉଁମାନେ ତା' ପାଇଁ ଲଢ଼େଇ କଲେ, ସେ ସେମାନଙ୍କୁ ଭୁଲିଗଲା, ଜ୍ୟାକିର ମନଭୁଲାଣିଆ କଥା କେଇପଦରେ । ସେମାନଙ୍କ ସହିତ ସେ ଅନ୍ୟାୟ କରିଛି । ସମସ୍ତଙ୍କର ଅଭିଶାପ ତା ଉପରେ ପଡ଼ିଛି । ସେ ତାର ଫଳ ଭୋଗ କରୁଛି । ଯିଏ ତା ଯୌବନର ସମସ୍ତ କିଛି ଲୁଟି ନେଇଛି, ସେଇ ଜ୍ୟାକି ବି ଆଜି ତା ପାଖରେ ନାହିଁ, ମୁହୂର୍ତ୍ତଟିଏ ନ ଦେଖିଲେ, ଯିଏ ପାଗଳ ହୋଇ ଯାଉଥିଲା । ଅକାଳ ବାର୍ଦ୍ଧକ୍ୟ ତାକୁ ମାଡ଼ି ବସିଛି । ଜ୍ୟାକିର ସାତ ସାତଟି ସନ୍ତାନକୁ ଜନ୍ମ ଦେଇଥିଲା ମୋତି । ସେଦିନ ଜ୍ୟାକିର ଆନନ୍ଦ କହିଲେ ନ ସରେ । ବାପ ହୋଇ ଗର୍ବରେ ଛାତି ଫୁଲେଇ ଚାଲୁଥିଲା ସେ । ମୋତି ତାର ସନ୍ତାନର ଜନନୀ । ମାତ୍ର କିଛିଦିନ ନ ଯାଉଁଣୁ ହଠାତ୍ ରୋଗୀଣା ହୋଇପଡ଼ିଲା ମୋତି । ଜ୍ୟାକି ଛୁଆଙ୍କର ଦାୟିତ୍ୱ ବୁଝିବା ସଙ୍ଗେ ସଙ୍ଗେ ମୋତିର ଯତ୍ନ ନେଲା । ପିଲାମାନେ  ବେଶ୍ ହୃଷ୍ଟପୁଷ୍ଟ ହୋଇ ବଢ଼ିବାକୁ ଲାଗିଲେ । ମା'କୁ ଛାଡ଼ି ବାପା ପଛରେ ଘୁରି ବୁଲିଲେ । ମାଆର ରୋଗ ଆଉ ଭଲ ହେଲା ନାହିଁ । ବହୁତ ଦୁର୍ବଳ ହୋଇ ଯାଇଛି ମୋତି । ଜ୍ୟାକି ତାକୁ ଭରସା ଦେଇଥିଲା ସାରାଜୀବନ ତା ପାଖେ ପାଖେ ରହିବ । ମାତ୍ର ନିତି ମଳୁକୁବା ପଚାରେ କିଏ ? ଆଗରୁ ଦୁଇ ତିନିଦିନରେ ଥରେ ଆସି ମୋତି କଥା ବୁଝୁଥିଲା ଜ୍ୟାକି । କିନ୍ତୁ ଏଥର ପନ୍ଦର ଦିନ ବିତିଗଲାଣି ତାର ଦେଖା ନାହିଁ ।

ପୁରୁଣା ଦିନର କଥା ଭାବି ଭାବି ଆଖିରୁ ଲୁହ ଗଡ଼ାଏ ମୋତି । ସେଦିନ ପରି ଲାଗେ, ଏଇ ବାବୁଙ୍କର ପିଲାମାନେ କେତେ ସରାଗରେ ତାକୁ ଡାକି ଆଣି ଖାଇବାକୁ ଦେଉଥିଲେ । ଖୁସି ଗପ ହେଉଥିଲେ ତା ସହିତ । ନିଜ ଖାଇବା ବିସ୍କୁଟ୍, ପାଉଁରୁଟି, କେକ୍ ଲୁଚାଇ କରି ତାକୁ ଦେଉଥିଲେ ।

ଆଜି ବି ସେଇମାନେ ଘୃଣାରେ ହେଲେ ବି କେତେବେଳେ ଭାତ ମୁଠାଏ, ମୁଢ଼ି ଦୁଇଟା ତାକୁ ଖାଇବାକୁ ଦେଉଛନ୍ତି । ସେଇମାନଙ୍କୁ ତ ଭରସା କରି ଏଠି ପଡ଼ିରହିଛି ସେ । କେତେବେଳେ ଏ ଜୀବନ ଛାଡ଼ିଯିବ, ଠାକୁରଙ୍କୁ ଡାକୁଥାଏ ମୋତି । ସେ ଆଉ ବଞ୍ଚିବନି । ରାମି ହାତରେ ଖବର ଦେଇଛି ଜ୍ୟାକିକୁ ଆସିବାକୁ । ଜ୍ୟାକିକୁ ଥରେ ସେ ଆଖି ପୁରାଇ ଦେଖିବ । କିନ୍ତୁ ଜ୍ୟାକି କାହିଁ ? ସେ କୁଆଡ଼େ ଏବେ ସୁନ୍ଦରୀ  ପଛରେ ମାତିଛି । ତାର ଆଉ କିଛି କରିବାର ନାହିଁ । ଦେହରେ ଅସହ୍ୟ ଯନ୍ତ୍ରଣା । ଜ୍ୟାକିର ଅଦର୍ଶନରେ ମନରେ ତାର ଗଭୀର ଦୁଃଖ । ଲାଙ୍ଗୁଡ଼ଟିକୁ ଜାକି ଜୁକି ସିଡ଼ି ତଳେ କୁଁ କୁଁ ହୋଇ କାନ୍ଦିବାକୁ ଲାଗିଲା ମୋତି । ତାର କାନ୍ଦଣା ସ୍ୱର କେହି ଶୁଣି ପାରିଲେ ନାହିଁ । କାହାକୁ ବା ଦୋଷ ଦେବ ସେ । ତାହା ସେମାନଙ୍କର ଜାତିର ଗୁଣ । ଖାଇସାରି ଲାଙ୍ଗୁଡ଼ ହଲେଇ ଦେବେ । ସମସ୍ତେ କ'ଣ ଆଉ  ମୋତି ?



# ଅଭିମାନୀ ଅପରାଜିତା

•

ଦୁଇଟି ସନ୍ତାନ - ପୁଅ ଝିଅ ଓ ସ୍ତ୍ରୀ ଅପରାଜିତାକୁ ନେଇ ମୋର ସଂସାର । ବାପା ! ମୋର ବିଭାଘର ପୂର୍ବରୁ ସଂସାରରୁ ବିଦା ହୋଇ ଯାଇଛନ୍ତି । ମାଆବି ଗତ ବର୍ଷ ଆରପୁରକୁ ଚାଲିଗଲେ । ସେକ୍ରେଟେରୀଏଟ୍‌ର କିରାଣୀ ଚାକିରୀ । ଚାକିରୀ ଆସି ବାରବର୍ଷ ହେଲାଣି । ଇତି ମଧ୍ୟରେ ଦୁଇଟି ସନ୍ତାନକୁ ଜନ୍ମ ଦେଇଛି ଅପରାଜିତା । ପିଲା ଦୁଇଟି ମାଆ ପରି ଦେଖିବାକୁ ଗୋରା ତକ ତକ ଓ ଡଉଲ ଡାଉଲ । ଦୁଇଟା ଯାକ ପକ୍କା ଦୁଷ୍ଟ ହୋଇଛନ୍ତି । ବାପା ଆସିଗଲେ, ବାପା ଆସିଗଲେ, ଦଉଡ଼ି ଆସିଲେ ଚିକୁ ଓ ପିଙ୍କି । ଆସିବା ମାତ୍ରେ ଆଗେ ବହେ ଗେଲ ହୋଇ ଯାଆନ୍ତି ଦୁହେଁ । ଦୁଇଜଣଙ୍କୁ ଦୁଇଟା ଚକ୍‌ଲେଟ୍ ଧରାଇଦେଲେ କାମ ଛୁଟି । ସେମାନେ ତାଙ୍କ ବାଟରେ ଯାଇ ସାଙ୍ଗଙ୍କ ମେଳରେ ପୁଣି ଖେଳରେ ମାତି ଯାଆନ୍ତି । ଚିକୁଟା ତ ପୁରା ବିଛୁଆତି । ବାପାଙ୍କୁ ଯେତେ ସବୁ ସିକ୍ରେଟ ଖବର ଶୁଣାଏ ସେ । ସତେ କି ଗୋଇନ୍ଦା ବିଭାଗର ଅଫିସରଟିଏ । ବଡ଼ ମାନଙ୍କ କଥାରେ ମୁଣ୍ଡ ପୁରାଇବା ହେଉଛି ତାର କାମ । ଅପରାଜିତା ପଡ଼ୋଶୀ ଘର ସାମ୍ନାରେ ବସି ଉଲ୍ ବୁଣୁଛି ଓ ସେମାନଙ୍କର ଗପସପ ଚାଲିଛି । କେତୋଟି ସ୍ତ୍ରୀ ଲୋକ ଜୁଟିଗଲେ ଯାହା ହୁଏ । ମୁଁ ସବୁଦିନ ଅଫିସରୁ ଫେରିଲା ବେଳକୁ ପ୍ରାୟ ଚାହା ପିଇ ଦେଇ ଆସିଥାଏ । ତେଣୁ ଅପରାଜିତା ଉପରଓଳି ଚାରିଟାରୁ ଚାହା କାମ ବଢ଼େଇ ଦେଇଥାଏ । ସ୍ୱାମୀ ଆସିଲେ ନାକରେ ନିଶ୍ୱାସ ବନ୍ଦ କରି ତରବର ହୋଇ ଚା ପାଣି ଚାପିବାକୁ ପଡ଼େନା ।

ସେଦିନ ଚକ୍‌ଲେଟ୍ ନେଇ ସାରି ବଡ଼ ବଡ଼ ଆଖି କରି ମୋତେ ଅନେଇଲା ଚିକୁ । ଏ ପିଙ୍କି, ତୁ ଗଲୁ ଏଠୁ । ଚକ୍‌ଲେଟ୍ ତ ନେଲୁ, ଆଉ ଏଠି ତୋର କ'ଣ କାମ ଯେ ?

ତୋର କ'ଣ ଗଲା ? ମୁଁ ରହିଲି କି ଗଲି । ତୁ ତୋ କାମରେ ଯାଉନୁ । ମୁଁ ମୋ ଡାଡିଙ୍କ ପାଖରେ ରହିବି ।

ଆଚ୍ଛା, ଆଚ୍ଛା । ତୋର ଡାଡିଙ୍କ ପାଖରେ କ'ଣ କାମ, ଶୀଘ୍ର ସାରେ, ଆଉ

ଏଠାରୁ ଯାଆ । ମୁଁ ଅନୁମାନ କରିନେଲି, ନିଶ୍ଚେ ଆଜି ଗୋଟିଏ କ'ଣ ସିକ୍ରେଟ୍ କଥା ଅଛି ଚିକୁର । ଯାହାକି ସେ ପିଙ୍କିକୁ ତଡ଼ିବାକୁ ବସିଛି ।

ପିଙ୍କି କହିଲା ଦେଖିଲ ଡାଡି ! ଚିକୁ କେମିତି ମୋତେ ତଡ଼ି ଦେଉଛି ।

କ'ଣ ହେଲା, ଏଁ କ'ଣ ହେଲା ? କାହିଁକି ଦୁଷ୍ଟାମି କରୁଛୁ ଚିକୁ । ମୁଁ ଟିକେ ପିଙ୍କିର ପକ୍ଷ ନେଇ ଗଲି । ମୁଁ ଦୁଷ୍ଟାମି କରୁଛି, ହଇରେ ମୁଁ ଦୁଷ୍ଟ ବୋଲି ପ୍ରମାଣ କରୁଛୁ । ଥୋଇବି ଦୁଇଟା ଯେ ବୁଝିବୁ ଲୋ ଝିଅ । ଚିକୁ ରାଗରେ ପିଙ୍କି ଆଡ଼କୁ ମାଡ଼ି ଆସିଲା ।

ମୁଁ ଦୁହିଁଙ୍କ ମଝିରେ ଛିଡ଼ା ହୋଇ ପାଟି କରି ଉଠିଲି ଭାଗ, ଭାଗ, ଏଠୁ ।

ନାଇଁ ଡାଡି, ମୋର କଥା ଅଛି କହିଲା ପିଙ୍କି । ହେଉ ଠିକ୍ ଅଛି, ତୁ ତୋର କଥା ସାରି ଯାଉନୁ । ପୁଣି ଚିକୁର ତାଗିଦ୍ ।

ଟାୱେଲ୍‌ରେ ମୁହଁ ପୋଛୁ ପୋଛୁ ପିଙ୍କିକୁ କୋଳରେ ବସାଇ ପଚାରିଲି, ଆଚ୍ଛା ମାମା କହିଲୁ, ତୋର କ'ଣ କଥା ଅଛି । ପିଙ୍କି ଡାଡିର କାନ ପାଖକୁ ମୁହଁଟି ନେଇ ଯାଇ କହିଲା, ଆଜି ମୋର ଚାଉମିନ୍ ଖାଇବାକୁ ଭାରି ଇଚ୍ଛା ହେଉଛି ଡାଡି ।

ଓହୋ ! ଆରେ ଏଇ କଥା । ଠୋ ଠୋ ହୋଇ ହସି ଉଠିଲି ମୁଁ । ଠିକ୍ ଅଛି, ହେଉ ତୁ ଯାଆ ।

ଡାଡିଙ୍କର ହସ ଦେଖି ପିଙ୍କିର ଔଜଲ୍ୟ ଭରା ମୁହଁଟି ହଠାତ୍ ମଳିନ ପଡ଼ିଗଲା । ମୁହଁକୁ ଫଣ ଫଣ କହିଲା, ମୋତେ ତୁମେ ଥଟ୍ଟା କରୁଛ ଡାଡି ।

ଆରେ ନାଇଁ, [illegible]ଙ୍ଗମ, ପୁଣି କୋଳକୁ ଭିଡ଼ି ଆଣି ତା କାନରେ କ'ଣ ସବୁ କହିଗଲି ।

ଖୁସିରେ ନାଚି ନାଚି ସେଠାରୁ ଚାଲିଗଲା ପିଙ୍କି । ଏଣେ ଚିକୁର ତ ପେଟ ଫାମ୍ପି ଗଲାଣି । କଥାଟି ଶେଷ ନ କଲା ପର୍ଯ୍ୟନ୍ତ ତା ପେଟରେ ଚକ୍‌ଲେଟ୍ ବି ହଜମ ହେବନି ।

ହଁ, କ'ଣ ହେଲା, କୁହ ବର ଖୁର୍‌ଦାର୍ । ଦୁଇ ତିନି ଥର ଛେପ ଢୋକିଲା ଚିକୁ । କଥାଟା କେମିତି ଆରମ୍ଭ କରିବ ବୋଧ ହୁଏ ଭାବୁଥିଲା ସେ ।

ଡାଡି ! ତୁମେ କୁଆଡ଼େ ଆଜି ବୀଣା ଆଣ୍ଟି ଆଡ଼କୁ ଅନାଇଥିଲ । ବୀଣା ଆଣ୍ଟି ମମ୍ମିଙ୍କ ପାଖରେ ଗପୁଥିଲା । "ସୌମ୍ୟଭାଇଙ୍କର ଅନାଇବାର ଢଙ୍ଗଟା ଅଲଗା ଥିଲା ।" ଏକ ନିଶ୍ୱାସରେ କହି ଦେଇ ଚିକୁ ଡେଇଁ ଡେଇଁ ଚାଲି ଗଲାଣି ।

ମୁଁ ହାତରେ ଧରିଥିବା ସାବୁନଟି ହଠାତ୍ ତଳେ ଖସି ପଡ଼ିଲା ।

ପକ୍କା ଶଇତାନ୍‌ଟା ଏ ଚିକୁ ।

ବାଣ୍ଡରୁ ଅପରାଜିତାର ହସ ଶୁଭୁଥିଲା । ହସଟି ଭାରି ବେପରୁଆ ଲାଗିଲା ମୋତେ । ଏ ହସଟି ଆଜି ନିଶ୍ଚିତ ଭାବରେ ଏକ କଳା ହାଣ୍ଡିଆ ମେଘର ରୂପ ନେବ

ବୋଲି ଅନୁମାନ କରିନେଲି ମୁଁ ।

ଆରେ ପୁଅ ପିଲାମାନେ ଝିଅ ପିଲାମାନଙ୍କୁ ଅନେଇବେ ନାହିଁ ତ କିଏ ଅନେଇବେ ? ସତ କଥା ଆଜି ସକାଳଟା ଭାରି ଉଦାସିଆ ଉଦାସିଆ ଲାଗୁଥିଲା । ହଠାତ୍ କବାଟ ଖୋଲି ବାହାରକୁ ବାହାରି ଦେଖିଲି, ପାଗଟି ଭାରି କଦର୍ଯ୍ୟ ହୋଇଛି । ଶରତ ଆଗମନରେ କେବେ କେବେ ଏଇ ମେଘର ତାଡ଼ନା ପରିବେଶକୁ ଅଧିକ ଗମ୍ଭୀର କରିଦିଏ । ହଠାତ୍ ଯେମିତି ଆକାଶରେ ମେଘ ଘୋଟି ଯାଇ ବର୍ଷିବ ବର୍ଷିବ ହେଉଥାଏ ।

ଆକାଶକୁ ଅନେଇଲି ମୁଁ । ଏତିକି ବେଳେ ବୀଣା ଏକ ବନ ମୟୁରୀ ପରି ସାମ୍ନାରେ ଦେଖାଦିଏ । ଓଢ଼ଣୀ ନ ଥିବା କମିଜଟି ପିନ୍ଧିଥିଲା ସେ । ସତ କହିବାକୁ ଗଲେ, ତାର ଉନ୍ନତ ବକ୍ଷୋଜ ଦୁଇଟି ମୋତେ ଆକୃଷ୍ଟ କରିଥିଲା । ଆଖି ଦୁଇଟି ବିସ୍ଫାରିତ ହୋଇ ଯାଇଥିଲା ମୋର ।

ବୀଣା ବି ତ ମୋତେ ଅନେଇ ହସି ଦେଇ ଥିଲା । ମୁଁ ବି ନିଜକୁ ରୋକି ନ ପାରି, ତା ହସରେ ମୋ ହସକୁ ମିଶାଇ ଦେଇଥିଲି ।

କି ଝିଅ ଏଇ ବୀଣା ! ସକାଳ କଥା ପ୍ରାୟ ପାଶୋରି ଗଲିଣି ମୁଁ । ସେଇ ସାମାନ୍ୟ କଥା ନେଇ ସେ ଅପରାଜିତା ପାଖରେ ଗପିବା କ'ଣ ଦରକାର ଥିଲା । ଝିମିଟି ଖେଳରୁ ମହାଭାରତ, ଦ୍ରୌପଦୀଙ୍କର ଟିକିଏ ହସ କାଳ ହୋଇଥିଲା ପାଣ୍ଡବମାନଙ୍କ ପାଇଁ । ଆଜି ଘରେ ଏକ ନିଶ୍ଚିତ ଭୟଙ୍କର ଅବସ୍ଥା ସୃଷ୍ଟି ହେବ ଭାବି ମନଟା ମୋର ବିଷର୍ଣ୍ଣ ହୋଇ ଉଠିଲା । ଅପରାଜିତା ବି ଅଦ୍ଭୁତ କିସମର ଝିଅଟିଏ । ମୋତେ ନେଇ ଆଉ କାହା ସହିତ କୌଣସି କଥା ସେ ସହି ପାରେନା ।

ନିପଟ ମଫସଲି ଅଞ୍ଚଳର ମ୍ୟାଟ୍ରିକ ପାଶ୍ କରିଥିବା ଝିଅଟିଏ ଏଇ ଅପରାଜିତା । ବାପା ତା'ର ଜଣେ ଅତି ସରଳ, ଅମାୟିକ, ଭଦ୍ରଲୋକ ଥିଲେ । ଚାଷୀ ପରିବାର । ପ୍ରତିଦିନ ସନ୍ଧ୍ୟାରେ ଭାଗବତ ଟୁଙ୍ଗୀ ବସେ ତାଙ୍କ ଘରେ । ଗାଁର ବୁଢ଼ାବୁଢ଼ୀ ନିତି ସନ୍ଧ୍ୟାରେ ଏକଜୁଟ୍ ହୁଅନ୍ତି । ଭାଗବତ, ରାମାୟଣ, ମହାଭାରତ, ପୁରାଣ ଆଦି ଶ୍ରବଣ କରି ଭବସାଗରରୁ ମୁକ୍ତି ଲାଭ ଆଶାରେ ନିଜକୁ ହଜେଇ ଦିଅନ୍ତି । ବାପା ବାଛି ବାଛି ଝିଅର ନାମ ଦେଇଥିଲେ ଅପରାଜିତା । ଅପରାଜିତା ଶିବଙ୍କର ଅତି ପ୍ରିୟ ଫୁଲଟିଏ । ସତରେ ଫୁଲଟିଏ ପରି ଅପରାଜିତା ଫୁଟିଥିଲା ତାଙ୍କ ପରିବାରରେ । ସେଦିନଟି ଏବେବି ମନେ ପଡ଼େ ମୋର । ଭାଗବତ ପାଠ ଚାଲିଥାଏ । ପିଣ୍ଡାରେ ସାଇପଡ଼ିଶା ଲୋକେ ଭର୍ତ୍ତି ହୋଇ ବସିଛନ୍ତି । ନିଜେ ଭାଗବତ ପଢୁଥାନ୍ତି ଅପରାଜିତାର ବାପା ଓ ପ୍ରାଞ୍ଜଳ ଭାବରେ ବାଖ୍ୟା କରି ଚାଲିଛନ୍ତି ସେ । ଆମେ ଭାବିଥିଲୁ କିଏ ଜଣେ ସାଧୁବାବା ହୋଇଥିବେ ।

ଗେରୁଆ ବସ୍ତ୍ର ପରିଧାନ ସାଙ୍ଗକୁ ଗଳାରେ ଲମ୍ବିଥାଏ ରୁଦ୍ରାକ୍ଷ ମାଳାଟିଏ । ତନ୍ମୟ ହୋଇ ଶୁଣୁଥାନ୍ତି ବୁଢ଼ାବୁଢ଼ୀ ମାନେ ଓ ମଝିରେ ମଝିରେ ହରିବୋଲ ଧ୍ୱନି । ଅପୂର୍ବ ସାତ୍ତ୍ୱିକ ପରିବେଶ । ଆଉ ଅଳ୍ପ ସମୟ ମଧ୍ୟରେ ପର୍ବଟି ବଢ଼ିଯିବ । କହିବାକୁ ଗଲେ ଆମେ ନିର୍ଦ୍ଦିଷ୍ଟ ସମୟର ଟିକିଏ ଆଗରୁ ପହଞ୍ଚି ଯାଇଥିଲୁ । ଝିଅବାଲା ଘରକୁ ଚମକାଇ ଦେବା ଆମର ଲକ୍ଷ୍ୟଥିଲା, କିନ୍ତୁ ଆମେ ନିଜେ ଚମକି ଯାଇଥିଲୁ ।

ସେଇ ମହନୀୟ ପରିବେଶ ଆମକୁ ଖୁବ୍ ଆନନ୍ଦ ଦେଇଥିଲା । ପିଣ୍ଡାର ଆର କଡ଼କୁ ଆମର ବସିବା ପାଇଁ ଚେୟାର ଟେବୁଲ ବ୍ୟବସ୍ଥା କରାଯାଇଥିଲା । ସୌଜନ୍ୟ ଦୃଷ୍ଟିରୁ ଆମେ କିନ୍ତୁ ଯାଇ ତଳେ ବସିଲୁ ।

ମୋର ସାଙ୍ଗ ସୁନ୍ଦର ତ ଭୋଳ ହୋଇ ଯାଇଥିଲା ହରିବୋଲ ଧ୍ୱନିରେ । ଭକ୍ତିରେ ଗଦ୍‌ଗଦ୍ ହୋଇ ସିଧା ଯାଇ ଭାଗବତ ଟୁଙ୍ଗୀ ପାଖରେ ହାଜର । ଭାଗବତ ବଢ଼ିଲା । ଭଗବାନଙ୍କୁ ଜୁହାର ହୋଇ ଫେରିଗଲେ ଯିଏ ଯାହାର ଘରକୁ । ତାପରେ ଚାଲିଲା ଆମର ଚର୍ଚ୍ଚା ।

ନୀଳ, ସୁନ୍ଦର, ସାଗର ଆଉ ମୁଁ ଆମେ ଚାରି ଜଣ ଯାଇଥିଲୁ ଝିଅ ଦେଖିବାକୁ । ଆମ ପାଇଁ ପ୍ରଥମେ ସରବତ୍ ଆସିଲା ଓ ତାପରେ ପ୍ଲେଟ୍ ଭର୍ତ୍ତି ଖାଇବା । ଖାଣ୍ଟି ଗୁଆ ଘିଅରେ ତିଆରି ପରଟା, ଆଳୁଭଜା ସାଙ୍ଗକୁ ବିଭିନ୍ନ କିସମର ମିଠା । ତା ସହିତ ଘରୁଆ ବସା ଦହି ଗ୍ଲାସେ କରି । ମୋତେ ତ ମାଡ଼ି ମାଡ଼ି ପଡୁଥାଏ । ନୀଳଟା କିନ୍ତୁ ଭାରି ପେଟୁ । ପନ୍ଦର ମିନିଟ୍ ଭିତରେ ପ୍ଲେଟ ପୋଛି ପାଛି ସଫା କରି ଦେଲା । ଲାଜରେ ମୁଁ ସଢ଼ିଗଲି । ତାର କ'ଣ ସ୍ଥାନ କାଳ ପାତ୍ରର ବିଚାର ନାହିଁ । ଆମେ ସମସ୍ତେ ତାକୁ ଅନେଇ ରହିଥିଲୁ ।

ଆରେ ''ପେଟରେ ଭୋକ, ମୁହଁରେ ଲାଜ'', ଭାଇ ମୋ ଦ୍ୱାରା ଏସବୁ ହେବନି । ଯାହାବି ହେଉ ଜଳଖିଆଟା ଜମେଇକି ହେଇଛି ନା ? ଆମେ ସମସ୍ତେ ତା କଥାରେ ମୁରୁକି ମୁରୁକି ହସୁଥାଉ ।

ମନେ ମନେ ମୁଁ କହୁଥିଲି, ଆବେ ପୁଅ ତୁ ରାସ୍ତାକୁ ଚାଲେ, ତୋ ଖାଇବା ମୁଁ ଛଡ଼େଇ ଦେବି । ଖାଇବା ସମାପ୍ତ ହେଲା । କନ୍ୟାପିତା ଆସି ଆମ ଆଗରେ ଛିଡ଼ା ହେଲେ । ତାଙ୍କୁ ଦେଖି ପୁନର୍ବାର ଆମେ ଚମକି ପଡ଼ିଲୁ । ସମ୍ପୂର୍ଣ୍ଣ ଭିନ୍ନ ମଣିଷଟିଏ ।

ସେଇ ସାଧୁବାବା ନିଜେ ହିଁ ଯେ କନ୍ୟା ପିତା, ଏବେ ଯାଇ ଆମେ ଜାଣିଲୁ । ଅନୁମତି ନେବା ଢଙ୍ଗରେ ପଚାରିଲେ ଝିଅକୁ ଡାକିବି କି ? ସାଗର କହି ଉଠିଲା, ହଁ ହଁ ଆଉ ଡେରି କରିବା କ'ଣ ଦରକାର । ଝିଅକୁ ଡାକି ଦିଅନ୍ତୁ ନା ?

ଝୀନବାସ ପରିହିତା ତନୁ ପାତଳୀ ଝିଅଟି ଧୀରେ ଧୀରେ ଆସି ଆମ ସାମ୍ନାରେ ଚୌକିରେ ମୁହଁ ତଳକୁ ପୋତି ବସିଲା । ସାଗର, ନୀଳ, ଗୁଡ଼େଇ ତୁଡ଼େଇ ପ୍ରଶ୍ନ

ଉପରେ ପ୍ରଶ୍ନ ପଚାରିଲେ ।

ମୁଁ ଖାଲି ପଚାରିଲି, ନାଆଁଟି କ'ଣ ? ଏତିକିରେ ସେ ମୋତେ ସିଧା ନ ଅନେଇ କଣେଇ କରି ଅନେଇଥିଲା ଓ ମୁଁ ବି ? ସେଇ ପହିଲି ଦେଖାରେ ମୋତେ ଆକର୍ଷିତ କରିଥିଲା ଅପରାଜିତା ଓ ସାରାଜୀବନ ଛନ୍ଦି ହୋଇ ଗଲା ସେ ମୋ ଜୀବନ ସହିତ ।

ନାଁଟା ଯେମିତି ମନଟା ବି ସେମିତି । ଅତ୍ୟନ୍ତ ସ୍ୱାଭିମାନୀ ଅପରାଜିତା । କୌଣସି କଥାରେ ହାର ମାନିବାର ପ୍ରଶ୍ନ ଉଠୁନି ।

ଝାଳ ନାଳ ହୋଇ ଅଫିସ୍‌ରୁ ଫେରି ବାଥ୍‌ରୁମ୍‌ରେ ଟିକେ ବେଶୀ ସମୟ ନିଏ ମୁଁ । ଚିକୁର କଥା ଟିକକରେ ମୁଁ ବାଥ୍‌ରୁମ ଯିବା କଥା ସମ୍ପୂର୍ଣ୍ଣ ଭୁଲିଗଲି । ଭାବୁଥିଲି, ଆଜି ସନ୍ଧ୍ୟାରେ କେମିତି ମୁକାବିଲା କରିବି ଅପରାଜିତାକୁ ।

ଦାଣ୍ଡରେ ପିଲାଙ୍କର ସ୍ୱର ଶୁଭୁନି କି ଅପରାଜିତା ଓ ତା ସାଙ୍ଗମାନଙ୍କର ହସ ଆଉ ଶୁଣା ଯାଉନି । ବୋଧ ହୁଏ ସେମାନେ ଘର ଭିତରକୁ ଆସିଲେଣି । ଆରେ ପିଙ୍କି, ଚିକୁ ! ଗୋଡ଼ ହାତ ଧୋଇ ସନ୍ଧ୍ୟା ଦେବ ଆସରେ, ଅପରାଜିତାର ସ୍ୱର ।

ମୁଁ ତରବର ହୋଇ ବାଥରୁମ୍‌ରେ ପଶିଗଲି । ତାପର କାର୍ଯ୍ୟକ୍ରମ ସନ୍ଧ୍ୟା ଦୀପ ଓ ପ୍ରାର୍ଥନା । ଠିକ୍ ସେତିକି ବେଳକୁ ମୁଁ ବି ରେଡି ହୋଇ ଠାକୁର ଘରେ ହାଜର ହୋଇଥାଏ ନ ହେଲେ ତ୍ରାହି ନାହିଁ ।

ଚିରାଚରିତ ଭାବରେ କାର୍ଯ୍ୟ ସବୁ ସମାପନ ହେଲା । ପିଲାମାନେ ପଢ଼ାଘରକୁ ଗଲେ, ଟିଉସନ୍ ସାର୍ ଆସିବେ । ସାର୍ ଆସିବା ଆଗରୁ ଅଧଘଣ୍ଟା ମମ୍ମିଙ୍କ ସହିତ ବସି ହୋମ୍ ୱାର୍କ ସମାପ୍ତ କରନ୍ତି ପିଙ୍କି ଓ ଚିକୁ । ବାସ୍ ସେତିକି ବେଳକୁ ମୋର ଟିକେ ଚା' ଦରକାର ହୋଇଥାଏ ।

ଆଜି କିନ୍ତୁ ଚା' ନାହିଁକି କିଛି କଥାବାର୍ତ୍ତା ନାହିଁ । ରୋଷେଇ ଘରେ ଖୁଡ୍‌ଖାଡ୍ ଶବ୍ଦ ହେଉଛି । କିଛି ନ ଜାଣିଲା ପରି ଯାଇ ଛିଡ଼ା ହେଲି ଦୁଆର ମୁହଁରେ । ହଠାତ୍ ମୋ ମୁହଁରୁ ବାହାରି ଗଲା ଚା' କାହିଁ ?

ମୋ ସହିତ କିଛି କଥାବାର୍ତ୍ତା ନ କରି ଚା' ପାଣି ବସାଇଲା ଅପରାଜିତା । ମୁଁ ଫେରି ଯାଇ ଡ୍ରଇଂ ରୁମ୍‌ରେ ମ୍ୟାଗାଜିନ୍‌ଟା ଧରି ବସି ପଡ଼ିଲି । କିଛି ସମୟ ପରେ ଚା' କପ୍ ଧରି ପଶି ଆସିଲା ଅପରାଜିତା । ଆସନ୍ନ ଝଡ଼କୁ ଶାନ୍ତ କରିବାକୁ ଯାଇ କଥା ଆରମ୍ଭ କରି ଅପରାଜିତାର ହାତକୁ ଧରି ପକାଇଲି ମୁଁ । ''ଶୁଣିଛ, ଆଜି ଅଫିସ୍‌ରେ .. ।''

ସେତିକିରେ ଆରମ୍ଭ ହୋଇଗଲା ଅପରାଜିତା । ମୋତେ ଶୁଣାଇବା ଦରକାର ନାହିଁ, ଯାଉନ ବୀଣାକୁ ଶୁଣାଇବ ।

ଛି, ଛି, କି ଛୋଟ ଲୋକ ତୁମେ । ଛୋଟ ଘରୁ ଆସିଛ ନା । ତୁମକୁ ବାହା ହୋଇ ମୁଁ ଭୁଲ କରିଛି । ଠିକ୍ ଅଛି । ଶୁଣିବା ଦରକାର ନାହିଁ । ଟିକିଏ ଟିକିଏ କଥାକୁ ନେଇ ଝଗଡ଼ା କରିବା ତୁମର ଅଭ୍ୟାସ । ଛୋଟ ପ୍ରକୃତି ଯା'ର ସେ ବା କରିବ କ'ଣ ? ମୁଁ ଯେମିତି ସବୁ କଥା ଜାଣି ଏପରି କହିବା ପାଇଁ ଆଗରୁ ପ୍ରସ୍ତୁତ ହୋଇ ରହିଥିଲି ।

କିନ୍ତୁ ଅପରାଜିତା, କିଛି ନ କହି ଚୁପ୍ ହୋଇ ରହିଥିଲା । ମନ ଦୁଃଖରେ ଆସି ଶୋଇ ପଡ଼ିଲି ଅବେଳଟାରେ । ଦିନରେ ଜମା ସମୟ ମିଳେନା । ରାତିରେ ସବୁ ଦିନ ବୋଲକରା ଚାକରଟେ ପାଲଟି ଯାଏ ମୁଁ । ରାତିରେ ରୋଷେଇ ରୁଟି ତରକାରୀ ବା ପରଟା ପାଇଁ ଅଟା ଚକଟି ଦେବା, ପରିବାକାଟିବା ଇତ୍ୟାଦି କାମ ଅପରାଜିତା ସହିତ ମିଶି କରିବାକୁ ମୋତେ ଭାରି ଭଲ ଲାଗେ ।

ମୂଳରୁ ଗୋଟିଏ ଅଭ୍ୟାସ ହୋଇଯାଇଛି, ଆଜି କିନ୍ତୁ ମୁଁ ରୋଷେଇ ଘରକୁ ଗଲି ନାହିଁ । ସୁଁ ସୁଁ ଶବ୍ଦ ଶୁଭୁଛି । ପାଣି ଛାଡ଼ିବାର ଶବ୍ଦ ନା ଅପରାଜିତାର କାନ୍ଦଣା ସ୍ୱର ?

ଟିଉସନ୍ ସାର୍ କେତେବେଳୁ ଚାଲିଗଲେଣି । ପିଲା ଦୁଇଟାକୁ ଖୁଆଉଛି ଅପରାଜିତା । ବାଳୁଙ୍ଗା ଦୁଇଟା ଖାଇବାରେ ଭାରି ପୀଡ଼ା ଦିଅନ୍ତି । ମୁଁ ବି ରାଗରେ ଆଉ ଗଲି ନାହିଁ ସେଆଡ଼କୁ । ଯେମିତି ଜନ୍ମ କରିଛି, ସେମିତି ଫଳ ଭୋଗୁ ଥାଉ । ଯେମିତି ଅପରାଜିତାର ସବୁଯାକ ଦୋଷ ଆଉ ସବୁଯାକ ଗୁଣ ମୋର । ନ ଖାଇ ନ ପିଇ ସେମିତି ଶୋଇ ପଡ଼ିଲି ମୁଁ ।

ଗୋଟିଏ ସ୍ୱପ୍ନ ଦେଖି ଚମକି ଉଠି ପଡ଼ିଲି ମୁଁ । କାଳି ଅନ୍ଧାର କାଟିନି, ଅପରାଜିତା ପାଖରେ ନାହିଁ । ବାଥ୍ରୁମ୍ ଆଡ଼କୁ ଯାଇଥିବ ଭାବି ଅନେଇଲି । କିଛି ସ୍ୱର ଶୁଭୁନି । କାଲି ସନ୍ଧ୍ୟାରେ କ'ଣ ସବୁ ଭଲମନ୍ଦ କହିଗଲି ତୁଛାଟାରେ । ବହୁତ ବାଧିଥିବ ନିଶ୍ଚେ । ପିଲା ଦୁଇଟି ଆର ଘରେ ନିଶ୍ଚିନ୍ତରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି । ଖାଇବା ଟେବୁଲରେ ଥୁଆ ହୋଇଛି ଖାଇବାତକ ଓ ପାଣି ଗ୍ଲାସେ । ମୋତେ କାଲି ଖାଇବାକୁ ଡାକିନି କି ନିଜେ ବି ଖାଇ ନଥିବ ଅପରାଜିତା । ଏତେ ରାତିରେ ଉଠି କୁଆଡ଼େ ଗଲା ସେ । ଅଜଣା ଆଶଙ୍କାରେ ମନଟା ମୋର ଡହଳ ବିକଳ ହୋଇ ଉଠିଲା ।

ଦାଣ୍ଡ କବାଟ ଖୋଲା ଅଛି । ଆରେ ପିଙ୍କି, ଚିକୁ ଉଠରେ, ମମ୍ମି କୁଆଡ଼େ ଗଲା ? ଡାଡି ! ତୁମେ ଆମକୁ ବିରକ୍ତ କରନା । ଦେଖିଲ ଘଣ୍ଟାରେ କେତେଟା ବାଜିଛି ।

ଡ୍ରଇଂ ରୁମ୍‌ରେ କାନ୍ଥ ଘଣ୍ଟା ଉପରେ ନଜର ପଡ଼ିଲା ମୋର । ପାଞ୍ଚଟା ବାଜିବାକୁ ପନ୍ଦର ମିନିଟ୍ ବାକି ଅଛି । ଡାଡି ତୁମେ ଆଉ ହେବନି । ମମ୍ମି ପରା ମର୍ଣ୍ଣିଂ ୱାକ୍‌ରେ ଯାଇଛି । ଆରେ ସତେ ତ । ମୋର ମୋଟେ ମନରେ ନଥିଲା ।

ମର୍ଣ୍ଣିଂ ୱାକ୍‌ରୁ ଫେରି ସବୁଦିନ ବେଡ୍ ଟି ଦିଏ ଅପରାଜିତା । ତାପରେ ପିଲାଙ୍କ ପାଇଁ ଜଳଖିଆ ସଜାଡ଼ି ଦେଇ ପିଙ୍କି ଚିକୁକୁ ଉଠାଇ ଦିଏ ସେ । ପୁଣି ଯାଇ ବିଛଣାରେ ଶୋଇ ପଡ଼ିଲି ମୁଁ । ଯା' ଭିତରେ ନିଦ ଲାଗି ଯାଇଛି ମୋର ।

ଚାରିଆଡ଼େ ଖରା ପଡ଼ିଲାଣି । ହଠାତ୍ ଯେମିତି ମୋତେ କିଏ ଚାପୁଡ଼ାଟାଏ ପକେଇଲା । କଲିଂ ବେଲ୍ ବାଜୁଛି । ବେହେରା ବୋଧହୁଏ କ୍ଷୀର ଦେବାକୁ ଆସିଛି । ପୁନର୍ବାର କଲିଂ ବେଲ୍ ବାଜି ଉଠିଲା । କ୍ଷୀରସିଝା ହଣ୍ଡାରେ ବେହେରାଠୁ କ୍ଷୀର ରଖିଲି । ଏ କାମ ତ ଅପରାଜିତାର । ପିଲା ଦୁଇଟି ଏ ପର୍ଯ୍ୟନ୍ତ ଶୋଇଛନ୍ତି । ଆଶଙ୍କାରେ ମୋର ମନଟି ପୁଣି ବୁଡ଼ି ଗଲା । ପିଲାମାନଙ୍କୁ ଯାଇ ଉଠାଇବାକୁ ଚେଷ୍ଟା କଲି ।

ଡାଡି ତୁମେ ଆମକୁ ଡିଷ୍ଟର୍ବ କରନା । ମମି ଆସୁ, ଆମେ ଉଠିବୁ, ପୁଣି ତକିଆକୁ ଭିଡ଼ି ଧରିଲେ । କି ଶଇତାନ ପିଲାଗୁଡ଼ାକ ମ । ବେଳ ହେଲାଣି ଉଠ ! ଜଲ୍‌ଦି ଉଠ ।

ଡାଡିଙ୍କର ଏଭଳି କଥା ଶୁଣି ଦୁଇଜଣ ତରବର ହୋଇ ବିଛଣାରେ ଉଠି ବସିଲେ, ଡାଡି କ'ଣ ହୋଇଛି ବୋଲି କହି ଲମ୍ଫ ମାରି ଡେଇଁ ପଡ଼ିଲେ ତଳକୁ । ଆମର ସର୍ବନାଶ ହୋଇ ଯାଇଛି ରେ । ତୁମ ମମି କୁଆଡ଼େ ଚାଲିଯାଇଛି, କହି କାନ୍ଦି ଉଠିଲି ମୁଁ । ପିଲାମାନେ ବି କିଛି ନବୁଝି ମମି ମମି ବୋଲି ରଡ଼ି କରି କାନ୍ଦିବାକୁ ଲାଗିଲେ । ଡାଡି, ଡାଡି ମମିକୁ ଆଣିଦିଅ ଡାଡି । ଆମେ ଆଉ ଅମାନିଆ ହେବୁନି । ତାକୁ ଆଉ କେବେବି ହଇରାଣ କରିବୁନି ।

ଚିକୁ ଡାଡିଙ୍କର ପିଠିରେ ଓହଳି ପଡ଼ି କାନ୍ଦି କାନ୍ଦି କହୁଥାଏ, ଡାଡି ପ୍ରମିଜ, ମୁଁ ଆଉ ତୁମକୁ କେବେବି ସିକ୍ରେଟ୍ କଥା କହିବିନି । ତୁମେ ମୋ ମମିକୁ ଆଣିଦିଅ । ମମି ନ ଆସିଲା ପର୍ଯ୍ୟନ୍ତ ଆମେ କିଛି କରିବୁନି । ବଡ଼ ପାଟିରେ କାନ୍ଦୁଥିଲେ ଦୁହେଁ ।

ସକାଳୁ ସକାଳୁ ଆମ ଘରେ ଭିଡ଼ ଜମି ଉଠିଲା । ପିଲା ଦୁଇଟିକୁ ବୁଝାଇବ ବା କିଏ ? ସିଏ କ'ଣ ବୁଝିବା ପିଲା ହୋଇଛନ୍ତି ଯେ ବୁଝିବେ ।

ସନ୍ଧ୍ୟା ହୋଇ ଆସିଲାଣି । ଚାରିଆଡ଼େ ଅନ୍ଧକାର । ପାଣି ଗ୍ଲାସେ ବି କେହି ମୁହଁରେ ଦେଇ ନାହାନ୍ତି । କାନ୍ଦି କାନ୍ଦି ହାଲିଆ ହୋଇ ଶୋଇ ପଡ଼ିଛନ୍ତି ପିଙ୍କି, ଚିକୁ । କି ଜିଦିଆ ପିଲା ଏମାନେ । ମମି ଛଡ଼ା ସେମାନଙ୍କୁ ଯେମିତି ଆଉ କେହି ଦେଖା ଯାଉ ନାହାନ୍ତି । ଡାଡିର ଯେମିତି କିଛି ଭୂମିକା ହିଁ ନାହିଁ ।

ଅପରାଜିତାକୁ ବାଦ୍ ଦେଇ ତାଙ୍କ ସଂସାର ଯେମିତି ଶୂନ୍ୟ ହୋଇ ଯାଇଛି । ଦିନସାରା ଚିହ୍ନା ଜଣା ବନ୍ଧୁ ବାନ୍ଧବ ସମସ୍ତଙ୍କୁ ଖବର ଦେଇ ସାରିଲିଣି । ଏ ପର୍ଯ୍ୟନ୍ତ କୌଣସି ଖବର ପହଞ୍ଚିନାହିଁ । କୋଉଁଠି ଖୋଜି ଆଣି ଦେବି ଚିକୁ ପିଙ୍କିର ମମିକୁ ।

ନିଜ ପ୍ରତି ଘୃଣା ହେଉଥିଲା ମୋର । ମୁଁ ତ ସେଇ କଥା ବୁଝାଇ କହି

ପାରିଥାନ୍ତି । ଅଥଚ ଯାହା ମୁହଁକୁ ଆସିଲା କହିଗଲି । ଛୋଟ ଘରର ଝିଅ ବୋଲି କହିବାକୁ ପଛେଇଲି ନାହିଁ । ମୁଁ ବା କୋଉ ଜମିଦାର ଘରର ସନ୍ତାନ ଯେ, ଉଚ୍ଚ ଦିଚ଼ାର ଧାରା ଥିଲେ କ'ଣ ଏଭଳି କଥା କହି ପାରିଥାନ୍ତି ।

ଧନ୍ୟ କହିବ ଅପରାଜିତାକୁ । ଉଁ କି ଚୁଁ କରି ନଥିଲା ସେ ।

ସ୍ୱାମୀ ସ୍ତ୍ରୀ ମଧ୍ୟରେ ରାଗ ରୋଷ ଯେ ପୂର୍ବରୁ ହୋଇ ନାହିଁ ତା ନୁହେଁ, କିନ୍ତୁ ଆଜି ସ୍ୱାମୀଙ୍କର ବ୍ୟବହାରରେ ସେ ମର୍ମାହତ ହୋଇ ପଡ଼ିଥିଲା ବୁଝାଇ ବୁଝାଇ ଥକି ଗଲାଣି ସୁଜାତା ।

ସୁଜାତା ତାର ପଢ଼ା ସାଥୀ । ସୌମ୍ୟ ପାଇ ନ ହେଲା ନାହିଁ, ପିଲା ଦୁଇଟା କଥା ଚିନ୍ତା କର । ପିଙ୍କି, ଚିକୁ କଥା ମନେ ପକାଇ ସାରାଦିନ କାନ୍ଦିଛି ଅପରାଜିତା । ସେ ଜାଣେ ମମ୍ମି ବିନା ସେମାନେ ଖାଇବା ତ ଦୂରର କଥା ପାଣି ଟୋପେ ବି ପିଇ ନଥିବେ । ଶେଷରେ ରାଗିକରି ଗାଳି କରିବାକୁ ଲାଗିଲା ସୁଜାତା । ତୋ ଭଳି ମମ୍ମି ମରିଯିବା ଉଚିତ୍ । ସକାଳ ଆସି ସଞ୍ଜ ହେଲାଣି । ତୋର ଜିଦ୍ ଛାଡୁନି । ଶେଷରେ ଯାଇ ପିଲା ଦୁଇଟିର ମଲା ମୁହଁ ଦେଖିବୁ ନୁହେଁ ? ସେମାନେ ଯେମିତି ଶଇତାନ ପିଲା, କାହା କଥା ଶୁଣିବେ ? ତୁ ନିଜକୁ ଭାବିଛୁ କ'ଣ ? ମୋତେ ବି ପାପର ଭାଗୀ କରିବୁ ନୁହେଁ ? ସୁଜାତାର ପାଟିରେ ହାତ ଚାପି ଧରିଲା ଅପରାଜିତା ଆଉ ପଦଟିଏ ନକହି ବାହାରି ପଡ଼ିଲା ସେ, ସାଥିରେ ସୁଜାତା ବି ।

ପିଙ୍କି, ଚିକୁ ମମ୍ମିକୁ କୁଣ୍ଢାଇ ଧରି କୋର୍‌ରେ କାନ୍ଦି ଉଠିଲେ । ମୁଁ ଅପରାଧିଟିଏ ପରି ପଛରେ ଆସି ଛିଡ଼ା ହେଲି । ଆମେ ତୋତେ ଆଉ କେବେବି ତଙ୍ଗ କରିବୁନି ମମ୍ମି । ପିଲା ଦୁଇଟିଙ୍କୁ କୁଣ୍ଢାଇ ଧରି ଅପରାଜିତା ଆଙ୍କି ଦେଲା ଅଜସ୍ର ଚୁମ୍ବନ । ମୁଁ ଅପରାଜିତା ର ହାତ ଦୁଇଟି ଧରି ଭୁଲ ମାଗିଲି । ବାସ୍ । ଏତିକିରେ ହୋଇଗଲା ଅଭିମାନୀ ଅପରାଜିତାର କ୍ରୋଧ ଶାନ୍ତି । ମୋ ଛାତିରେ ମୁଣ୍ଡ ଗୁଞ୍ଜି ଦେଲା ଓ ପୁଞ୍ଜିଭୂତ ସମସ୍ତ କୋହ ତାର ଲୁହ ହୋଇ ବହି ଗଲା । ସୁଜାତା ଇତି ମଧ୍ୟରେ ନୁଡୁଲ୍‌ସ୍ ପ୍ରସ୍ତୁତ କରି ପ୍ଲେଟ୍ ସଜାଇ ଦେଇ ଥାଏ  ଡାଇନିଂ ଟେବୁଲ୍‌ରେ । ସୁଜାତା ଆଣ୍ଟିର ଡାକରେ ପିଲାମାନେ ଡେଇ ପଡ଼ି ଟେବୁଲରେ ବସି ପଡ଼ିଲେ । ନୁଡୁଲ୍‌ସ୍‌ର ବାସ୍ନା ସମସ୍ତଙ୍କୁ ପାଗଳ କରୁଥିଲା । କଣ୍ଟା ଚାମୁଚ ଧରି ପରସ୍ପର ଆଡ଼କୁ ଚାହିଁ ରହିଥିଲେ ସେମାନେ ଓ ସଭିଙ୍କ ଆଖି କୋଣରେ ଝିଲ୍‌ମିଲ୍ କରୁଥିଲା ଆନନ୍ଦାଶ୍ରୁ । ଆଉ ଦୂରରେ ଛିଡ଼ା ହୋଇ ମୁରୁକି ହସୁଥିଲା ସୁଜାତା ।



# ଗଙ୍ଗା ଆଖିରେ ଲୁହ

ବଡ଼ କଷ୍ଟରେ ଆଖି ଖୋଲିଲା ଝିଅଟି । ବିଛଣାରୁ ଉଠିବାକୁ ଚେଷ୍ଟା କଲା ସେ । କିନ୍ତୁ ମୁଣ୍ଡରେ ଭୀଷଣ ଯନ୍ତ୍ରଣା ହେଉଥାଏ । ହାତ ବୁଲାଇ ଅନୁଭବ କଲା ପଟିଟିଏ ବନ୍ଧା ହୋଇଛି । ଭୀଷଣ ଶୋଷ ଲାଗୁଥିଲା ତାକୁ । ପାଣି ମାଗିବାକୁ ଯାଇ ଓଠ ତାର ଥରି ଉଠିଲା । ପୂଜା ଆନନ୍ଦରେ କୁରୁଳି ମାରି ଉଠିଲା ଓ ଅଧିର ହୋଇ ଡାକ ପକାଇଲା, ବାବା ଦେଖିବ ଆସ, ଅପାର ଚେତା ଫେରି ଆସିଛି । ଝିଅଟିର ଚେତା ଫେରିବାକୁ ପୂଜା ଯେମିତି ବାଟ ଚାହିଁ ବସିଥିଲା । ଘର କୋଣରେ ଥୁଆ ହୋଇଥିବା ମାଠିଆରୁ ଗ୍ଲାସେ ପାଣି ଗଡ଼ାଇ ଆଣି ପୂଜା, ଝିଅଟିକୁ ପିଆଇବାକୁ ଚେଷ୍ଟା କଲା । ଉଦ୍‌ବେଗର ସହିତ ଶ୍ମଶ୍ରୁଧାରୀ, ଗୋରା ତକ ତକ ଚେହେରା, ବୃଦ୍ଧ ଜଣକ ଝିଅଟିର ମୁଣ୍ଡ ପାଖରେ ଆସି ଛିଡ଼ା ହେଲେ । ଦୀର୍ଘ ଛତିଶ ଘଣ୍ଟା ପରେ ଏଇ ଅପରିଚିତା ଝିଅଟି ଚେ଼ତା ଫେରି ପାଇଛି । ତାର ହାତଟିକୁ ନିଜ ହାତରେ ନେଇ ପଲ୍‌ସ୍ ଚେକ୍‌ଅପ୍ କଲେ ବାବା । ତାଙ୍କର ମୁଖ ମଣ୍ଡଳ ଉଜ୍ଜ୍ୱଳ ହୋଇ ଉଠିଲା, ପୂଜାକୁ ବରାଦ୍ କଲେ ଟିକିଏ ଗରମ କ୍ଷୀର ଆଣିବା ପାଇଁ ।

ଆଗରୁ କେତେକ ଜଡ଼ିବୁଟି ବାଟି ଔଷଧ ପ୍ରସ୍ତୁତ କରି ରଖିଥିଲେ ବାବା । ଆୟୁର୍ବେଦର ଅମୋଘ ଔଷଧ । ଗରମ କ୍ଷୀର ସହ ମିଶାଇ ଧୀରେ ଧୀରେ ପିଆଇ ବାକୁ ଲାଗିଲେ ସେ । ବାଉଁଶ ପାତିଆରେ ତିଆରି ପଂଖାଟିକୁ ଧରି ବିଞ୍ଚୁଥାଏ ପୂଜା । ଅବଶ ଆଖିପତା ଦୁଇଟି ପୁନର୍ବାର ବୁଜି ହୋଇଗଲା ଝିଅଟିର ।

ଆଜିକୁ ତିନିଦିନ ଧରି ସାଇରେ ମାଆ ଚାମୁଣ୍ଡା ଠାକୁରାଣୀଙ୍କ ଠାରେ ଭୋଗରାଗ ଚାଲିଥାଏ । ଦେବୀ ମାଆ ସେମାନଙ୍କ ଡାକ ଶୁଣିଛନ୍ତି । ଝିଅଟି ସମ୍ପୂର୍ଣ୍ଣ ଅପରିଚିତା ହେଇ ବି ଯେମିତିକି ସେ ସାଇରେ ସଭିଙ୍କର ଅତି ଆପଣାର ହୋଇ ଉଠିଛି । ଚିହ୍ନା ନାହିଁ, ଜଣା ନାହିଁ ସମସ୍ତେ ତା ପାଇଁ ବ୍ୟସ୍ତ ଓ ବିବ୍ରତ ।

ବାବାଙ୍କ ପାଖରୁ ଭରସା ପାଇଲେ ସେମାନେ, ଝିଅଟି ସୁସ୍ଥ ଆଡ଼କୁ ଗତି

କରୁଛି । ପୂଜା ପାଖରେ ଜଗି ପଙ୍ଖା କରି ଚାଲିଥାଏ । ପୂଜା, ଦଶ/ବାର ବର୍ଷର ଝିଅଟିଏ ହେବ, ବାବାଙ୍କ ଆଶ୍ରମରେ ଆଶ୍ରିତା ।

× × ×

ଅକ୍ଟୋବର ମାସ ଅଠେଇଶ ତାରିଖ । ପ୍ରତିଦିନ ପରି ବାବା ସେ ଦିନ ଭୋରରୁ ବୁଡ଼ ପକାଇ ଫେରୁ ଥାଆନ୍ତି । ସ୍ନାନାନ୍ତେ ବାବା ଦେବୀମାଆଙ୍କର ପୂଜାର୍ଚ୍ଚନା କରିଥାଆନ୍ତି । ସୂର୍ଯ୍ୟ ବନ୍ଦନା ସାରି ବାବା ପାଣିରୁ ଉଠି ଆସିଲେ । ଏତିକି ବେଳେ ହଠାତ୍ ତାଙ୍କର ଦୃଷ୍ଟି ପଡ଼େ କୂଳରେ ଅଚେତ ହୋଇ ପଡ଼ିଥିବା ଅର୍ଦ୍ଧ ବସନ ପରିହିତା ସୁନ୍ଦରୀ ଝିଅଟି ଉପରେ । ନିରେଖି ଦେଖିଲେ ଝିଅଟିର ମୁଣ୍ଡରୁ ରକ୍ତସ୍ରାବ ହେଉଛି । ଯେପରିକି ସଦ୍ୟ ଲାଲ ଗୋଲାପଟିଏ ମହୋଦଧି କୂଳରେ ଥୁଆ ହୋଇଛି । ବାବା ଚଞ୍ଚଳ ହୋଇ ଉଠିଲେ ଓ ଡାକ ପକାଇଲେ ରାମୁ, ଶୁକ ଓ ରବିକୁ । ଏମାନେ ଏଇ ସାଇର ଅତି ଶାନ୍ତ, ସରଳ ଯୁବକମାନେ । ବାବାଙ୍କ ନିର୍ଦ୍ଦେଶରେ ଜ୍ଞାନଶୂନ୍ୟ ଝିଅଟିକୁ ଟେକି ନେଇଗଲେ ତାଙ୍କରି ଛୋଟ ଆଶ୍ରମକୁ ।

× × ×

ରାତି ପାହି ଆସିଲାଣି । ପୁଣି ଆଖି ଖୋଲିଲା ଝିଅଟି । ମାଟି କାନ୍ଥର ଛୋଟ ଘରଟିରେ ଏକ ଦଉଡ଼ିଆ ଖଟିଆରେ ସେ ଶୋଇଛି । ମୁଣ୍ଡରେ ପୁନର୍ବାର ଯନ୍ତ୍ରଣା ଅନୁଭବ କଲା ସେ । କିଛି କହିବା ପାଇଁ ଯାଇ ବିଫଳ ହେଲା । ପୂଜା ନିଦରେ ଶୋଇ ପଡ଼ିଛି । ଝିଅଟିର ଅସ୍ପଷ୍ଟ ସ୍ୱରରେ ବାବା ବୁଝି ନେଲେ ସେ କିଛି କହିବାକୁ ଚାହେଁ ।

ଧୈର୍ଯ୍ୟ ଧର ମାଆ, ତୁମେ ଏବେ ସମ୍ପୂର୍ଣ୍ଣ ସୁସ୍ଥ ନୁହଁ । ମାଆଙ୍କ ଅପାର କରୁଣାରୁ ସବୁ ଠିକ୍ ହୋଇ ଯିବ । ଝିଅଟିର ମୁଣ୍ଡରେ ହାତ ବୁଲାଇ ଦେଲେ ବାବା । ଘର ଭିତରେ ଡିବିରିଟିଏ ଆଲୋକ ବିକିରଣ କରୁଥାଏ ଅନ୍ଧକାର ରାତ୍ରିରେ ଖଦ୍ୟୋତିକା ପରି ।

ଝିଅଟିର ଆଖିରୁ ଦୁଇଟୋପା ତତଲା ଲୁହ କାନ ମୂଳ ଦେଇ ବହିଗଲା । ବଡ଼ କଷ୍ଟରେ ସେ ପଚାରିଲା - ସେ କିଏ ? ସେ ଏଠାକୁ ଅସିଲା କେମିତି ? ଏମିତି ନାନାଦି ପ୍ରଶ୍ନ ? ବାବା ହତଭମ୍ବ ହୋଇ ପଡ଼ିଲେ । ମୁଣ୍ଡରେ ଜୋର ଆଘାତ ଫଳରେ - ଝିଅଟି ନିଜର ପରିଚୟ ହରାଇ ବସିଛି । ବାବା ଭାବି ଥିଲେ, ଝିଅଟି ସୁସ୍ଥ ହୋଇ ଉଠିଲେ, ପରିଚୟ ପଚାରି ତାଙ୍କ ଘରେ ଛାଡ଼ି ଦେଇ ଆସିବେ । ମାତ୍ର ଝିଅଟି ସ୍ମୃତି ଶକ୍ତି ହରାଇ ବସିଛି । ଏ କି ପରୀକ୍ଷା ତୁମର ମାଆ । ଚେଷ୍ଟା କର ମାଆ, ମନେ ପକାଅ ତୁମେ କିଏ ? ଜୋର ଦେବାକୁ ଚେଷ୍ଟା କଲେ ବାବା । ଝିଅଟିର ମୁଖ ମଣ୍ଡଳ ବିକୃତ ହୋଇ ଉଠିଲା । କିଛି ବି ଟିକିଏ ତାର ମନେ ନାହିଁ । ତାର ନାଆଁଟି କ'ଣ

ତାକୁ ବି ଜଣା ନାହିଁ । ଦୁଇ ହାତରେ ମୁଣ୍ଡକୁ ଚାପି ଧରିଲା ସେ । ମନେ ପକାଇବାକୁ ଚେଷ୍ଟା କଲା ସେ କେଉଁ ଠାରୁ ଆସିଛି, କିଏ ସେ ? କିନ୍ତୁ କିଛି ତାର ମନେ ପଡ଼ିଲାନି । ଖାଲି ବିକଳ ହୋଇ ଅନେଇ ରହିଲା ବାବାଙ୍କ ମୁହଁକୁ । ବ୍ୟସ୍ତ ହୁଅନା ମାଆ, ମାଆ ଚାମୁଣ୍ଡା ସବୁ ଠିକ୍ କରି ଦେବେ ।

× × ×

ଦିନପରେ ଦିନ ମାସ ପରେ ମାସ ବିତିଯାଏ । ବାବା ଜାଣି ପାରନ୍ତି ଝିଅଟି ଅନ୍ତସତ୍ତ୍ୱା । ତେବେ ସେ ବିବାହିତ କି ଅବିବାହିତ ବିଭିନ୍ନ ପ୍ରଶ୍ନ ଉଠେ ବାବାଙ୍କ ମନରେ । ଚେହେରାରୁ ସ୍ପଷ୍ଟ ଜଣା ପଡ଼େ, ଝିଅଟି ଏକ ସମ୍ଭ୍ରାନ୍ତ ପରିବାରର । ତାଙ୍କ ଆଶ୍ରମରେ ବହୁ ଅନାଥ ପୁଅ ଝିଅ ଅଛନ୍ତି, କିନ୍ତୁ ସାଗରରୁ ଛାଣି ଆଣିଥିବା ଏଇ ଝିଅଟି ସମ୍ପୂର୍ଣ୍ଣ ଭିନ୍ନ ଥିଲା । ତା ପାଇଁ ବେଳେ ବେଳେ ଚିନ୍ତିତ ହୋଇ ପଡ଼ନ୍ତି ବାବା । ତାର ନାଆଁ ଦେଇଥିଲେ ଗଙ୍ଗା । ଗଙ୍ଗା ବି କ୍ରମେ ଜାଣି ପାରେ ସେ ତା ଗର୍ଭରେ ଏକ ସନ୍ତାନକୁ ଧାରଣ କରିଛି, କିନ୍ତୁ ତା'ର ଜନକ କିଏ ତାକୁ କିଛି ଜଣା ନାହିଁ । କେଡ଼େ ହତଭାଗିନୀ ସେ । ଏଥିପାଇଁ ବେଳେ ବେଳେ ଭାରି ଅନ୍ୟମନସ୍କ ହୋଇ ପଡ଼େ ସେ । ଧୀରେ ଧୀରେ ଗଙ୍ଗା ଆଶ୍ରମର ସମସ୍ତ ଦାୟିତ୍ୱ ନିଏ । ବାବାଙ୍କର ଚିକିତ୍ସା ଫଳରେ ଗଙ୍ଗା ସୁସ୍ଥ ହୋଇ ଉଠେ । ଅନାଥ ପିଲାଙ୍କର ଯତ୍ନ ନେବା ତା'ର ନିତି ଦିନିଆ କାର୍ଯ୍ୟରେ ପରିଣତ ହୁଏ । ନିଜସ୍ୱ ସମସ୍ତ କ୍ଳେଶକୁ ଭୁଲି ଯିବାକୁ ପ୍ରୟାସ କରେ । ପୂଜା ତ ଅପାଙ୍କୁ ତାର ଗୋଡ଼େ ଗୋଡ଼େ ଜଗିଥାଏ । ଗଙ୍ଗା ଆଉ ପୂଜା ସତେ କି ଗୋଟିଏ ବୃନ୍ତର ଦୁଇଟି ଫୁଲ ।

× × ×

ଠିକଣା ସମୟରେ ଗଙ୍ଗା ଜନ୍ମଦିଏ ଏକ ପୁତ୍ର ସନ୍ତାନକୁ । ଅନାଥ ଶିଶୁଟିଏ, ପିତୃ ପରିଚୟ ବିହୀନ । ଗଙ୍ଗା କାନ୍ଦୁଥିଲା । ବାବା ଧୀରେ ଧୀରେ ଆସି ଛିଡ଼ା ହେଲେ ଗଙ୍ଗାର ବିଛଣା ପାଖରେ । ଅପାପବିଦ୍ଧ ପୁଷ୍ପ କଳିକାଟିଏ, ତା ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ କଲେ ସେ ।

ପୂଜାର ଆନନ୍ଦ କହିଲେ ନ ସରେ । ଅପା, ପୁଅଟି ଠିକ୍ ତୁମରି ପରି ହୋଇଛି । ତାର ନାକ, ଆଖି, ଓଠ ସବୁ ତୁମରି ପରି । ପୂଜାର କଥାରେ ଧାରେ ହସର ରେଖା ଟାଣି ହୋଇଯାଏ ଗଙ୍ଗାର ଓଷ୍ଠରେ । ପୂଜା ପୁଅର ମୁଣ୍ଡରେ ଚୁମ୍ବନଟିଏ ଆଙ୍କିଦିଏ । ବାବା, ପୁଅର ନାମ ଦିଅନ୍ତି ଭୀଷ୍ମ । ଗଙ୍ଗାପୁତ୍ର ଭୀଷ୍ମ । ପିଲାଟି ଦିନୁଦିନ ଶଶୀକଳା ପରି ବଢ଼ିବାକୁ ଲାଗିଲା । ପୂଜାକୁ ତ କଣ୍ଢେଇଟିଏ ମିଳିଯାଇଥିଲା । ସାରାଦିନ ଭୀଷ୍ମ ପଛରେ ଲାଗିଥାଏ ସେ । ତାର ଖାଇବା, ପିଇବା, ଗାଧୋଇବା ସବୁ ଦାୟିତ୍ୱ ଯେପରି

ପୂଜାର । ତା'ର ଠୁଙ୍କୁରୁ ଠୁଙ୍କୁରୁ ଚାଲି, ଦରୋଟି ଭାଷାରେ ପୂ---ଜା--- ମା ଉଛୀ ଡାକରେ ପୂଜା ବମୋହିତ ହୋଇ ପଡ଼େ । ଦୁଷ୍ଟାମି କଲେ ମିଛିମିଛିକା ଛାଟଟିଏ ଧରି ତା ପଛରେ ଦଉଡ଼େ । ବାବା, ବାବା ! ଦେଖିଲ କେମିତି ଦୁଷ୍ଟ ହେଉଛି ଭିଷ୍ଣୁ, ବାବା ନାଁ ଶୁଣି କବାଟ କୋଣରେ ଲୁଚିଯାଏ ଭିଷ୍ଣୁ ।

× × ×

ସେଇ ଅକ୍ଟୋବର ମାସ ଅଠେଇଶି ତାରିଖ । ଗଙ୍ଗା ଜୀବନର ମୋଡ଼କୁ ପୁରାପୁରୀ ବଦଳେଇ ଦେଇଥିଲା । ପୂର୍ବରୁ ସେ କ'ଣ ଥିଲା କେଉଁଠି ଥିଲା, ତା'ର ନାଆଁ କ'ଣ ଥିଲା ତାକୁ ଜଣା ନାହିଁ । ତା ଜୀବନ ପରିଧିର ସବୁ କିଛି ବଦଳି ଯାଇଥିଲା । ସେ ବୋଧହୁଏ ଗାଙ୍ଗୀରୁ ଗଙ୍ଗା ହେଇଯାଇଛି । ଯେତେ ଭୁଲିବାକୁ ଚେଷ୍ଟା କଲେ ବି ଅଜାଣତରେ ମନଟା ଝୁରି ହେଉଥିଲା ବିସ୍ମରି ଯାଇଥିବା ଅତୀତଟାକୁ । କେବେ କେବେ ଯାଇ ଗଙ୍ଗା ବସି ରହେ ସାଗରର ବିସ୍ତୀର୍ଣ୍ଣ ବାଲୁକା ରାଶି ଉପରେ । ଭାବନାର ଖିଅ ଲମ୍ୱିଯାଏ ସାଗରର ଅତଳ ତଳକୁ । କୂଳ କିନାରା ମିଳେନା । ଆଜି ସେଇ ଅକ୍ଟୋବର ୨୮ ତାରିଖ । ଗୋଟିଏ ବର୍ଷ ଇତି ମଧ୍ୟରେ ବିତି ଯାଇଛି । ଗଙ୍ଗା ବେଳାଭୂମିରେ ବସି ଗଙ୍ଗା କୂଳରେ ମୁଣ୍ଡ ପିଟୁଥିବା ଲହଡ଼ି ଗଣି ଚାଲିଛି । ପୂଜା, ଭିଷ୍ଣୁ ଖେଳରେ ମାତି ଥାଆନ୍ତି । ଭିଷ୍ଣୁ ଲହଡ଼ି ଛୁଇଁ ଛୁଇଃ ଦଉଡୁଥାଏ ଆଉ ତା ପଛରେ ପୂଜା । ହଠାତ୍ ଭିଷ୍ଣୁ ଜିଦ୍ ଧରିଲା ସମୁଦ୍ର ଭିତରକୁ ଯିବା ପାଇଁ । ପୂଜା ଯେତେ ଭିଡ଼ି ଧରିଲେ ବି ସମ୍ଭାଳି ପାରୁ ନଥାଏ । ଭିଷ୍ଣୁର ତୁଣ୍ଡେ ଯାକେ ପାଣି ହେଲାଣି । କି ସାହସ ତା'ର, ଡର ଭୟ ବୋଲି କିଛି ନାହିଁ । ଅପା, ଅପା ବୋଲି ଚିତ୍କାର କରୁଥାଏ ପୂଜା । ଭିଷ୍ଣୁର କାନ୍ଦଣା ସ୍ୱର, ପୂଜାର ଚିତ୍କାର ଲହଡ଼ିର ଗର୍ଜ୍ଜନ ରେ ମିଳାଇ ହୋଇ ଯାଉଥିଲା । ଗଙ୍ଗା ସେଆଡ଼େ ଅନ୍ୟମନସ୍କ ହେଇ ପଡ଼ିଥାଏ ଅତୀତକୁ ଖୋଜି ଖୋଜି । ଭିଷ୍ଣୁକୁ ଜାବୁଡ଼ି ଧରି ଜୋରରେ ଚିତ୍କାର କରି ଉଠିଲା ପୂଜା । ପାଣି ଭିତରେ ପୂଜା, ଭିଷ୍ଣୁକୁ ଜାବୁଡ଼ି ଧରି କୂଳକୁ ଭିଡୁଥିଲା ଓ ଭିଷ୍ଣୁ ପାଣି ଭିତରକୁ ପଶିବା ପାଇଁ ରାହା ଧରି କାନ୍ଦୁଥିଲା ।

ପୂଜାର ବିକଳ କାନ୍ଦଣା ସ୍ୱର ବିଳମ୍ୱରେ ଗଙ୍ଗା କାନରେ ବାଜିଲା । ସମୁଦ୍ର ଭିତରେ ଭିଷ୍ଣୁ ଓ ପୂଜାକୁ ଏପରି ଅବସ୍ଥାରେ ଦେଖି ଭିଷ୍ଣୁ ଭିଷ୍ଣୁ ବୋଲି ଚିତ୍କାର କରି ଦଉଡ଼ିଲା ଗଙ୍ଗା ଓ ମାଛ ଧରାଳୀଙ୍କର ଜାଲରେ ଛନ୍ଦି ଯାଇ ଗଛ କାଟିଲା ପରି ଓଲଟି ପଡ଼ି ଚେତା ହରାଇ ବସିଲା । ବହୁ କଷ୍ଟରେ ଭିଷ୍ଣୁକୁ ଧରି ଟାଣି ଟାଣି ନେଇ ଆସିଲା ପୂଜା ଉପରକୁ । ଭୀଷଣ ହାଲିଆ ହୋଇ ପଡ଼ିଥାଏ ସେ । ଅପାର ଏପରି ଅବସ୍ଥା ଦେଖି ବାବାଙ୍କୁ ଯାଇ ଖବର ଦେଲା ପୂଜା ।

× ×

ଗଙ୍ଗା ଦେହରେ ପ୍ରବଳ ତାତି । ବାବା ଏକ ଶୀତଳ ପ୍ରଲେପ ତା ମୁଣ୍ଡରେ ଲଗାଇ ଦେଲେ ।

ମାନସ ! ମାନସ ! ବଞ୍ଚାଅ, ବଞ୍ଚାଅ ବୋଲି ଅସ୍ପଷ୍ଟ ସ୍ୱରରେ ଉଚ୍ଚାରଣ କରୁଥିଲା ଗଙ୍ଗା । ଅବଶ୍ୟ ଅଳ୍ପ ସମୟ ପରେ ତା'ର ଚେତା ଫେରି ଆସିଲା । ବାବା ଜାଣି ପାରିଲେ ଗଙ୍ଗା ତାର ପୂର୍ବ ଜୀବନ ଫେରି ପାଇଛି । ବାବାଙ୍କର ମୁଖମଣ୍ଡଳରେ ଏକ ହାସ୍ୟରେଖା ଖେଳିଗଲା । କିନ୍ତୁ ମନେ ମନେ ଗଙ୍ଗାକୁ ହରାଇବା ଦୁଃଖରେ ଭାଙ୍ଗି ପଡ଼ିଲେ ସେ ।

ବାବା, ଗଙ୍ଗାର ମୁହଁ ପାଖକୁ ଝୁଙ୍କିପଡ଼ି ପଚାରିଲେ, ମାନସ କିଏ ? କହ, କହ ମାଆ ମାନସ କିଏ ?

ଆଖିଖୋଲିଲା ଗଙ୍ଗା ଓ ବାବାଙ୍କ ବେକରେ ହାତ ଛନ୍ଦି ଛୋଟପିଲା ପରି ଜୋର୍‌ରେ କାନ୍ଦିବାକୁ ଲାଗିଲା । ଆରେ କାନ୍ଦୁଛୁ କାହିଁକି ମାଆ ! ଇଏତ ବଡ଼ ଖୁସିର କଥା, ତୁ ତୋର ସଂସାର ଫେରି ପାଇଛୁ । ବାବାଙ୍କ ଆଖି ଛଳ ଛଳ ହୋଇ ଉଠିଲା । ନାଇ ବାବା, ମୋର କିଛି ମନେ ନାହିଁ, ମୁଁ କିଛି ଜାଣେନା, ମୁଁ ତୁମକୁ ଛାଡ଼ି କୁଆଡ଼େ ଯିବିନି ବାବା ।'' ସେଇ ନର ପିଶାଚଟା ମୋ ଜୀବନର ସବୁକିଛି ଲୁଟି ନେଇଛି ବାବା ।'' ଗଙ୍ଗାର ମୁହଁଟି କଠିନ ହୋଇ ଉଠିଲା । ବାବା ଯେମିତି ସବୁକିଛି ପଢ଼ିଗଲେ ତା'ର ମୁଖ ମଣ୍ଡଳରୁ । ହୀନ କପାଳିଟିଏ ।

× × ×

ମନ୍ତ୍ରୀ ସୁବ୍ରତ ଚୌଧୁରୀ, ଶିକ୍ଷା ବିଭାଗ ଦାୟିତ୍ୱରେ ଥାଆନ୍ତି । ଚାକିରୀ ଆଶାରେ ସମସ୍ତେ ଦଉଡ଼ନ୍ତି ରାଜଧାନୀକୁ । ଗଙ୍ଗା ଓରଫ୍ ଶୁଭ୍ରା ବା ସେଥିରୁ ବାଦ୍ ଯାଆନ୍ତା କିପରି ? । ମଧ୍ୟବିତ୍ତ ପରିବାରର ବି.ଇଡି. ପାଶ୍ କରିଥିବା ପାଠ ପଢୁଆ ଝିଅ ଶୁଭ୍ରା ମନ୍ତ୍ରୀ ସୁବ୍ରତ ଚୌଧୁରୀଙ୍କ ଅଫିସ୍‌ରେ ୱେଟ୍ କରିଥାଏ, ସେ ନିଜେ ମନ୍ତ୍ରୀଙ୍କୁ ସାକ୍ଷାତ କରି ବାୟୋଡାଟା ଦେବ ଓ ଗୁହାରୀ କରିବ ଚାକିରୀଟିଏ ପାଇଁ । ଭରପୁର ଯୌବନ, ଟଣାଟଣା ଆଖିର ଚାହାଣୀ, ସୁନ୍ଦରୀ ଶୁଭ୍ରାର ରୂପ ଲାବଣ୍ୟ ଆକୃଷ୍ଟ କରେ ମାଂସଲୋଭୀ ନର ରାକ୍ଷସମାନଙ୍କୁ । ମାନସ ବି ଆକର୍ଷିତ ହୁଏ ଶୋଭାର ରୂପ ଯୌବନ ପ୍ରତି । ମାସେ କାଳ ଧାଇଁ ଧାଇଁ ନୟାନ୍ତ ହୋଇଗଲାଣି ଶୁଭ୍ରା ଚାକିରୀଟିଏ ପାଇଁ । ମାନସ, ମନ୍ତ୍ରୀ ସୁବ୍ରତ ଚୌଧୁରୀଙ୍କ ସବା ସାନ ପୁତ୍ର । କ୍ରମେ ଶୁଭ୍ରା ଓ ମାନସର ବନ୍ଧୁତା ବେଶ୍ ଜମି ଉଠେ । ପୁଅ ଝିଅ ଏଇ ବେଳରେ ପରସ୍ପର ପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ । ଶୁଭ୍ରା ବି ମାନସର ଭଲ ପାଇବାରେ ନିଜକୁ ହଜାଇ ଦେଇଥିଲା । ସେ ମାନସ ସହିତ ନିଜ ଜୀବନକୁ ଛନ୍ଦିବାର ସ୍ୱପ୍ନରେ ବିଭୋର ହୋଇ ଉଠିଥିଲା । ମାନସର କୃତ୍ରିମ ଭଲ

ପାଇବା ବୁଝି ପାରି ନଥିଲା ଶୁଭ୍ରା । ଗାଁର ଶାନ୍ତ ସରଳ ଝିଅ ଶୁଭ୍ରା ସେଦିନ ସେଇ ପଞ୍ଚତାରକା ହୋଟେଲ୍‌ର ଏକ ଶୀତତାପ ନିୟନ୍ତ୍ରିତ ପ୍ରକୋଷ୍ଠରେ ଏକାକାର ହୋଇଯାଇଥିଲା ମାନସର ବାହୁ ବନ୍ଧନ ଭିତରେ । ସୀମା ଲଙ୍ଘନ କରି ଯାଇଥିଲା ସେ । ଲକ୍ଷ୍ମଣ ରେଖା ଡେଇ ନିଜର ସବୁକିଛି ସମ୍ପଦ ସମର୍ପି ଦେଇଥିଲା ଏକ ଦୁର୍ବଳ ମୁହୂର୍ତ୍ତରେ ।

କଥାରେ କହନ୍ତି କର୍ମ ଅନୁସାରେ ଫଳ । ଶୁଭ୍ରା, ମାନସର ସନ୍ତାନକୁ ଧାରଣ କରି ଭୟଭୀତ ହୋଇ ପଡ଼ିଥିଲା । ମାନସକୁ ନେହୁରା ହୋଇଥିଲା ଶୀଘ୍ର ବିବାହ ବନ୍ଧନରେ ଆବଦ୍ଧ ହେବା ପାଇଁ । ଶୁଭ୍ରା ଅନ୍ତଃସତ୍ତ୍ୱା, ଏଖବର ଶୁଣି ସାପ ଦେଖିଲା ପରି ଚମକି ପଡ଼ିଥିଲା ମାନସ ଓ ତା କୋଳରେ ଶୋଇଥିବା ଶୁଭ୍ରାକୁ ଛାଡ଼ି ଦେଇ ଉତ୍ତେଜନାରେ ଥରୁଥିଲା ସେ । ଶେଷରେ ସେ ଶୁଭ୍ରାକୁ କଥା ଦେଇଥିଲା ଶୀଘ୍ର ବିବାହ କରି ତାକୁ ବଦ୍‌ନାମରୁ ରକ୍ଷା କରିବ । ସେମାନଙ୍କ ପୂର୍ବ ପ୍ଲାନ ଅନୁସାରେ ଘରେ କାହାକୁ କିଛି ନ କହି ବାହାରି ଆସିଥିଲା ଶୁଭ୍ରା । ଗାଡ଼ି ଛୁଟି ଚାଲିଥାଏ ପୁରୀ ରାସ୍ତା ଧରି । ପ୍ରଥମେ ସେମାନେ ମହୋଦଧିରେ ସ୍ନାନ ସାରି କଳ୍ପବଟ ମୂଳେ ସେମାନଙ୍କର କଳ୍ପନାକୁ ସାକାର କରିବେ । କାଳିଆକୁ ସାକ୍ଷୀ ରଖି ପତି ପତ୍ନୀର ପବିତ୍ର ବନ୍ଧନରେ ସବୁଦିନ ପାଇଁ ବାନ୍ଧି ହୋଇଯିବେ ଦୁହେଁ । ମନେ ମନେ ଉଲୁସି ଉଠୁଥାଏ ଶୁଭ୍ରା । ଗାଡ଼ିର ଷ୍ଟିଅରିଂ ଧରିଥାଏ ମାନସ ଆଉ ମାନସର କାନ୍ଧ ଉପରେ ମୁଣ୍ଡ ରଖି ସ୍ୱପ୍ନ ରାଇଜରେ ବିଚରଣ କରୁଥିଲା ଶୁଭ୍ରା । ମାନସକୁ ପତିରୂପରେ ପାଇବାର ବାସନା ତା ମନର ଆନନ୍ଦର ଗତିକୁ ଦ୍ୱିଗୁଣିତ କରିଦେଇଥାଏ । ବାସ୍ତବିକ୍ ମାନସ ହିଁ ତା ମନ କଥା ବୁଝିଛି । ସେ ବାପା, ମାଆ ପରିବାରକୁ ପଛରେ ପକାଇ ଆଗେଇ ଆସିଛି ତାକୁ ନିଜର କରିବା ପାଇଁ । ମାନସ ତା ପାଇଁ ପ୍ରକୃତରେ ଭଗବାନ । କୃତ୍ୟକୃତ୍ୟ ହୋଇ ମନେ ମନେ ପ୍ରଶଂସାରେ ଶତମୁଖର ହୋଇ ଉଠିଥାଏ ସେ । ଆବେଗରେ ମାନସର ଗଳାକୁ ଜଡ଼ାଇ ଧରି କହିଉଠେ, ତୁମେ ହିଁ ମୋର ପ୍ରକୃତ ଜୀବନ ସାଥୀ । ମାନସ ମୁରୁକି ମୁରୁକି ହସୁଥିଲା । ସେମାନେ ଆସି ପହଞ୍ଚିଲେ ପୁରୀ ସମୁଦ୍ରର ବେଳା ଭୂମିରେ । ଶୁଭ୍ରାର ଗୋଡ଼ ତଳେ ଲାଗୁ ନଥାଏ । ହାତରେ ହାତ ଛନ୍ଦି ଦୁହେଁ ଆଗେଇ ଚାଲିଲେ ସମୁଦ୍ର ଭିତରକୁ । ଶହ ଶହ ଲୋକଙ୍କର ସମାଗମ ଭିତରେ ଭାରି ମଜା ଲାଗୁଥିଲା ତାକୁ । ସତରେ ଏ ମୁହୂର୍ତ୍ତଟିକୁ ସେ ପ୍ରାଣ ଭରି ଉପଭୋଗ କରିବାକୁ ଚାହେଁ ।

ଶୁଭ୍ରା ଓ ମାନସ ଲହଡ଼ି ପରେ ଲହଡ଼ି ଭାଙ୍ଗି ଚାଲିଥାଆନ୍ତି । ଶୁଭ୍ରା ବେଳେ ବେଳେ ଡରରେ ଛନ୍ଦି ଯାଉଥାଏ ମାନସର ଦେହରେ । ଲହଡ଼ି ଭାଙ୍ଗି ଭାଙ୍ଗି ଶୁଭ୍ରା ଥକି

ପଡ଼ିଲାଣି । ଏତିକିବେଳେ ଶୁଭ୍ରା ଅନୁଭବ କଲା ମାନସର ବଳିଷ୍ଠ ହାତର ଚାପ । ଶୁଭ୍ରାକୁ ଗଭୀର ଜଳକୁ ଠେଲି ଦେବା ପାଇଁ ଉଦ୍ୟମ କରୁଥିଲା ସେ । ମାନସର ଆଖି ଓ ମୁହଁରେ କ୍ରୁର ହସ । ସବୁ ବୁଝି ପାରିଥିଲା ଶୁଭ୍ରା । 'ବଞ୍ଚାଅ' 'ବଞ୍ଚାଅ' ଚିତ୍କାର ତାର ମିଳାଇ ଯାଇଥିଲା ଉର୍ମିମାଳର ଘୋ ଘୋ ଶବ୍ଦରେ ସେଦିନ ।

× × ×

ଭୋ ଭୋ ହୋଇ କାନ୍ଦୁଥିଲା ଶୁଭ୍ରା । ଶୁଭ୍ରା ସବୁଦିନ ତୁମରି ଗଙ୍ଗା ହୋଇ ରହିବାକୁ ଚାହେଁ ବାବା । ଏଇ ହେଉଛି ତା'ରି ଜୀବନର ଗତିପଥ, ମୁକ୍ତିର ଏକମାତ୍ର ମାର୍ଗ । ଏଇ ଘର ତାର ଏକାନ୍ତ ନିଜର । ବାବାଙ୍କୁ କୁଣ୍ଢାଇ ଧରି କାନ୍ଦୁଥିଲା ଗଙ୍ଗା । ପୂଜା ଭିକ୍ଷୁକୁ ଛାତିରେ ଜାକି ଧରି କୁଡ଼ିଆ ଦୁଆରେ ଛିଡ଼ା ହୋଇ ସବୁ କଥା ଶୁଣୁଥିଲା । ତାର ଦୁଇ ଆଖିରୁ ବହି ଯାଉଥିଲା ଧାର ଧାର ଲୁହ ।



# ଡିଭୋର୍ସ

ଡାକ୍ତର ସୁବ୍ରତ ବାବୁ ମଝିରେ ମଝିରେ ଦିଲ୍ଲୀ ଯାତ୍ରା କରିଥାଆନ୍ତି । ଡାକ୍ତର ଖାନାରେ ଅଧିକାଂଶ ସମୟରେ ତାଙ୍କୁ ଦେଖିବାକୁ ମିଳେନା । ଡାକ୍ତର ହିସାବରେ ତାଙ୍କର ଭାରି ସୁନାମ ଅଛି । ଏଣୁଁ ଦୂର ଦୂରାନ୍ତରୁ ଆସୁଥିବା ପେସେଣ୍ଟମାନେ ତାଙ୍କୁ ହିଁ ଖୋଜି ଥାନ୍ତି । କିନ୍ତୁ ଏଥିରେ ତାଙ୍କର କୌଣସି ତ୍ରୁଟି ନାହିଁ । ସେ ଜଣେ ସିନିଅର ଓ କେପେବଲ ଡାକ୍ତର, କାର୍ଡ଼ିଓଲଜି ବିଭାଗର ମୁଖ୍ୟ ଅଟନ୍ତି । ଗୋଟିଏ ଦୃଷ୍ଟିରୁ ସେ ଭାରି ସ୍ମାର୍ଟ ଓ ନେଇ ଆଣି ଥୋଇବାରେ ଏକ୍ସପାର୍ଟ । ତାଙ୍କୁ କେବେ କେବେ ଅଫିସିଆଲି କାର୍ଯ୍ୟରେ ଭୁବନେଶ୍ୱର ତ କେବେ କେବେ ଦିଲ୍ଲୀ ଯିବାକୁ ହୁଏ । ଏହା ବ୍ୟତୀତ ଅନେକ ସମୟରେ ଡାକ୍ତରଖାନାର ଏଡ୍‌ମିନିଷ୍ଟ୍ରେସନ୍ ପାଇଁ ତାଙ୍କୁ ହିଁ ଦାୟିତ୍ୱ ନେବା ପାଇଁ ସି.ଏମ୍.ଓ. ବାଧ କରିଥାଆନ୍ତି । ମେଡିକାଲ ଚିଫ୍‌ଙ୍କ କଥାକୁ କିଏ ବା ଏଭୟେଡ୍ କରି ପାରିବ ।

ଗତଥର ଦିଲ୍ଲୀରେ ମଡର୍ଣ୍ଣ କାର୍ଡ଼ିଓଲଜିର ଏକ ସେମିନାର ଥିଲା । ସେଥିରେ ପେପର ସବ୍‌ମିଟ୍ ଓ ଡିସ୍‌କସନ୍‌ରେ ଅଂଶ ନେବାର ସୁଯୋଗ ମିଳିଥିଲା ଡା. ସୁବ୍ରତଙ୍କୁ । ରାଜଧାନୀ ଏକ୍‌ପ୍ରେସ୍ କଟକରୁ - ନୂଆଦିଲ୍ଲୀ ମାତ୍ର ଚବିଶ୍ କି ପଚିଶ ଘଣ୍ଟାର ରାସ୍ତା । ଏବେ ଭାରି ସୁବିଧା ହୋଇ ଯାଇଛି ଅବଶ୍ୟ ଯାତ୍ରୀ ମାନଙ୍କୁ ।

ଷ୍ଟେସନ୍‌ରେ ସୁବ୍ରତ ବାବୁ, ଅମୀୟ ବାବୁଙ୍କୁ ଦେଖି ଦୋ ଦୋ ଚିହ୍ନା ହେଲେ । ଏକା କମ୍ପାର୍ଟମେଣ୍ଟରେ ଦୁହେଁ ଯାଇ ବସିଲେ । କିଛି ସମୟ ଅତିକ୍ରାନ୍ତ ହେବା ପରେ ଦୁଇ ବନ୍ଧୁଙ୍କ ମଧ୍ୟରେ ଭାବ ବିନିମୟ ହୁଏ । ବହୁତ ଦିନ ପରେ ଦୁହିଁଙ୍କ ସାକ୍ଷାତ ହଠାତ୍ ଟ୍ରେନ୍‌ରେ । ଦୁହେଁ ଥିଲେ କଲେଜର ଛାତ୍ର ନେତା । ସୁବ୍ରତ ବାବୁ ମନେ ମନେ ଖୁସି ହେଲେ, ଯା ହେଉ ଟ୍ରେନ୍ ଜର୍ଣ୍ଣି ବୋରିଂ ହେବନି । ସେ ସବୁଥର ଦିଲ୍ଲୀ ଯାଆନ୍ତି କିଛି ନା କିଛି ଅଫିସିଆଲ୍ କାମରେ, କିନ୍ତୁ ଏଥରକ ଦିଲ୍ଲୀ ଯିବାଟା ଥିଲା ତାଙ୍କର ସମ୍ପୂର୍ଣ୍ଣ ଭିନ୍ନ ଅଭିପ୍ରାୟ । ଷ୍ଟୁଡେଣ୍ଟ ଲାଇଫ୍ ପରେ ଜୀବନର ଗତିପଥ ହଠାତ୍ ମୋଡ଼ ବଦଳେଇ

ଦିଏ । ଯେ ଯାହାର ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାର ଚକାଭଉଁରୀ ଖେଳରେ ମାତି ଯାଆନ୍ତି । କିଏ ଦିଗ ହରା ହୋଇ ଆଶା ବୈତରଣୀରେ ହାବୁଡୁବୁ ହୁଏ ତ କିଏ ସ୍ୱପ୍ନ ସୌଧ ରଚନା କରି ଜୀବନଟାକୁ ରଙ୍ଗୀନ ସ୍ୱପ୍ନରେ ହଜାଇ ଦିଏ । ସେ ଦିନର ସେଇ ଷ୍ଟୁଡେଣ୍ଟ୍ ଲାଇଫ୍‌ରେ ଯୌବନ ପ୍ରାପ୍ତ ଦୁଇଟି ଯୁବକ ଆଜି ଯେଝା ବାଟରେ ସଫଳ କାମ ହୋଇ ଆଗେଇ ଚାଲିଛନ୍ତି ।

ଜଣେ ଡାକ୍ତର ସୁବ୍ରତ ଚୌଧୁରୀ ଓ ଅନ୍ୟ ଜଣେ ଏଡ୍‌ଭୋକେଟ୍ ମିଷ୍ଟର ଅମୀୟ ଶଙ୍କର ଦାସ । ଅମୀୟ ବାବୁ କତିପୟ ଏଡ୍‌ଭୋକେଟ୍‌ଙ୍କ ମଧ୍ୟରେ ନିଜର ସ୍ଥାନଟିକୁ ବେଶ୍ ବଜାୟ ରଖି ପାରିଛନ୍ତି । ଓଡ଼ିଶାରେ ଘର ହେଲେ ବି ସେ ବର୍ତ୍ତମାନ ଦିଲ୍ଲୀର ଜଣେ ଅଧିବାସୀ । ଦିଲ୍ଲୀ ହାଇକୋର୍ଟରେ ପ୍ରାକ୍‌ଟିସ୍ ସହିତ ସୁପ୍ରିମ୍ କୋର୍ଟରେ ବି ତାଙ୍କର ପ୍ରାକ୍‌ଟିସ୍ ରହିଛି । ବିଶେଷ କରି ଓଡ଼ିଶା ଲୋକଙ୍କର କେଶ୍ ଗୁଡ଼ିକ ପ୍ରାୟ ସେ ହାତକୁ ନେଇଥାନ୍ତି । ଦିଲ୍ଲୀରେ ଘରଦ୍ୱାର କରି ରହିଛନ୍ତି, ମା'ଆ ଲକ୍ଷ୍ମୀଙ୍କର ଅଭାବ ନାହିଁ । ଡାକ୍ତର ସୁବ୍ରତ ବାବୁ ଭାବିଥିଲେ ବନ୍ଧୁଙ୍କ ସହିତ ସୁଖଦୁଃଖ ହୋଇ ସମୟ ଅତିକ୍ରାନ୍ତ କରିବେ । ନିଜର ଅଭିପ୍ରାୟ ବିଷୟରେ ଏଡ୍‌ଭୋକେଟ୍ ବନ୍ଧୁଙ୍କ ସହିତ ଆଲୋଚନା କରିବେ । ପ୍ରଥମେ ସେ ନିଜ ଆଡୁ କଥାବାର୍ତ୍ତା ଆରମ୍ଭ କରିବାକୁ ଚେଷ୍ଟା କଲେ ଓ ଆନ୍ତରିକତା ପ୍ରକାଶ କଲେ । କିନ୍ତୁ ଆଜିର ବିଜି ଲାଇଫ୍‌ରେ ହେଲୋ, ବାଏ, ବାଏ, ଟା, ଟା, କରିବାକୁ ବି ଯେ ସମୟର ଅଭାବ । ଏକା କମ୍ପାର୍ଟମେଣ୍ଟରେ ଦୁଇ ବନ୍ଧୁଙ୍କର ବର୍ଥ ମିଳିଥିଲା । ଅମୀୟ ବାବୁଙ୍କ ବର୍ଥଟି ସବା ଉପରେ ଥିଲା । ଟ୍ରେନ୍ ଛାଡ଼ିବା ସଙ୍ଗେ ବୟ ଆସି ହାଜର । ପ୍ରଥମେ ବିସ୍‌ଲେରୀ ଓ ଚକ୍‌ଲେଟ୍ ଦେଇ ସ୍ୱାଗତ କରନ୍ତି ସେମାନେ । ତା ପଛକୁ ବେଡ୍‌ରୋଲ୍ ବାଲା ଆସି ତକିଆ, ବେଡ୍‌ସିଟ୍, କମ୍ବଳ, ଟାୱେଲ ଦେଇ ଗଲେଣି । ସମସ୍ତେ ନିଜ ନିଜର ଲଗେଜ୍ ଠିକଣା ସ୍ଥାନରେ ରଖି ବର୍ଥ ସଜାଡ଼ିବାରେ ବ୍ୟସ୍ତ ହୋଇ ଉଠିଲେ । ସୁବ୍ରତ ବି ତାଙ୍କର ବର୍ଥଟିକୁ ରେଡି କରିନେଲେ । ଉପରକୁ ଉଠିଯାଇ ଅମୀୟ ବାବୁ ତାଙ୍କ ବର୍ଥଟି ସଜାଡ଼ି ନେଲେ ଓ କଳା ବ୍ୟାଗରୁ କେତେ ଖଣ୍ଡ ଆଇନ୍ ବହି ବାହାର କରି ପଢ଼ିବା ଢଙ୍ଗରେ ବସିଲେ । କାର୍ଡ଼ସି ଦୃଷ୍ଟିରୁ ବନ୍ଧୁ ସୁବ୍ରତଙ୍କ ପାଖରୁ ସରି ମାଗିନେଲେ ସେ । ଆସନ୍ତା କାଲି କୋର୍ଟରେ ତାଙ୍କର ଏକ ଜରୁରୀ କେଶ୍‌ଟିଏର ହିୟରିଂ ଅଛି । ସୁବ୍ରତ ବାବୁ ଓ.କେ., ଓ.କେ ବୋଲି କହି ସ୍ମିତ ହସିଦେଲେ । ସେ ବି ଆଉ କାଳ ବିଳମ୍ବ ନ କରି ମେଡିକାଲ ସମ୍ବନ୍ଧୀୟ ବହିଟିଏ ବାହାର କରି ବସି ପଡ଼ିଲେ ନିଜ ସିଟ୍‌ରେ । ମେଗାଜିନ୍‌ରେ ସିନା ଆଖି ଲାଖି ଥିଲା, ହେଲେ ମନଟା ତାଙ୍କର ଅନ୍ୟତ୍ର ବିଚରଣ କରିବାକୁ ଲାଗିଲା ।

ଡାକ୍ତର ସୁବ୍ରତ ବାବୁଙ୍କର ସହଧର୍ମିଣୀ ସୁଷମା ଦେବୀ ମଧ୍ୟ ଜଣେ ଡାକ୍ତର

ତଥା ଅଧ୍ୟାପନା କାର୍ଯ୍ୟ କରନ୍ତି ମେଡିକାଲ୍‌ରେ । ଉଭୟ ସ୍ୱାମୀ ସ୍ତ୍ରୀ ଡାକ୍ତର ବନ୍ଧୁମାନଙ୍କ ମହଲରେ ବେଶ୍ ପରିଚିତ । ସଂସାରରେ ତାଙ୍କର ଦୁଇ ଝିଅ ସୁଲଗ୍ନା ଓ ଶୁଭଶ୍ରୀ ଓ ବୁଢ଼ୀ ମାଆ । ମାଆ, ସୁଲଗ୍ନା ଓ ଶୁଭ୍ରଶୀର ବିଶେଷ ଭାବେ ଯତ୍ନ ନେଇଥାନ୍ତି ସୁଷମା । ଝିଅ ଦୁଇଟି କନ୍‌ଭେଣ୍ଟ୍ ସ୍କୁଲର ଛାତ୍ରୀ । ଯଦିବା ଡାକ୍ତର ସୁଷମା ଜଣେ ଡାକ୍ତର କିନ୍ତୁ ଅଧ୍ୟାପନା କାର୍ଯ୍ୟରେ ରହିଥିବାରୁ ଘର କଥା ବୁଝିବା ପାଇଁ ଟିକେ ଅଧିକା ସମୟ ମିଳିଥାଏ ତାଙ୍କୁ । ଝିଅ ଦୁଇଟିର ଟିକିନିଖି ସମସ୍ତ କଥା ବୁଝିବାକୁ ପଡ଼ିଥାଏ ସୁଷମାଙ୍କୁ । ସେମାନଙ୍କର ଖାଇବା, ପିଇବା ଠିକଣା ସମୟରେ ସ୍କୁଲ ପାଇଁ ରେଡି କରାଇବା, ଟିଫିନ୍ ସଜାଡ଼ିବା ଇତ୍ୟାଦି । ସ୍କୁଲରେ ଛାଡ଼ିବା ଓ ଆଣିବା କାମଟି ସୁବ୍ରତ କରିଥାନ୍ତି । ସୁବ୍ରତ ବାବୁ ଏତେ ବିଜି ମଣିଷ ଯେ ବୁଢ଼ୀ ମାଆଙ୍କ ପାଇଁ ବି ସମୟ ଟିକିଏ ବାହାର କରିବା ତାଙ୍କ ପକ୍ଷେ ସମ୍ଭବ ହୁଏନା । କେଉଁ ଦିନ କେମିତି ରାତ୍ରିରେ ଡ୍ୟୁଟି ନଥିଲେ ସୁଷମାଙ୍କୁ ସାହାଯ୍ୟ କରିବା ଓ ମାଆଙ୍କ ପାଖରେ ବସି ତାଙ୍କ ସ୍ୱାସ୍ଥ୍ୟ ଖବର ବୁଝିଥାନ୍ତି ଓ ଦୁଇପଦ କଥା ହୋଇ ଥାଆନ୍ତି । ମାଆ ହସି ହସି କହନ୍ତି, ‘‘କିରେ ତୋତେ କ’ଣ ଏବେ ସମୟ ମିଳିଲା ।’’

ବେଶ୍ ଚାଲିଥିଲା ଜୀବନର ଧାରା ଅଙ୍କା ବଙ୍କା ପଥ ଡେଇଁ ଡେଇଁକା । ସମୟ ସବୁବେଳେ ସମାନ ଯାଏନା । ଏକାମାତ୍ର ଶାଳୀ, ସୁଦୀପ୍ତାକୁ ନେଇ ଏବେ ଏକ ଟେନ୍‌ସନ୍ । ସୁଦୀପ୍ତା, ସୁଷମା ଦେବୀଙ୍କର ଏକମାତ୍ର ଅଲିଅଳୀ ଭଉଣୀ । ରୋଡ୍ ଏକ୍ସିଡେଣ୍ଟ୍‌ରେ ବାପା, ମାଆ ବିଦା ହୋଇଗଲା ପରେ ସୁଦୀପ୍ତାର ସମସ୍ତ ଦାୟିତ୍ୱ ସୁଷମାଙ୍କୁ ହିଁ ବହନ କରିବାକୁ ପଡ଼େ । ଗତ ବର୍ଷ ଖୁବ୍ ଜାକଜମକରେ ବାହା ଦେଇଥିଲେ ସୁଦୀପ୍ତାକୁ ଆଇ.ଏ.ଏସ୍. ଅଫିସର ଶ୍ରୀଜୟଙ୍କ ସହିତ । ବାରବାଟୀ ଷ୍ଟାଡିୟମରେ ଭୋଜିର ଆୟୋଜନ ହୋଇଥିଲା । ଦେଖିଲା ପରି ରିସେପ୍‌ସନ୍‌ଟିଏ ହୋଇଥାଏ । ଆଇ.ଏ.ଏସ୍. ଜୁଆଇଁ ପାଇ ସମସ୍ତେ ଭାରି ଖୁସି ହୋଇଥିଲେ । ବାହାଘରରେ କୌଣସି କସର୍ ଛାଡ଼ି ନଥିଲେ ସୁଷମା । ଜ୍ୱାଇଁଙ୍କୁ ମାରୁତି ଜେନ୍, ହାର, ମୁଦି ଓ ଝିଅକୁ ତିରିଶ ଭରି ଓଜନର ଗହଣ ଦେବା ସହିତ କୌଣସିଥିରେ ଟିକିଏ ବି ତ୍ରୁଟି ନଥିଲା ତାଙ୍କର । ଅମର, ଭାଉଜଙ୍କୁ ଧରି ଆମେରିକାରୁ ଆସିଥିଲା ବାହାଘରରେ ଯୋଗ ଦେବାପାଇଁ । ଅମର, ତାଙ୍କର ସାନ ଭାଇ, କମ୍ପ୍ୟୁଟର ଇଞ୍ଜିନିୟର ଭାବେ କାର୍ଯ୍ୟ କରନ୍ତି ଆମେରିକାରେ ଏକ କମ୍ପାନୀରେ । ବେଶ୍ ହସ ଖୁସିରେ ଗଡ଼ି ଚାଲିଥାଏ ସେମାନଙ୍କର ଜୀବନର ଗତିପଥ ।

ତେବେ ଦୁଃସମୟ ଯେବେ ଆସେ ବନ୍ଧୁବାନ୍ଧବ ସମସ୍ତଙ୍କୁ ଧରି ଆସେ । ଡାକ୍ତର ସୁବ୍ରତଙ୍କର ଏଭଳି ଏକ ସମୟ ଆସିବ, ସେ ଭାବି ପାରୁ ନଥିଲେ । ହାଇକୋର୍ଟରୁ

ନୋଟିସ୍ ଲାଗିଛି ତାଙ୍କ ନାମରେ ଓ ସୁଦୀପ୍ତା ନାମରେ । ଶ୍ରୀଜୟ ମିଥ୍ୟା ଆରୋପ ଲଗାଇଛନ୍ତି ସୁଦୀପ୍ତା ଓ ତାଙ୍କ ନାମରେ ସେଥିପାଇଁ ସେ ତାକୁ ଡିଭୋର୍ସ ଦେବାକୁ ଚାହାନ୍ତି । ନୋଟିସ୍ ପଢ଼ି ଅକାଳରେ ଚଡ଼କ ପଡ଼ିବା ପରି ମନେ ହୋଇଥିଲା ସୁଷମାଙ୍କର । ସୁବ୍ରତ ଓ ସୁଦୀପ୍ତାକୁ ନେଇ ଏତେବଡ଼ କୁତ୍ସାରଟନା କରିପାରିଲେ ଶ୍ରୀଜୟ ? ସୁବ୍ରତ ବି ବହୁତ ମର୍ମାହତ ହୋଇ ପଡ଼ିଲେ । ଆସନ୍ତା ଜାନୁଆରୀ ମାସରେ କୋର୍ଟରେ ହିୟରିଂ ହେବ । ଏଣୁ ସେ ଆସିଛନ୍ତି ଜଣେ ଓଡ଼ିଆ ଓକିଲଙ୍କ ସହିତ ପରାମର୍ଶ କରିବା ପାଇଁ, ଏ ନେଇ ଆଗରୁ ଫୋନ୍‌ରେ ତାଙ୍କ ସହିତ କଥା ହୋଇଥିଲା ତାଙ୍କର ।

ସୁଦୀପ୍ତାର ସହ୍ୟ ଶକ୍ତି ସୀମା ପାରି ହୋଇ ଯାଇଥିଲା ।ସେ ଆଜିକୁ ଘର ଛାଡ଼ି ଆସିବାର ଦୁଇମାସ ବିତିଯାଇଥାଏ । ବିଭାଘରର ମାତ୍ର ଗୋଟିଏ ବର୍ଷ ନ ବିତୁଣୁ କାହାର ଯେପରି ଶ୍ୱେନଦୃଷ୍ଟି ତା ଉପରେ ପଡ଼େ । ଶ୍ରୀଜୟଙ୍କର ବ୍ୟବହାରରେ କ୍ରମେ ଫରକ ଅନୁଭବ କରେ ସେ । ଅଫିସ୍‌ରୁ ଡେରିରେ ଫେରିବା ନେଇ ଅଭିମାନରେ ମୁହଁ ଫୁଲାଇ ବସେ । ଅଫିସ୍‌ରେ କାମର ବାହାନା ଦେଖାଇ ସୁଦୀପ୍ତାଙ୍କୁ ଭୁଲାଇବାକୁ ଚେଷ୍ଟା କରନ୍ତି ସେ । ଦିନେ ଦିନେ କୌଣସି ଖବର ନ ଦେଇ ଘରକୁ ଫେରନ୍ତି ନାହିଁ । ଅଫିସ୍‌କୁ ଫୋନ୍ କଲେ ବୁଢ଼ା ପିଅନ୍ ଭାଗବତ କହେ, ସାହେବ ଆଜି ଟୁର୍‌ରେ ଯାଇଛନ୍ତି । କିଛି ନକହି ଫୋନ୍‌ଟି ଥୋଇ ଦିଏ ସେ । ବିଛଣାରେ ତକିଆରେ ମୁହଁ ଗୁଞ୍ଜି କାନ୍ଦଣାରେ ଭାଙ୍ଗିପଡ଼େ ସୁଦୀପ୍ତା । ନ ଖାଇ ନ ପିଇ ସେମିତି ଶୋଇପଡ଼େ ସେ । ଯିଏ ଦିନ ବେଳାରେ ଏକାଧିକ ଥର ଘରକୁ ଚାଲି ଆସୁଥିଲେ, ଖାଲି ସୁଦୀପ୍ତାକୁ ହଇରାଣ କରିବାକୁ, ତାଙ୍କର ଏବେ ସମୟର ଅଭାବ, ଅଫିସ୍‌ରେ କାମର ଭିଡ଼ ଆଳ ଦେଖାଇ ଘରକୁ ଫେରିବା ସମ୍ଭବ ହୁଏନି । ଦିନ ବେଳା ଖାଇବାର ତ ଦୂରର କଥା ରାତି ଖାଇବା ପାଇଁ ଅପେକ୍ଷା କରି କରି ଥକି ଯାଏ ସୁଦୀପ୍ତା । ସୁଦୀପ୍ତାର ମନରେ ଅବିଶ୍ୱାସର ବୁଢ଼ୀଆଣୀ ଜାଲ ବସା ବାନ୍ଧେ । ଆଖିର ପାଣି ତାର ଆଖିରେ ମରିଯାଏ । ତାର କୁଆଁରୀ ମନରେ ଗଭୀର ରେଖାପାତ ସୃଷ୍ଟି କରେ । ସ୍ୱପ୍ନ ତା'ର ସ୍ୱପ୍ନରେ ହିଁ ହଜି ଯାଏ । ମନରେ ଅଶାନ୍ତି ରୂପ ନିଏ । ଶ୍ରୀଜୟ ଏକ ଭିନ୍ନ ମଣିଷରେ ପରିଣତ ହୋଇଯାଆନ୍ତି । ସୁଦୀପ୍ତାର ରାଗ, ଅଭିମାନ ତାଙ୍କ ଉପରେ କିଛି ପ୍ରଭାବ ପକାଏନାହିଁ । ଟୁର୍‌ରୁ ଫେରି ଶ୍ରୀଜୟ ଆଗ ଭଳି ସୁଦୀପ୍ତାକୁ ଦେଖି ପାଗଳ ହୋଇ ଉଠନ୍ତି ନାହିଁ କି କୌଣସି ଆଗ୍ରହ ପ୍ରକାଶ କରନ୍ତି ନାହିଁ ।

ବାହାଘର ପରେ ସେମାନେ ହନିମୁନ୍ ଯାଇଥିଲେ ସିମ୍‌ଲା । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦୁହେଁ ମୁହୂର୍ତ୍ତିଏ ପାଇଁ ଅଲଗା ନ ହେବାର ଶପଥ ନେଇଥିଲେ ।

ଶ୍ରୀଜୟଙ୍କୁ ପାଇ ବହୁତ ଖୁସି ହୋଇଥିଲା ସୁଦୀପ୍ତା । ସୁଦୀପ୍ତା ନିଜକୁ ସୌଭାଗ୍ୟବତୀ ବୋଲି ମନେ କରିଥିଲା । ସାଇପଡ଼ିଶା ଆଗରେ ନିଜ ସ୍ୱାମୀଙ୍କର ଗାରିମାରେ ମୁଗ୍ଧ ହୋଇ ପଡୁଥିଲା ସେ । ସେ ଶ୍ରୀଜୟ, ଆଉ ଶ୍ରୀଜୟ ହୋଇ ରହିନାହାନ୍ତି । ଶ୍ରୀଜୟଙ୍କର ଛଳନା ପୂର୍ଣ୍ଣ ବ୍ୟବହାରରେ ବ୍ୟଥିତ ହୋଇ ପଡ଼େ ସେ ।

ଆଜିକୁ ସପ୍ତାହେ ବିତି ଗଲାଣି । ଘରେ କୁହାବୋଲା କିଛି ନାହିଁ ଟୁର୍‌ରେ ଯାଇଛନ୍ତି ଶ୍ରୀଜୟ । ଭାରି ବ୍ୟସ୍ତ ହୋଇ ବାରମ୍ବାର ଅଫିସ୍‌କୁ ଫୋନ୍ କରି ବିଫଳ ହୋଇଛି ସେ । ବୁଢ଼ା ପିଅନ୍‌ଟି ଖବର ଦିଏ ସାହେବ କଳାହାଣ୍ଡି ଟୁର୍‌ରେ ଯାଇଛନ୍ତି ଆଉ ତାଙ୍କ ସହିତ ସେଇ ମିସ୍ ସୁକାନ୍ତି ସିଂ । ବୁଢ଼ା ପିଅନ ଭାଗବତ ଝିଅ ପରି ମନେ କରେ ସୁଦୀପ୍ତାଙ୍କୁ । ଆଗରୁ କେତେଥର ସାବଧାନ କରିଛି ସେ । ସୁକାନ୍ତିକୁ ନେଇ କେତେଥର ଝଗଡ଼ା ହୋଇଛି ତା'ର ସ୍ୱାମୀଙ୍କ ସହିତ । ଅଜାଗା ଘା' ଦେଖି ହୁଏନି କି ଦେଖାଇ ହୁଏନି । ତଥାପି କେତେ ଆଉ ସେ ନୀରବରେ ରହିବ । ଅପାଙ୍କ ପାଖରେ ଯାଇ କହିବାକୁ ବାଧ ହୋଇଛି ସେ ।ସୁଷମା, ତାକୁ ନୀତିବାଣୀ ଶୁଣାଇ ସ୍ୱାମୀଙ୍କୁ ନିଜର କରି ବାନ୍ଧି ରଖିବା ପାଇଁ ଉପଦେଶ ଶୁଣାନ୍ତି ।

× × ×

ସେଦିନ ଅପାଙ୍କ ପାଖରୁ ନିରାଶ ହୋଇ ଫେରି ଆସେ ସେ । ମନରେ କେତେ କଥା ଭାବି ଆସିଥାଏ । ସ୍ୱାମୀ ତା'ର ଟୁର୍‌ରୁ ଫେରି ଆସିଥିବେ, ଆଉ ପଛ କଥାକୁ ଭୁଲିଯାଇ ସେ ନିଜୁ କିଛି ଏଡ଼ଜଷ୍ଟ କରିନେବ । ସ୍ୱାମୀଙ୍କର ସମସ୍ତ ଅତ୍ୟାଚାର ସେ ପାଶୋରି ଦେବ । ପିଠିରେ ଜଳନ୍ତା ସଗାରେଟ୍‌ର ଚେଙ୍କାର ଚିହ୍ନ ଉପରେ ହାତ ବୁଲାଇ ଆଣିଲା ସେ । ମୁହୂର୍ତ୍ତକ ପାଇଁ ସବୁ ଭୁଲି ଯାଇ ଘର ବାନ୍ଧିବାର ଏକ ମଧୁର ସ୍ୱପ୍ନରେ ବୁଡ଼ି ଯାଇଥିଲା ସୁଦୀପ୍ତା । ଟେକ୍ସିରୁ ଓହ୍ଲାଇ ଘର ଭିତରକୁ ପଶିଗଲା ସେ । ଚାକରଟି ଦାଣ୍ଡରେ କ'ଣ କାମ କରୁଛି, ସେଥିକୁ ଭ୍ରୁକ୍ଷେକ ନ ଥିଲା ତା'ର । ବେଡ୍‌ରୁମ୍‌ର କବାଟଟି ବନ୍ଦ ଥିବାର ଦେଖି ବାହାରୁ ଠକ୍ ଠକ୍ ଶବ୍ଦ କଲା ସେ । କିଛି ସମୟ ପରେ କବାଟ ଖୋଲିଲେ ଶ୍ରୀଜୟ । ହଠାତ୍ ସୁଦୀପ୍ତାଙ୍କୁ ଦେଖି ସେ ଚମକି ପଡ଼ିଲେ । ସୁଦୀପ୍ତାର ଆଖି ଫାଟି ଟପ୍ ଟପ୍ ହୋଇ ଖସି ପଡ଼ିଲା ଅଶ୍ରୁଧାରା । ତା'ରି ଘରେ ତା ସ୍ୱାମୀଙ୍କୁ ଅନ୍ୟ ଏକ ସ୍ତ୍ରୀ ସହିତ ବେଡ୍‌ରେ ଦେଖି ସେ ଧୈର୍ଯ୍ୟ ଧରି ପାରି ନଥିଲା । ଆଶା ତା'ର ପାଣି ଫୋଟକା ପରି ମିଳାଇ ଯାଇଥିଲା । ସେମିତି ଏକ ମୁହାଁ ହୋଇ ଚାଲି ଆସିଥିଲା ସେ ଅପାଙ୍କ ଘରକୁ ।

ଇତି ମଧ୍ୟରେ ଅପା, ଭିଣୋଇ ଯାଇଥିଲେ, ଶ୍ରୀଜୟଙ୍କ ଘରକୁ । ସୁଦୀପ୍ତା ଦୁଃଶ୍ଚରିତ୍ରା ବୋଲି କହି ସେମାନଙ୍କୁ ଅପମାନିତ କରିଛନ୍ତି ଶ୍ରୀଜୟ । ତାକୁ ଆଉ

ଭବିଷ୍ୟତରେ କେବେ ବି ଡିଷ୍ଟର୍ବ କରିବାକୁ ମନା କରିଦେଇଛନ୍ତି ସେ । ସୁଦୀପ୍ତା ଯେତେ ପାଠ ପଢୁଆ ଝିଅ ହେଲେ ବି ତା ମନରେ ଏକ ଅର୍‌ମାନ୍ ଥିଲା ସବୁ ଝିଅଙ୍କ ପରି । ଦିନ ପରେ ଦିନ, ମାସ ପରେ ମାସ ବିତି ଯାଇଛି, ଶ୍ରୀଜୟ ଆଉ ଆସି ନାହାନ୍ତି । ଆସିବା ବାଟକୁ ଚାହିଁ ବସିଛି ସେ । ଶ୍ରୀଜୟ ଯେଉଁ ଭୁଲ ବାଟରେ ଯାଇଛନ୍ତି, ଦିନେ ନା ଦିନେ ଭୁଲ ବୁଝି ସେ ନିଶ୍ଚେ ତା ପାଖକୁ ଫେରି ଆସିବେ । ସମସ୍ତ ଆଶାରେ କଳା ପରଦା ପକାଇ କୋର୍ଟରୁ ନୋଟିସ୍ ଆସିଛି । ଶ୍ରୀଜୟ ଚାହାନ୍ତି ତାକୁ ଡିଭୋର୍ସ ଦେବାକୁ । ଡିଭୋର୍ସ ନୋଟିସ୍ ସହିତ ଶ୍ରୀଜୟଙ୍କ ପିଟିସନ୍‌ର ଏକ ନକଲ ମଧ୍ୟ ତା ପାଖକୁ ଆସିଛି ।

ପିଟିସନ୍‌ରେ ସୁଦୀପ୍ତାର ଚରିତ୍ର ନେଇ ଆରୋପ କରିବା ସଙ୍ଗେ ସଙ୍ଗେ ସୁଦୀପ୍ତା ଓ ଡାକ୍ତର ସୁବ୍ରତଙ୍କ ଅବୈଧ ସମ୍ପର୍କ ରହିଥିବାରୁ ସେ ଶ୍ରୀଜୟକୁ ଛାଡ଼ି ଚାଲି ଯାଇଛି । ଦିଲ୍ଲୀ ହାଇକୋର୍ଟରୁ ଏ ନୋଟିସ୍ ଆସିଛି । ଏବେ ଶ୍ରୀଜୟ କେନ୍ଦ୍ର ସରକାରଙ୍କ କୃଷି ବିଭାଗରେ ଏକ ସିନିଅର ଅଫିସର ଭାବେ ଅବସ୍ଥାପିତ ହୋଇଛନ୍ତି । ଶ୍ରୀଜୟ ନିଜେ ତ ତଳକୁ ଖସି ଯାଇଛନ୍ତି, ଆଉ ତାକୁ ବି ଛାଡ଼ି ନାହାନ୍ତି । ଡାକ୍ତର ସୁବ୍ରତ ଓ ସୁଷମାଙ୍କର ଆତ୍ମ ସମ୍ମାନରେ ଆଞ୍ଚ ଆଣିବାକୁ ଟିକିଏ ବି ପଛାଇ ନାହାନ୍ତି । ତା'ର ଚରିତ୍ର ସଂହାର କରି ସୁବ୍ରତ ଓ ସୁଦୀପ୍ତଙ୍କୁ କୋର୍ଟ ପର୍ଯ୍ୟନ୍ତ ଟାଣି ନେଇ ଯାଇଛନ୍ତି ।

× × ×

ଜାନୁଆରୀ ମାସ ଆଠ ତାରିଖ । ସୁବ୍ରତଙ୍କ ଜୀବନରେ ଏକ ସଙ୍ଗୀନ ସମୟ । କୋର୍ଟ ତାରିଖ ଧାର୍ଯ୍ୟ ଅନୁଯାୟୀ ଡାକ୍ତର ସୁବ୍ରତ, ସୁଷମା ଓ ସୁଦୀପ୍ତାକୁ ଦିଲ୍ଲୀ ଯିବାକୁ ପଡ଼େ । ସୁବ୍ରତ ଓ ସୁଦୀପ୍ତାଙ୍କୁ କାଠଗଡ଼ାରେ ଛିଡ଼ା ହେବାକୁ ପଡ଼ିବ । ସେ ଘୃଣା ଓ ଲଜ୍ଜାରେ କାହାରିକୁ ଅନେଇ ପାରୁନାହାନ୍ତି । ସୁଷମା ବହୁତ ଭାଙ୍ଗି ପଡ଼ିଛନ୍ତି । ମିଛଟାରେ କି ହଇରାଣ ହେଉଛନ୍ତି ସୁବ୍ରତ ।

ଠିକଣା ସମୟରେ କୋର୍ଟରେ ଯାଇ ଉପସ୍ଥିତ ହେଲେ ସେମାନେ । ସେମାନେ ଦେଇଥିବା ଓକିଲ ବି ଆସି ଯାଇଥାନ୍ତି । ଦିନ ଦଶଟା ସମୟରେ ଜଜ୍ ଆସି ପହଞ୍ଚିଲେ ଓ କୋର୍ଟ କାର୍ଯ୍ୟ ଆରମ୍ଭ ହେଲା । ପ୍ରଥମେ ଜେରା ଚାଲିଲା ଶ୍ରୀଜୟଙ୍କୁ । ଶ୍ରୀଜୟ କାଠଗଡ଼ାରେ ଛିଡ଼ା ହୋଇଛନ୍ତି । ସୁବ୍ରତଙ୍କ ଓକିଲ ସୁକାନ୍ତିଙ୍କ ବିଷୟରେ ପଚରା ଉଚୁରା କଲେ । ସୁକାନ୍ତିକୁ ବିବାହ କରିବା ପାଇଁ ସୁଦୀପ୍ତାକୁ ସେ ଡିଭୋର୍ସ ଦେବାକୁ ଚାହାନ୍ତି କି ବୋଲି ପ୍ରଶ୍ନ ଉତ୍ଥାପନ କଲେ । ସୁକାନ୍ତି ସହିତ ଶ୍ରୀଜୟର ଯେ ଅବୈଧ ପ୍ରଣୟ ରହିଛି, ତାହା ଉପରେ ଜୋର ଦେଇଥିଲେ ଓକିଲ ବାବୁ । ମାତ୍ର ସବୁ ସତକଥା ଏଡ଼ାଇ ଯାଇଥିଲେ ଶ୍ରୀଜୟ । ତାପରେ ଡାକ ପଡ଼ିଲା ସୁବ୍ରତଙ୍କୁ । ସୁବ୍ରତ ଆଶ୍ଚର୍ଯ୍ୟ

ହୋଇ ଯାଇଥିଲେ, ତାଙ୍କ ବିପକ୍ଷ ଓକିଲ ରୂପେ ତାଙ୍କର ବନ୍ଧୁ ମି. ଅମୀୟ ଦାସ ତାଙ୍କ ସମ୍ମୁଖରେ ଛିଡ଼ା ହୋଇଛନ୍ତି । ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଥିବା ସୁବ୍ରତ କାଠଗଡ଼ାରେ ଛିଡ଼ା ହୋଇ ମନେ ମନେ ଟିକିଏ ଭରସା ପାଇଲେ । ଏଡ଼ଭୋକେଟ୍ ଅମୀୟ ଦାସ ଗୀତା ଛୁଆଁଇ ଜେରା କାର୍ଯ୍ୟ ଆରମ୍ଭ କଲେ । ପ୍ରଶ୍ନ ବାଣରେ ଜର୍ଜ୍ଜରିତ ହୋଇ ପଡ଼ିଲେ ସେ । ଅମୀୟ ଦାସ ପ୍ରମାଣ କରିବାକୁ ଚାହାନ୍ତି ସୁବ୍ରତ ଓ ସୁଦୀପ୍ତାର ଅବୈଧ ପ୍ରେମ ସମ୍ପର୍କକୁ, ଯାହାକି ମିଥ୍ୟା ଆରୋପ ଲଗାଇଛନ୍ତି ଶ୍ରୀଜୟ । ଉତ୍ତେଜନାରେ ତାଙ୍କର ବ୍ଲଡ୍ ପ୍ରେସର୍ ବଢ଼ିବାରେ ଲାଗିଲା । ତାଙ୍କ କପାଳରେ ବିନ୍ଦୁ ବିନ୍ଦୁ ଝାଳ ଦେଖାଦେଲା । ଓକିଲମାନେ ମିଛକୁ ସତ, ସତକୁ ମିଛ କରିବାରେ ଆଶ୍ରୟ ନିଅନ୍ତି ଯଦିବା ସେ ଆଗରୁ ଶୁଣିଥିଲେ, ମାତ୍ର ଆଜିର ସ୍ୱ ଅନୁଭୂତି ତାଙ୍କର ଏମିତି ମିଛ ଆଖି ସାମ୍ନାରେ । ସେ କେଶ୍ ହାରି ଯାଇଥିଲେ ଓ ଶ୍ରୀଜୟ, ସୁଦୀପ୍ତାଙ୍କୁ ଡିଭୋର୍ସ ଦେବାରେ ସଫଳ ହୋଇଥିଲେ । ଏଡ୍‌ଭୋକେଟ୍ ଅମୀୟ ଦାସଙ୍କ ପ୍ରତି ତାଙ୍କ ଧାରଣା ବଦଳି ଯାଇଥିଲା । ବନ୍ଧୁ ଅମୀୟଙ୍କ ଓକିଲାତି ଭାଷାରେ ଜଣେ ସମାଜରେ ପ୍ରତିଷ୍ଠିତ ସତ୍ୟ,ନିଷ୍ଠାପର ଡାକ୍ତର ସୁବ୍ରତ 'ଅସତୀ' । ଆଉ ସବୁଦିନ ପାଇଁ ବିଚ୍ଛିନ୍ନ ହୋଇ ଯାଇଥିଲା ସୁଦୀପ୍ତା ଓ ଶ୍ରୀଜୟଙ୍କ ବିବାହ ବନ୍ଧନ ।



# ଛାତିଏ କୋହ

ବହୁତ ଦିନ ପରେ ଗାଁକୁ ଫେରିଲି । ବହୁତ ଭଲ ଲାଗୁଥାଏ । ସକାଳୁ ସକାଳୁ ନିଦ ଭାଙ୍ଗିଲାଣି । କିନ୍ତୁ ଅଳସୁଆମୀରେ ବିଛଣା ଛାଡ଼ିବାକୁ ଇଚ୍ଛା ହେଉନାହିଁ । ପାଖରେ ଶୋଇଛନ୍ତି ସୁଷମା, ଯେମିତି ବହୁତ ଦିନରୁ ହାଲିଆ ହୋଇ ନିଶ୍ଚିନ୍ତ ହୋଇ ଶୋଇ ପଡ଼ିଛନ୍ତି ସେ । ଆମେ କାଲି ବହୁତ ଡେରିରେ ପହଞ୍ଚିଲୁ । ସତରେ ମୁଁ ବି ଏତେ ଟାୟାର୍ଡ଼ ଅନୁଭବ କରୁଥିଲି ଯେ - ମୋର ସକାଳ ଚାରିଟାରେ ଉଠିବା କଥା - ମାତ୍ର ଉଠୁଛି ଛଅଟାରେ । ସବୁଦିନ ଚାରିଟାରେ ଉଠି ଆମେ ମର୍ଣ୍ଣିଂ ୱାକ୍‌ରେ ଯାଉଁ । ମନେ ପଡୁଛି, ଶିବୁବାବୁ, ମଳୟ ବାବୁ ଓ ସୁର ବାବୁଙ୍କୁ । ଚାରିଟାରେ ଆମେ ପ୍ରଥମେ ଇସ୍‌କନ୍ ମନ୍ଦିର ଆଗରେ ଏକାଠି ହେଉ, ସେଠାରୁ ଚାଲି ଚାଲି ବାଣୀ ବିହାର । ଖୋଲା ପବନ । ଦେହ ମନ ଉଲ୍ଲସି ଉଠେ । ସେଠାରୁ ଆସି ପୁଣି ଇସ୍‌କନ୍ ମନ୍ଦିର । ସେହି ଠାରୁ ଘରକୁ ଫେରି ନିତିଦିନ ପରି ଅଫିସ୍ ଯାଉ । ଭାରି ମଜାରେ କଟେ ଦିନ ଗୁଡ଼ିକ । ଆଖି ସାମ୍ନାରେ ଚିତ୍ରପଟ ପରି ବୁଲିଗଲା ମର୍ଣ୍ଣିଂୱାକର ମୁହୂର୍ତ୍ତ ଗୁଡ଼ିକ । ସତରେ ଭୁବନେଶ୍ୱରର ସକାଳ ସନ୍ଧ୍ୟାର ହାୱା ପରି ହାୱା ଆଉ କୋଉଁଠି ବି ଅନୁଭବ ହୁଏନି ।

ସକାଳୁ ଉଠି ଘର ସାମ୍ନାରେ ଏକ ଚୌକୀରେ ବସି ଅଳସ ଭାଙ୍ଗିବାକୁ ଲାଗିଲି । ପୂର୍ବ ଦିଗରେ ସିନ୍ଦୁରା ଫାଟି ଆସିଲାଣି । ବାଳ ସୁରୁଜର ଅରୁଣିମା ଗଛପତ୍ର ଦେହରେ ଓ ତଳେ କଅଁଳିଆ ଘାସ ଉପରେ ପଡ଼ି ଚିକ୍ ଚିକ୍ କରୁଥାଏ । ଗାଁ ଦାଣ୍ଡରେ ଗୋରୁ ଗାଈ ହାଙ୍କି ନେଉଥାଏ ପଡ଼ିଆ ଉପରକୁ ମକରା ମାଆ । ହାତରେ ଠେଙ୍ଗାଟିଏ ଧରି ହୁରୁଡ଼ାଇ ନେଉଥାଏ ମକରା । ମାଆକୁ ସାହାଯ୍ୟ କରିବା ପାଇଁ ସେ ବି ଚାଲିଥାଏ ଗୋରୁ ପଲ ପଛରେ । ଗାଁର ସମସ୍ତଙ୍କର ଗୋରୁ ଗାଈ ମଣିବା ମକରା ମାଆର କାମ । ସେଇଥିରୁ ଯାହା ମିଳେ ମାଆ ପୁଅ ଦୁଇ ପ୍ରାଣୀ ଗୁଜୁରାଣ ମେଣ୍ଟାନ୍ତି । କିଏ ଚାଉଳ ଦିଏ ତ, କିଏ ପରିବା, କିଏ ବା ତେଲ ଚିନି, କିଏ ବା ପଇସା ଦିଏ ।

ମୋତେ ଦେଖି ମକରା ମାଆ ହାତେ ଓଢ଼ଣା ଟାଣି ଦେଇ ଦୂରରୁ ମୁଣ୍ଡିଆଟିଏ

ପକାଇଲା । ମକରାକୁ ବି ଇସାରା କଲା ଓଳିଗି ହେବା ପାଇଁ ।

ମକରା ଦଶବାର ବର୍ଷର ପିଲାଟିଏ । ସେ କିଛି ନ ବୁଝି ନସୁଝି ମାଆ କଥାରେ ଓଳିଗି ହୋଇ ପୁଣି ତା ବାଟରେ ଚାଲିଗଲା ।

ମକରା ମାଆ କହି ଉଠିଲା, ଆରେ ମକରା ଶୁଣ୍, ସେ ପରା ତୋର ବଡ଼ବାପା । ସହରରୁ ଆସିଛନ୍ତି । ତୋ ବାପାକୁ ସେ ବହୁତ ଭଲ ପାଉଥିଲେ । ନିଜର ସାନ ଭାଇଠାରୁ ଅଧିକା ଦେଖୁଥିଲେ ।ଯେବେ ଗାଆଁକୁ ଆସନ୍ତି, ତୋ ବାପାକୁ ଆଗ ଡାକ ପକାନ୍ତି । ଗାଁର ଭଲ ମନ୍ଦ କଥା ବୁଝନ୍ତି । ଦରକାର ବେଳେ ଅନାଥ ଗରିବ ଲୋକଙ୍କୁ ସାହାଯ୍ୟ କରନ୍ତି । ସେ ଭାରି ଉପକାରୀ ଲୋକ । ଏବେ ଆମ ଗାଁରେ ରହିବେ । ତୁ ନିତି ଆସି ତାଙ୍କର ବୋଲ ହାକ କରିବୁ, ବୁଝିଲୁ ।

ମୁଁ ଚେୟାରରେ ବସି ମୁରୁକି ହସୁଥିଲି । ସେମାନେ ତାଙ୍କ କାମରେ ଚାଲିଗଲେଣି, ଅତୀତଟା ଆଖି ଆଗରେ ଭାସି ଉଠୁଥିଲା । କେଡ଼େ ସରଳ ଲୋକ ଏମାନେ । ମାଧ - ଏହି ମକରାର ବାପା, ସାପ କାମୁଡ଼ାରେ ଆର ପାରିକୁ ଚାଲିଗଲା ପରେ ବଡ଼ କଷ୍ଟରେ ଚଳୁଛନ୍ତି ମାଆପୁଅ । ମାଧ ପାଇଁ ମନଟା ମୋର ଦୁଃଖରେ ଭରିଗଲା । କେତେ ଅଳ୍ପ ବୟସରୁ ଚାଲିଗଲା ସେ ।

ଗାଁର ସମସ୍ତେ ଜାଗି ଉଠିଲେଣି । ଦାଣ୍ଡରେ ଚାଲିବା ଆରମ୍ଭ ହୋଇ ଗଲାଣି । ଯାହାଙ୍କ ଘରେ ପାଇଖାନା ନାହିଁ - ସେମାନେ ଚାଲିଲେଣି, ବିଲକୁ, ପଡ଼ିଆ ଉପରକୁ ପୋଖରୀ ପାଣି ପାଇଁ । କାହା ଘର ଚାଳରୁ ଧୂଆଁ ବାହାରୁଛି - ଗରମ ବାମ୍ଫ ସହିତ ଚାହା ପାଣିର ବାସ୍ନା ଆସୁଛି । ସାରା ଗାଁଟା ଯେମିତି ଚଳ ଚଞ୍ଚଳ ହୋଇ ଉଠିଲାଣି ।

ସହରୀ ଜୀବନର ନିର୍ଜୀବତା ଗାଁରେ ନାହିଁ । ଏଠି ଭାଇ ବନ୍ଧୁ, କୁଟୁମ୍ବ ଭିତରେ ଆନ୍ତରିକତାର ଅଭାବ ନାହିଁ ।

ସକାଳୁ ସକାଳୁ ପ୍ରତିଦିନ ସୁରେଶ ଗାଁ ଦାଣ୍ଡରେ ମର୍ଣ୍ଣିଂ ୱାକ୍ କରନ୍ତି । ସେଦିନ ମର୍ଣ୍ଣିଂ ୱାକ ଅବସରରେ ହଠାତ୍ ମୋତେ ପିଣ୍ଡାରେ ବସିଥିବାର ଦେଖି ଆଗେଇ ଆସିଲେ । ଆମେ ପିଲା ବେଳରୁ ଦୁଇ ବନ୍ଧୁ । ଦୁହେଁ ଦୁହିଁଙ୍କର ଦର୍ଶନ ପାଇ ଖୁସି ହେଲୁ । ସେ ମୋତେ ଆନନ୍ଦରେ କୁଣ୍ଢେଇ ପକାଇଲେ ।

ସୁରେଶ ଶିକ୍ଷକତା କରୁଥିଲେ, ଏବେ ରିଟାୟାର୍ଡ଼ ହୋଇଗଲେଣି । ପାଖରେ ପଡ଼ିଥିବା ଚେୟାରରେ ବସିବାକୁ ଇଙ୍ଗିତ କରି କହିଲି, ‘‘ଆରେ ସୁରେଶ ବାବୁ ତୁମର ଇଏ କି ଅବସ୍ଥା ହୋଇଛି ? ତୁମେ ଏତେ ଦୁର୍ବଳ ଓ କ୍ଷୀଣ ହୋଇ ଯାଇଛ କାହିଁକି ? କ’ଣ ହୋଇଛି, ଅସୁଖ ବେସୁଖ ହୋଇଥିଲା କି ? ଆରେ ସୁଷମା - ଉଠିଲଣି କି ? ଆସ, ଦେଖ କିଏ ଆମ ପିଣ୍ଡାକୁ ଆସିଛି ?

ସୁଷମା ମୋ ଉଠିବା ଆଗରୁ ଉଠି ଘର କାମରେ ଲାଗିଲାଣି । ଡାକ ଶୁଣି

ଭିତରୁ ବାହାରି ଆସିଲେ ସେ ।

ମୁଁ କହିଲି, କ'ଣ ଚିହ୍ନି ପାରୁନ ସୁରେଶକୁ ?

ସୁଷମା କହିଲେ, ଆରେ ସୁରେଶ ଭାଇନା । କ'ଣ ଏମିତି ଦେଖା ଯାଉଛନ୍ତି, ସତରେ ଚିହ୍ନି ହେଉନାହିଁ । ଦେହଟା ସମ୍ପୂର୍ଣ୍ଣ ଝଡ଼ି ଯାଇଛି ।

ସୁରେଶ କହିଲେ, ହଁ ଭାଉଜ, ବୟସ ହେବା ସଙ୍ଗେ ସଙ୍ଗେ ସଂସାରର ଝଡ଼ଝଞ୍ଜା ମୋତେ ଜାରି ଦେଇଛି । ବଞ୍ଚିଥିବା ତକ ସବୁ ମଥା ପାତି ସହି ନେବାକୁ ପଡ଼ିବ । କଥାରେ କହନ୍ତି, 'ସଂସାର କଲେ ପଥର ପଡ଼ିଲେ ସହି' । ଆଉ ମୋର ଏ ପରିଣତ ବୟସ କ'ଣ ସହି ପାରୁଛି ? ଏଇ ଅଳ୍ପ ଦିନ ହେଲା ମୋର ଡାଇବେଟିସ୍ ବାହାରିଛି । ଖାଇବା ପିଇବାରେ ବଡ଼ କଟକଣା । ସେଥିପାଇଁ ମୋ ଏ ଶରୀରର ଅବସ୍ଥା ଦିନକୁ ଦିନ ଖରାପ ଆଡ଼କୁ ଗତି କରୁଛି । ଡାକ୍ତର ପରାମର୍ଶ ଦେଇଛନ୍ତି ସବୁଦିନ ମର୍ଣ୍ଣିଂୱାକ୍ କରିବାକୁ । ମୁଁ ତାଙ୍କ ଦୁଃଖରେ ଭାଗୀଦାର ହେବା ପାଇଁ କହିଲି - ବୟସ ଗଡ଼ିଲେ ମଣିଷର କେତେ ରୋଗବ୍ୟାଧି ଆସେ । ସେଥିପାଇଁ ଭାବିଲେ କିଛି ଫଳ ହେବ ନାହିଁ ।

ଭିତରକୁ ପଶିଯାଇ - ଆମ ଦୁହିଁଙ୍କ ପାଇଁ ଦୁଇକପ୍ ଚାହା ନେଇ ଆସିଲେ ସୁଷମା । ସୁରେଶ୍ କହିଲେ - ମୁଁ ସେଥିପାଇଁ ଭାବୁ ନାହିଁ, ଭାବୁଛି ମଣିଷର ଭାଗ୍ୟ କଥା ।

କହିଲି, ଆପଣ ତ ଭାଗ୍ୟବାନ । ସଂଜୟ ପରି ପୁଅ ପାଇଛନ୍ତି । ଆପଣଙ୍କର ଦୁଃଖ କ'ଣ ?

କିଛି ସମୟ ଅଟକିଗଲେ ସେ । କେମିତି ଭାବ ବିହ୍ୱଳ ହୋଇ ଉଠିଲେ ସେ । ସତେ ଯେମିତି ହୃଦୟର କେଉଁ ସୂକ୍ଷ୍ମ ତନ୍ତ୍ରୀ ତାଙ୍କର ଥରି ଉଠିଲା । ସେ ଭୋ ଭୋ କରି କାନ୍ଦିବାକୁ ଆରମ୍ଭ କଲେ । ସୁଷମା ଓ ମୁଁ ବହୁ ଚେଷ୍ଟା କରି ତାଙ୍କୁ ଶାନ୍ତ କରିବାକୁ ଚେଷ୍ଟା କଲୁ ।

ଟିକିଏ ଶାନ୍ତ ହେଲା ପରେ ଆଖି ପୋଛି ଥରିଲା କଣ୍ଠରେ କହିଲେ - ଭାଗ୍ୟବାନ ? କିଏ ଭାଗ୍ୟବାନ ? ଆମେ ବାପା ମାଆ ? ଯେ ପର୍ଯ୍ୟନ୍ତ ସଂଜୟ ହାତକୁ ଦିହାତ ହୋଇ ନଥିଲା - ସେ ଥିଲା ଆମର । ପୁଅ ବାହା ହୋଇଗଲା ପରେ ତା ବାପା ମାଆ ତା ପାଖରେ ଅଲୋଡ଼ା ।

ଏକମାତ୍ର ପୁଅ ସଂଜୟ । ଅନ୍ଧର ଲଉଡ଼ି ଭଳି ସେ ଆମର ଏକମାତ୍ର ଭରସା । ହେଲେ ସେହି ପୁଅ ସଂଜୟ ଆମ ସହିତ ସବୁ ସମ୍ପର୍କ ଛିନ୍ନ କରି ଦେଇଛି । ସେଦିନ ମୁଁ ହଇଜାରେ ପଡ଼ିଛି । ତା ବୋଉ ଫୋନ୍ କଲା ତୋର ବାପାଙ୍କୁ ହଇଜା, ଅବସ୍ଥା ସଂକଟାପନ୍ନ । ବୋଉମା ଓ ନାତି ଟିକିମଙ୍କୁ ଧରି ତୁରନ୍ତ ଆସିବୁ । ସଂଜୟ ସେତେବେଳେ ଶ୍ୱଶୁରଘରେ । ସେ ଉତ୍ତର ଦେଲା - 'ମୁଁ ଆଜି ସେମାନଙ୍କୁ ଧରି ଭୁବନେଶ୍ୱର ଚାଲି

ଯାଉଛି । ଆସନ୍ତା କାଲି ଅଫିସରେ ଜରୁରୀ କାର୍ଯ୍ୟ ଅଛି । ଟଙ୍କା ପାଞ୍ଚ ଶହ ଶ୍ୱଶୁର ଘର ଚାକର ହାତରେ ପଠାଇଲି । ତା ବୋଉ କହିଲା - ଟଙ୍କା ଆମ ପାଖରେ ଅଛି, ତୁ ଆସିବୁ ବୋହୂମା'କୁ ଧରି । ବୟସ ହେଲାଣି - ବାପାଙ୍କ ଅବସ୍ଥା ଭଲ ନୁହେଁ, ତୋତେ ସେ ପାଖରେ ଦେଖିବାକୁ ଚାହାନ୍ତି । ତୁ ଆସିଲେ ମୁଁ ଭରସା ପାଇବି ।

ସଂଜୟ କହିଲା, ମୋ ଉପରେ ଅଫିସ୍ ଦାୟିତ୍ୱ, ନଗଲେ ନ ଚଳେ । ପୁଣି କାଲି ଟିକମ୍‌ର ଏଡ୍‌ମିଶନ୍ । ତେଣୁ ଆମେ କେହି ଯାଇ ପାରିବା ନାହିଁ ।

ଆରେ, ବାପାର ଜୀବନ ତୋ ପାଖରେ ବଡ଼ ନୁହେଁ । ବଡ଼ ତୋର ଅଫିସ ଦାୟିତ୍ୱ ? ତୁ ନ ଆସି ପାରିଲେ ବୋହୂମାକୁ ଅନ୍ତତଃ ପଠା । ବୋହୂମା ଆସିଲେ ମନରେ ଟିକିଏ ଦମ୍ଭ ହେବ ।

ନା ବୋଉ - ସେ କଦାପି ଯାଇ ପାରିବ ନାହିଁ । ଟିକମ୍‌ର କାଲି ସେଣ୍ଟ ଜୋସେଫ୍ ସ୍କୁଲ୍‌ରେ ଏଡ୍‌ମିଶନ । ଡାକ୍ତର ଡାକିଲେ ସେ ଆସି ସେଲାଇନ୍ ଦେଇ ଦେବେ - ବାପା ଭଲ ହୋଇ ଯିବେ ।

ସେଦିନ ତା ବୋଉ - ଆଖିରୁ ଧାରା ଗଡ଼ାଇ ଲାଇନ୍ କାଟି ଦେଲା । ସନ୍ଧ୍ୟାରେ ତା ଶ୍ୱଶୁର ଘରୁ ଜଣେ ଚାକର ଆସି ପାଞ୍ଚଶହ ଟଙ୍କା ଦେଲା । କହିଲା ଝିଅ ଜୋଇଁ କାଲି ସକାଳେ ଭୁବନେଶ୍ୱର ଯିବେ, ବୁଢ଼ା ବାପାଙ୍କ ଚିକିତ୍ସା ପାଇଁ ପାଞ୍ଚଶହ ଟଙ୍କା ଜୋଇଁ ପଠାଇଛନ୍ତି । ତା ବୋଉ ଆଖିରୁ ଧାର ଧାର ହୋଇ ଲୁହ ବୋହିଗଲା । ଅନ୍ତଫାଡ଼ି ସେ ଜନମ ଦେଇଛି ଯାହାକୁ - ସେ ଏବେ ସାତପର ହୋଇଗଲା । କ'ଣ ହେବ ସେ ଟଙ୍କା । ଚାକର ହାତରେ ସେ ଟଙ୍କା ଫେରାଇ ଦେଲା ।

ସେହିଦିନୁ ସଂଜୟ ଆମ ସହିତ ସବୁ ସମ୍ପର୍କ ତୁଟାଇ ଦେଇଛି, ଏହି ହେଉଛି ଆମର ଭାଗ୍ୟ ।

କଥାଟିକୁ ବିଶ୍ୱାସ କରି ପାରୁ ନଥିଲି ମୁଁ । ସେ ଭଳି ପିଲା ନୁହେଁ ସଂଜୟ ।

ଯେବେ ସେ ଇଞ୍ଜିନିୟରିଂ ପଢୁଥିଲା - ଆମ କ୍ୱାଟର୍ସକୁ ରେଗୁଲାର ଆସୁଥିଲା । କେଡ଼େ ସୁନ୍ଦର ଅମାୟିକ ବ୍ୟବହାର । ତା ମାଉସୀ ଯାହା ଦିଏ - ଖୁସି ମନରେ ସେ ଖାଇ ଦେଇ ଯାଏ । ମୋର ତ ଦୁଇଟି ଝିଅ । ସେମାନେ ଯେତେବେଳେ ସ୍କୁଲରେ ପଢୁଥିଲେ, ସେମାନଙ୍କୁ ସମୟ ସମୟରେ ବସି ପଢ଼ାଏ ସେ । ପ୍ରାୟ ସବୁ ରବିବାର ସେ ଆସେ - ଆମ ଘରେ ମଧ୍ୟାହ୍ନ ଭୋଜନ କରେ । ଯଦି ମଝିରେ ଗୋଟିଏ ରବିବାର ମିସ୍ କରେ - ଆମ ସମସ୍ତଙ୍କ ମନରେ ଭାରି କଷ୍ଟ ହୁଏ । ତା ମାଉସୀ ତ ଖାଲି ଘର ବାହାର ହେଉଥାଏ । ଆଉ ପିଲାମାନେ ବୋଉ କାହିଁକି ଆଜି ସଂଜୟ ଭାଇ ଆସିଲେ ନାହିଁ ବୋଲି ହଜାରେ ଥର ପଚାରିବସନ୍ତି । ସେ ଦିନଟି ଭାରି ଶୁଖିଲା ଶୁଖିଲା ଲାଗେ ।

ସପ୍ତାହରେ ଦୁଇ ଚାରିଥର ସୁରେଶ ପାଗଳ ପରି ଫୋନ୍ ପରେ ଫୋନ୍ କରେ । କେବଳ ଜାଣିବାକୁ ଚାହେଁ - ସଂଜୟ କେମିତି ଅଛି ?

ସାମାନ୍ୟ ପ୍ରାଇମେରୀ ସ୍କୁଲ ଶିକ୍ଷକ ପକ୍ଷରେ ପୁଅକୁ ଇଞ୍ଜିନିୟରିଂ ପଢ଼ାଇବା ଯେ କେଡ଼େ କଷ୍ଟ - ସେହି ସୁରେଶ ହିଁ ଜାଣିଛି । ପିଲାଟି ଜନ୍ମ ହେଲା ପାଖରୁ ତା ପ୍ରତି ସେ କେବେ ବି ଅବହେଳା କରିନାହିଁ ।

ସଂଜୟ ସବୁଥିରେ ଜୁଏଲ୍ । ବ୍ୟବହାର, ଭକ୍ତି, ପାଠ, ଶାଠ, ଚାଲିଚଳନ - ସବୁଥିରେ ସେ ସମସ୍ତଙ୍କ ଅନ୍ତରକୁ କିଣିନିଏ । ସୁରେଶ ବାବୁ ବାପ ହୋଇ ପୁଅର ପ୍ରଶଂସାରେ ଶତ ମୁଖର ହୋଇ ଉଠନ୍ତି । ପୁଅଭଳି ପୁଅଟିଏ ତାଙ୍କର ସଂଜୟ । ଗର୍ବରେ ଯେମିତି ତାଙ୍କର ଛାତି କୁଣ୍ଢେ ମୋଟ ହୋଇଯାଏ ।

ବାପ ପୁଅର ଏହି ଅଭେଦ୍ୟ ସମ୍ପର୍କ ଭିତରେ ଦିନେ ଏମିତି ଏକ ପାଚେରୀ ଛିଡ଼ା ହୋଇଯିବ - ସେ ହୁଏତ ସ୍ୱପ୍ନରେ ବି ଭାବି ନଥିଲେ । ଏନ୍ତୁଡ଼ିରୁ ଏଡୁଟିଏ କରିବା ଭିତରେ ହୃଦୟର ସମସ୍ତ ସ୍ନେହ ଶ୍ରଦ୍ଧାକୁ ଏକା ସେ ନିଗାଡ଼ି ଦେଇଛନ୍ତି - ତାହା ନୁହେଁ, ସାଥିରେ ତାଙ୍କର ସହଧର୍ମିଣୀ ମଧ, ସଂଜୟର ମାଆ ।

ସେଦିନ ସେମାନଙ୍କ ଆଖିରେ ଦିନ ରାତି ନିଦ ନ ଥିଲା - କେମିତି ପୁଅକୁ ପାଠ ପଢ଼ାଇ ବଡ଼ ମଣିଷ ପରି ମଣିଷଟିଏ କରି ଗଢ଼ି ତୋଳିବେ । କେତେବେଳେ କେତେବେଳେ ଧାର କରଜ କରି ଟଙ୍କା ପଠାଇଛନ୍ତି - ଯେମିତି ପୁଅର କିଛି ଅସୁବିଧା ନ ହୁଏ । ହେଲେ ଆଜି ସେମାନଙ୍କ ଆଖିରେ ନିଦ ନାହିଁ - ପୁଅ ଆଜି ସେମାନଙ୍କଠାରୁ ଦୂରେଇ ଯାଇଛି, ଆଜି ପୁଅ ଆଉ ସେମାନଙ୍କର ହୋଇ ରହିନାହିଁ । ସଂଜୟ ପାଖରେ ସମୟ ନାହିଁ, - ସେମାନଙ୍କର ଭଲମନ୍ଦ ବୁଢ଼ାକାଳେ ବୁଝିବା ପାଇଁ । ଆଉ କାହାକୁ ବିଶ୍ୱାସ କରିବ ଏ ମଣିଷ । ନିଜ ଜନ୍ମିତ ସନ୍ତାନର ଏଭଳି ପରିବର୍ତ୍ତନ ଘଟିବ ସେମାନେ କେବେ ଭାବି ନଥିଲେ । ସେମାନଙ୍କ ଆଖିରେ ଆଖିଏ ଲୁହର ବନ୍ୟା । ହୃଦୟରେ ଅସରନ୍ତି କୋହ ।

ମୋର ସ୍ତ୍ରୀ ସୁଷମା - ସଂଜୟକୁ ପୁଅ କରିଥିଲା । ପୁତ୍ରହୀନା ମାତା ପୁଅଟିଏ ପାଇଥିଲା । ଝିଅମାନେ ପାଇଥିଲେ ଭାଇଟିଏ । ହେଲେ ସେ ଆମକୁ ବି ଭୁଲି ଯାଇଛି । ଯିଏ ନିଜର ମାଆ ବାପାଙ୍କୁ ଭୁଲି ଯାଇ ପାରେ । ସେମାନଙ୍କର ହୃଦୟର ଅସରନ୍ତି ସ୍ନେହକୁ ପାଶୋରି ଯିଏ ପାଦରେ ଦଳି ଦେଇ ଯାଇପାରେ, ସେ କେମିତି ବା ସେମାନଙ୍କ ସ୍ନେହକୁ ସମ୍ମାନ ଦେବ ?

କେତେଥର ମୋତେ ଲୁଚାଇ କରି ଟଙ୍କା ଦେଇଛି ସେ । ସୁରେଶ ବାବୁଙ୍କ ଠାରୁ ସେ ଟଙ୍କା କେବେ ଫେରି ପାଇବାର ଆଶା ରଖି ନାହିଁ ।

ସୁଷମା ଦେଖିଲେ ସୁରେଶ ଭାଇନାଙ୍କ ଚାହା ଥଣ୍ଡା ହୋଇଗଲାଣି । ମୁଁ କହିଲି

- ଆରେ ଚାହା ପିଇ ନିଅ । ଭାବିଲେ କିଛି ମିଳିବ ନାହିଁ । ପୁଣି ସୁରେଶ ବାବୁଙ୍କର ଆଖି ଢଳେଇ ଆସିଲା, ଛାତିରେ ଛାତିଏ କୋହ ।

ମୁଁ କହିଲି, କିଏ କାହାର, ସବୁ ଏ ମିଛ ମାୟା ଛଳନା ।

ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି ପରା - ତୁମ୍ଭେ କେଉଁଥି ପାଇଁ ଚିନ୍ତା କରୁଛ ? କ'ଣ ନେଇ ଆସିଥିଲ ଯେ, ତାହା ତୁମ୍ଭର ହଜି ଯାଇଛି ? ଯାହା ଘଟି ଯାଇଛି - ତାହା ଘଟିବାର ଥିଲା । ଯାହା ଘଟିବ ତାହା ବି ଘଟିବାର ଅଛି ।'

ଭଗବାନ ଶଙ୍କର କହିଛନ୍ତି - କା ତବ କାନ୍ତା, କସ୍ତେ ପୁତ୍ର - ସଂସାର ମାୟା ଅତୀବ ବିଚିତ୍ର ।

କିଏ ପିତା, କିଏ ପୁତ୍ର, କିଏ ସ୍ତ୍ରୀ - ଏ ସଂସାରରେ କେହି କାହାର ନୁହଁନ୍ତି ।

ପୁଣି ସୁରେଶ ବାବୁ - ହାଉଁ ହାଉଁ ହୋଇ କାନ୍ଦି ଉଠିଲେ । ତାଙ୍କର ପୁଞ୍ଜିଭୂତ କୋହ ଯେମିତି ଛାତି ଥରାଇ ବାହାରି ଆସୁଛି ।

ମୁଁ ଉଠି ସୁରେଶ ବାବୁଙ୍କୁ କୋଳେଇ ନେଇ କହିଲି - ସୁରେଶ ଆମେ ପିଲା ଦିନେ ଏଇଠି କେତେ ଖେଳିଛୁ । କେତେ ସୁଖ ଦୁଃଖ, ହସ କାନ୍ଦ ବାଣ୍ଟି ନେଇଛୁ । ସେତେବେଳେ ଆମର ନା ଥିଲା ସ୍ତ୍ରୀ,ନା ପୁତ୍ର କନ୍ୟା ।

ଆଜିବି ଜୀବନର ସାୟାହ୍ନରେ ଆମେ ଦୁହେଁ ବାଣ୍ଟିନେବୁ ସେହି ହସ, ସେହି କାନ୍ଦକୁ - ବୁଝିଲ । ଦିହେଁ ଏକାଠି କହି ଉଠିଲେ, ତେବେ କାଲିଠୁ ଆମର ମର୍ଣ୍ଣିଂ ୱାକ୍ ଷ୍ଟାର୍ଟ ।

ହୋ ହୋ ହୋଇ ହସି ଉଠିଲେ ଦୁଇବନ୍ଧୁ । ବାକି ଜୀବନ କଟାଇ ଦେବା ପାଇଁ ନୂତନ ମନ୍ତ୍ର - ''ଛାତିଏ କୋହକୁ ବୁକୁଭରା ହସରେ ପରିଣତ କରିବା''

ସୁଷମା ଚାହିଁ ରହିଥିଲେ ଦୁଇବନ୍ଧୁଙ୍କୁ ।



# ଆତ୍ମରକ୍ଷା

ସମୁଦୁଣୀ ! ଆମାର ସବୁଦୁଣୀ କୋଥାୟ ? ଡାକି ଡାକି ଘର ଭିତରକୁ ପଶିଆସିଲେ ଜଣେ ଭଦ୍ରଲୋକ । ଧୋତି ଓ ପଞ୍ଜାବୀ ପରିହିତ । ନିଶ ହଳକ ମୁହଁରେ ଗାମ୍ଭୀର୍ଯ୍ୟ ଭରି ଦେଇଛି । ଘର ଭିତରେ ବନ୍ଧୁବାନ୍ଧବ, ଝିଅ ଝଗଡ଼ି ଭର୍ତ୍ତି ହୋଇଛନ୍ତି । ସମସ୍ତେ ଠରାଠାରି ହେଲେ, ଏଇ ମୀନାକ୍ଷୀର ଶ୍ୱଶୁର ହେବେ ନିଶ୍ଚୟ କଲିକତାର ବିରାଟ ଷ୍ଟିଲ୍ ବ୍ୟବସାୟୀ, ସୁମନ ଦାଶଗୁପ୍ତା ସମସ୍ତେ ଆଡ଼େଇ ହେଇଗଲେ । ଝିଅ ବାହାଘରର ଯାହା ଝିଞ୍ଜଟ । ବର ଆସି ଦାଣ୍ଡରେ ବସିଲେଣି । ବାଟ କଢ଼େଇ ଘର ଭିତରକୁ ନେଉଥାନ୍ତି ସରୋଜ ବାବୁ, ନୂଆ ସମୁଦୀଙ୍କୁ । ଅଞ୍ଜଳୀ ଦେବୀ ବନ୍ଦାଣ ଥାଳୀ ସଜାଡୁଛନ୍ତି ଭାବି ଜାମାତାଙ୍କୁ ବନ୍ଦେଇବାକୁ ଯିବେ । ବାଟ ବରଣୀ କରି ନେଇ ଆସିବେ ।

'ସମୁଦୁଣୀ' ଡାକରେ କାନ ଦୁଇଟି ସଜାଗ ହୋଇ ଉଠିଲା । କାହାର ଏ ସ୍ୱର ? ଭାରି ଚିହ୍ନା ଚିହ୍ନା ମନେ ହେଲା ଅଞ୍ଜଳିର । ସିଧା ସଳଖ ଅନେଇବା ତ ସମ୍ଭବ ନୁହେଁ, ନୂଆ ବନ୍ଧୁ ହେବାକୁ ଯାଉଛନ୍ତି, ପୁଣି ସମୁଦୀ ।

ମୁଁ ସୁମନ ଦାଶଗୁପ୍ତ । ବରର ବାପା । ନମସ୍କାର ସମୁଦୁଣୀ । ପ୍ରତି ନମସ୍କାର ଜଣାଇଲେ ଅଞ୍ଜଳୀ ଦେବୀ । ଏଇ ମଉକାରେ ସମୁଦୀର ମୁହଁକୁ ଅନାଇବାର ସୁଯୋଗଟିକୁ ସେ କରଛଡ଼ା ହେବାକୁ ଦେଲେ ନାହିଁ ।

ଆରେ ! ଇଏତ ଆମ ଗାଁର ସୁମନ୍ତ ଦାଶ । ରୀତା ମର୍ଡ଼ର କେଶର ଆସାମୀ । ଇଏ କ'ଣ ମୋର ସମୁଦୀ ହେବାକୁ ଯାଉଛନ୍ତି । ଏଠାରେ ସିଏ ସ୍ୱନାମଧନ୍ୟ ବ୍ୟବସାୟୀ ସୁମନ ଦାଶଗୁପ୍ତ । ଆଶ୍ଚର୍ଯ୍ୟ ହୋଇ ଅନେଇ ରହିଲେ ଅଞ୍ଜଳୀ ଦେବୀ । ନୂଆ ସମୁଦୀର ମୁହଁକୁ ସେମିତି ଅନେଇ ରହିଛନ୍ତି । ଆଖିରେ ତାଙ୍କର ପଲକ ପଡୁନାହିଁ ।

ସରୋଜବାବୁ ଅଞ୍ଜଳିର ବାହୁ ଧରିହଲେଇ ଦେଇ କହିଲେ, ଆରେ, ଇଏ ପରା ନୂଆ ସମୁଦୀ ସୁମନ ବାବୁ । ଏମିତି ଆଁଟା କରି ଅନେଇଛ କ'ଣ ? ମୁଁ ବାହାରେ ଟିକେ ଦେଖୁଛି । ତୁମ ସମୁଦୀକୁ ସମ୍ଭାଳ, ଟିକିଏ ଜୋକ୍ କରି ସରୋଜବାବୁ ବାହାରିଗଲେ ।

ଅଞ୍ଜଳି, ମୁଁ ଜାଣେ ତୁମେ ମୋତେ ଠିକ୍ ଚିହ୍ନି ପାରିଛ । ମୁଁ ସେଇ ସୁମନ୍ତ । ଭାଗ୍ୟଚକ୍ରରେ ମୁଁ ତୁମର ଆଜି ସମୁଦୀ ହେବାକୁ ଯାଉଛି । ବର୍ତ୍ତମାନ ମୋର ପରିଚୟ ସମସ୍ତଙ୍କ ପାଖରେ ଗୁପ୍ତ ରହିବା ଦରକାର । ସବୁକଥା ପରେ ହେବା, କହି ସେ ମଧ ବାହାରକୁ ଚାଲିଗଲେ । ଅଞ୍ଜଳି ଦେବୀଙ୍କ ପାଟିରୁ ଉଁ କି ଚୁଁ କିଛି ସ୍ୱର ବାହାରିଲା ନାହିଁ ।

କାହାକୁ କ'ଣ କହିବେ ସେ ବୁଝି ପାରିଲେ ନାହିଁ । ନ ଯଯୌ ନ ତସ୍ଥୌ ଅବସ୍ଥାରେ ଛିଡ଼ା ହୋଇ ସୁମନ୍ତର ଯିବା ବାଟକୁ ସେ ଅନେଇ ରହିଥିଲେ ।

ବରଯାତ୍ରୀମାନଙ୍କୁ ପାଛୋଟି ଆଣିବା ପାଇଁ ଝିଅମାନେ ଚନ୍ଦନ, ଫୁଲ, ଅଗୁରୁ ଧରି ଛିଡ଼ା ହୋଇଛନ୍ତି । ସୋରଗୋଳରେ କେହି କାହାରି କଥା ଶୁଣିବା କଷ୍ଟ । ଝିଅ ଗାଧୁଆ ହେବ ମଙ୍ଗୁଳା ପାଣିରେ । ଅଞ୍ଜଳି ଯେମିତି କାଠ ପାଲଟି ଯାଇଛନ୍ତି ।

ପୁତୁରା ବୋହୂ ସୁମି ବର ବରଣ ପାଇଁ ଥାଳିଟି ଆଣି ଧରାଇ ଦେଲା ଖୁଡ଼ୀଙ୍କ ହାତରେ । କାନ୍ଦରେ ଫାଟି ପଡ଼ିଲେ ଅଞ୍ଜଳି ଦେବୀ । ଏ ବେଳରେ କାହାକୁ କହିବେ, କିଏ ଶୁଣିବ ତାଙ୍କ କଥା । ଝିଅର କପାଳରେ କ'ଣ ଏଇୟା ଲେଖା ଥିଲା । ଜଣେ ଖୁନୀ ଫେରାର ଆସାମୀ ଘରକୁ ସେ ବୋହୂ ହୋଇ ଯିବ । କିପରି ବା ପ୍ରକାଶ କରିବେ ସେ ଏତେ ବଡ଼ କଥାଟା । ମଙ୍ଗୁଳା ଝିଅ ମୀନାର କ'ଣ ହେବ ? ତାଙ୍କ ପାଟି ଖନି ମାରିଗଲା । ସେ କିଛି କହିବାର ସାହାସ କରିପାରିଲେ ନାହିଁ ।

ସମସ୍ତେ ଆସି ବ୍ୟସ୍ତ କରୁଛନ୍ତି, ଶୀଘ୍ର ଚାଲ ! ବର କେତେବେଳୁ ଦାଣ୍ଡରେ ବସି ରହିଛି । ବାଜା, ବାଣ, ରୋଷଣୀରେ ଚାରିଆଡ଼େ ଝଲମଲ ଦେଖାଯାଉଛି । ଝିଅ ବୋହୂ ମାନେ ଛାତ ଉପରେ ବସି ବର ଓ ବରଯାତ୍ରୀଙ୍କୁ ଦେଖିବାରେ ଆନନ୍ଦ ଉପଭୋଗ କରୁଛନ୍ତି ।

ଏକ ପ୍ରକାର ସମସ୍ତଙ୍କର ଠେଲାପେଲାରେ ଅଞ୍ଜଳି ଦେବୀ ଚାଲିଲେ ବରକୁ ବନ୍ଦାଇବାକୁ । ଭଗବାନ ହିଁ କେବଳ ଭରସା ।

× × ×

ଭାଗ୍ୟକୁ ଆଦରିନେଲେ ଅଞ୍ଜଳି ଦେବୀ । ନିଜ ଗାଁର ସନାତନ ମାଷ୍ଟ୍ରେଙ୍କ ଏକମାତ୍ର ପୁଅ ସୁମନ୍ତ, ଅଞ୍ଜଳିର ସହପାଠୀ । ସନାତନ ମାଷ୍ଟ୍ରେଙ୍କୁ ଗାଁର ସମସ୍ତେ ଦେବତା ପରି ମାନନ୍ତି । ଗାଁ ଜମିଦାର ରାୟବାବୁଙ୍କ ଘରକୁ ସବୁଦିନ ମାଷ୍ଟ୍ରେ ଯାଆନ୍ତି ପଢ଼ାଇବାକୁ । ଭାରି ଭଲ ତାଙ୍କର ଜ୍ଞାନ । କେବଳ ଜ୍ଞାନ ନୁହେଁ, ଗୁଣ ବି ସେମିତି । ତାଙ୍କର ଏକମାତ୍ର ପୁଅ ଏଇ ସୁମନ୍ତ । କ୍ଲାସରେ ସବୁଠାରୁ ଭଲ ପଢ଼େ । ସୁମନ୍ତର ପ୍ରିୟ ସାଙ୍ଗ ଜଗଦାନନ୍ଦ ରାୟ ଜମିଦାରଙ୍କ ପୁତ୍ର । ମାତ୍ର ଜଗଦାନନ୍ଦର ପାଠରେ ମନ ନଥାଏ । ସନାତନ ସାର୍ ଏହି ଅଭିଯୋଗ ଜମିଦାରଙ୍କ ପାଖରେ କରନ୍ତି । ଅଧିକାଂଶ ଦିନ ସ୍କୁଲ ଯାଏନା ସେ । ମିଛକୁ ଖାଲି ବହିପତ୍ର ଧରି ବେଳେ ବେଳେ ଆବିର୍ଭାବ ହୋଇଥାଏ

ଶ୍ରେଣୀରେ । ସନାତନ ମାଷ୍ଟ୍ରେ ଯେତେ ବୁଝେଇଲେ ବି ସେ କିଛି ବୁଝେନା । ଏ କାନରେ ଶୁଣି ସେ କାନ ଦେଇ ବାହାର କରିଦିଏ । ଭାରି ଧୂର୍ତ୍ତ । ଯେବେ ସେ କ୍ଲାସ ଆସେ, ତାର ସାଙ୍ଗ ମାନଙ୍କ ସହିତ ମିଶି ପିଲାମାନଙ୍କୁ ବହୁତ ହଇରାଣ କରେ । ଝିଅମାନଙ୍କୁ ଭାରି ଚିଡ଼ାଏ । ଅଧାକ୍ଲାସରୁ ବାହାରି ଚାଲିଯାଏ । କେହି ତାକୁ କିଛି କହି ପାରନ୍ତି ନାହିଁ । ଓଲଟି ଡରି ମରି ରହନ୍ତି, ଜମିଦାର ଘରର ପିଲା ବୋଲି ।

ଥରେ ସ୍କୁଲରେ ଏଭଳି ଏକ ଘଟଣା ଘଟିବ, କେହି ଜାଣି ନଥିଲେ । ହଠାତ୍ ଜଗଦାନନ୍ଦର ବାପା ରାୟ ମହାଶୟ ଆସି ଗୋଟିଏ ମୋଟା ବେତରେ ପିଟି ପିଟି ବେଦମ୍ କରି ପକାଇଲେ ତାକୁ । ବହୁ କଷ୍ଟରେ ସନାତନ ସାର୍ ଜମିଦାରଙ୍କୁ ଶାନ୍ତ କରାଇଲେ । ଅବଶ୍ୟ ସବୁ ପିଲାମାନେ ମନେ ମନେ ଭାରି ଖୁସି ହେଉଥିଲେ । ତାକୁ ଏମିତି ଦରକାର ଥିଲା । କିନ୍ତୁ ବେତ ମାଡ଼ରେ ତାର ଅବସ୍ଥା ଅତି ଦୟନୀୟ ହୋଇ ଯାଇଥିଲା । ଯନ୍ତ୍ରଣା ଓ ଅପମାନରେ ଜର୍ଜ୍ଜରିତ ହୋଇ ସେଦିନ ଘରକୁ ଫେରିଲା ଜଗଦାନନ୍ଦ । ସେଇଦିନଠୁ ତାର ସ୍କୁଲ ଆସିବା ବନ୍ଦ ହେଲା ନାହିଁ । ଯାହା ପାଠ ଦିଆଯାଏ, ସୁମନ୍ତଠାରୁ ବୁଝି ଠିକ୍ ଠାକ୍ କରିଦିଏ । ଜଗଦାନନ୍ଦର ବ୍ୟବହାରରେ ସମସ୍ତେ ଆଶ୍ୱସ୍ତ ହୁଅନ୍ତି । କଥାରେ କହନ୍ତି 'ମାଡ଼କୁ ଯେ ବ୍ରହ୍ମା ଡରେ '' ।

ମ୍ୟାଟ୍ରିକ୍ ଫାଇନାଲ୍ ବର୍ଷ । ଇତି ମଧ୍ୟରେ ସୁମନ୍ତ ଓ ଜଗଦାନନ୍ଦ ମଧ୍ୟରେ ବନ୍ଧୁତ୍ୱ ବଢ଼ି ଯାଇଥାଏ । ପାଠପଢ଼ାରେ ସୁମନ୍ତ ସାହାଯ୍ୟ କରେ ଜଗଦାନନ୍ଦଙ୍କୁ । ସମସ୍ତ ନୋଟ ଖାତା ତାକୁ ଅବାଧରେ ଦେଇଦିଏ ସୁମନ୍ତ । ଆମେ ଝିଅ ପିଲା, ମାତ୍ର ପାଞ୍ଚ ଜଣ କ୍ଲାସରେ । ଆମର ସଂଖ୍ୟା ମଧ୍ୟ ନ୍ୟୁନ । ପୁଅମାନେ ଯାହା କହିଲେ ବି ଆମକୁ ସହି ଯିବାକୁ ପଡ଼େ । ଏ ବର୍ଷ ଆମର ଆଉ ଜଣେ ସଂଖ୍ୟା ବଢ଼ିଛି । ଆମ ଗାଁକୁ ଜଣେ ନୂଆ ଡାକ୍ତର ବାବୁ ଅଳ୍ପଦିନ ହେଲା ଆସିଛନ୍ତି ଟ୍ରାନ୍ସଫର ହୋଇ, ସହରରୁ । ତାଙ୍କରି ଝିଅ ରୀତା । ରୀତା ସୁନ୍ଦରୀ ନ ହେଲେ ବି ବେଶ୍ ଆଧୁନିକା । ଫ୍ରି ଏଣ୍ଡ ଫେୟାର । ଚଳଚଞ୍ଚଳ ଝରଣାଟିଏ । ସବୁରି ସାଥେ ମିଶିବାରେ ତାର ବାଧା ନାହିଁ । ନିଃସଙ୍କୋଚରେ ହାତ ବଢ଼ାଇ ସମସ୍ତଙ୍କ ବନ୍ଧୁତ୍ୱ ଆହ୍ୱାନ କରେ । ଆମ ଗାଉଁଲି ଝିଅମାନଙ୍କ ପରି ଡରଭୟ ତାକୁ ଯେମିତି ଛୁଇଁ ନାହିଁ । ମାଷ୍ଟ୍ରେଙ୍କ ସହିତ ପରାମର୍ଶ କରିବା ଓ ଭଲ ସାଙ୍ଗ ମାନଙ୍କ ଠାରୁ ନୋଟ୍ ଖାତା ନେଇ ପଢ଼ିବା ଇତ୍ୟାଦିରେ ତାର ତିଳେ ସଂକୋଚ ନଥାଏ । ସୁମନ୍ତ ଭଲ ପଢ଼େ ବୋଲି ତାର ନୋଟ୍ ଖାତା ସେ ବି କେତେ ଥର ନେଇ ଯାଇଛି ଓ ଫେରାଇ ଦେଇଛି ।

ପରୀକ୍ଷା ପାଇଁ ସମସ୍ତେ ବ୍ୟସ୍ତ ରହନ୍ତି ପାଠ ପଢ଼ାରେ । ସ୍କୁଲ ବି ପରୀକ୍ଷାର ଦୁଇମାସ ପୂର୍ବରୁ ଛୁଟି ପଡ଼ି ଯାଇଥିଲା । ଆମର ତଳ କ୍ଲାସ୍ ପିଲାଏ ଆମକୁ ଫେୟାରଓ୍ୱେଲ୍ ଦେଲେ । ଏଇ ସ୍କୁଲରୁ ଆମେ ଯେ ସବୁଦିନ ପାଇଁ ଛାଡ଼ି ଚାଲିଯିବୁ

ଭାବି ବହୁତ ମନଖରାପ ହୋଇଥିଲା ସେଦିନ । ଫେୟାରୱେଲ୍ ଦିନ ଆମେ ସମସ୍ତେ କାନ୍ଦି ପକାଇଲୁ ।

ପରୀକ୍ଷା ସୁରୁଖୁରୁରେ ସରିଲା ।

ଯେବେ ରେଜଲ୍ଟ ବାହାରିଲା, ସେଦିନ ସ୍କୁଲରେ ସମସ୍ତେ ଏକାଠି ହୋଇଥିଲୁ । ଜଗଦାନନ୍ଦ ବି ପାଶ୍ କରି ଯାଇଥିଲା ।

ସୁମନ୍ତ ଆମ ସର୍କଲରେ ଫାଷ୍ଟ୍ ହୋଇଥିଲା । ସ୍କଲରସିପ୍ ନିଶ୍ଚିତ ପାଇବ । ରୀତା ଫାଷ୍ଟ ଡିଭିଜନ୍‌ରେ ପାଶ୍ କରିଥିଲା । ଯାହା ହେଉ ଆମ କ୍ଲାସରେ ସମସ୍ତେ ପାଶ୍ କରି ଯାଇଥିଲେ । ସେଦିନ ସନାତନ ସାରଙ୍କର ଆନନ୍ଦ କହିଲେ ନ ସରେ । ପରସ୍ପରକୁ ଅଭିନନ୍ଦନ ଜଣାଇ ଆମେ ଘରକୁ ଫେରିଲୁ ।

କଲେଜରେ ପଢ଼ିବାକୁ ବହୁତ ଇଚ୍ଛା ହେଉଥାଏ । କିନ୍ତୁ ବାପାଙ୍କୁ ତ ମୁହଁ ଖୋଲି କହିବାର ଉପାୟ ନାହିଁ । ତାଛଡ଼ା ଗାଁର ଆଖ ପାଖରେ ବି କଲେଜ ନାହିଁ । ବାହାରକୁ ଯାଇ ପଢ଼ିବାର ଏକବାରେ ଅସମ୍ଭବ । ଯାହା ବାପା କରିବେ ଭାବି ଚୁପ୍ ରହିଲି ।

ଶୁଣିଲି କେତେକ ସାଙ୍ଗ ଫର୍ମ ଆଣି ପକେଇଲେଣି । କଲେଜରେ ଏଡ଼୍‌ମିଶନ୍ ନେବେ । ମୋର ପାଠରେ ଡୋରୀ ବନ୍ଧା ହେଲା । କଲେଜରେ ପଢ଼ିବା ସ୍ୱପ୍ନରେ ମୋର ପୂର୍ଣ୍ଣଚ୍ଛେଦ ପଡ଼ିଲା । କିଛିଦିନ ପରେ ଶୁଣିଲି ରୀତା ବାଲେଶ୍ୱରରେ ପଢୁଛି ।

ଜଗଦାନନ୍ଦ ଓ ସୁମନ୍ତ ବି ବାଲେଶ୍ୱରରେ ଏଡ୍‌ମିଶନ୍ ନେଇଛନ୍ତି । ସୁମନ୍ତ ସ୍କଲରସିପ୍ ପାଇଁ ଯୋଗ୍ୟ ବିବେଚିତ ହୋଇଛି । ସୁମନ୍ତ ପାଇଁ ମନେ ମନେ ଗର୍ବ ଅନୁଭବ କଲି ।

ଇତି ମଧ୍ୟରେ ଦୁଇ ବର୍ଷ ବିତି ଯାଇଛି । ମୋ ସହିତ ଯେଉଁ ସାଙ୍ଗମାନେ ପଢୁଥିଲେ ସୀମା ଓ ଅନୀତା ବିଭା ହୋଇଗଲେଣି । ମୋର ବି ପ୍ରସ୍ତାବ ପଡ଼ିଥାଏ କେତେ ଜାଗାରେ । କେବେ କେବେ ପର୍ବପର୍ବାଣିରେ ସାଙ୍ଗ ସାଥି ସହିତ ଭେଟାଭେଟି ହୁଏ । ସାମୟିକ ସାକ୍ଷାତ୍ ଓ କଥାବାର୍ତ୍ତା ହୋଇଥାଉ । ଏବର୍ଷ ଦୁର୍ଗାପୂଜା ଛୁଟିରେ ସୁମନ୍ତ ଘରକୁ ଆସିଛି ବୋଲି ଶୁଣିଲି ଗୀତା ପାଖରୁ । ତା ସହିତ ବହୁତ ଦିନରୁ ସାକ୍ଷାତ ହୋଇନି । ସୁମନ୍ତ ନିଶ୍ଚେ ସନାତନ ମାଷ୍ଟ୍ରେଙ୍କ ନାଁ ରଖିବ, ହଠାତ୍ ମୋ ମୁହଁରୁ ବାହାରିଗଲା । ଗୀତାକୁ ପଚାରିଥିଲି ତୋ ସଙ୍ଗେ ଦେଖା ହୋଇଥିଲା ? ଗୀତା କହିଲା - 'ହଁ ଦେଖା ହୋଇଥିଲା, ଚେହେରା ଏକଦମ୍ ବଦଳି ଯାଇଛି । ସୁମନ୍ତ ଭାଇ ମୋତେ ଦେଖି ସମସ୍ତଙ୍କ କଥା ପଚାରୁଥିଲେ । ତୋ କଥା ବି ପଚାରୁଥିଲେ । ତୁ କୁଆଡ଼େ ତାଙ୍କୁ ବହୁତ ଭଲ । ଆମ ସନାତନ ଜେଠାଙ୍କ ପୁଅ, ମୋ ସହିତ ପ୍ରାୟ ଦେଖା ହୁଏ ।'

ଗୀତା ଘର ତାଙ୍କର କୁଟୁମ୍ବ । ଗୀତା ମୁହଁରୁ ସେଦିନ ସୁମନ୍ତ କଥା ଶୁଣି ମୁଁ ଲାଜରେ ସଢ଼ିଗଲି । 'ଧେତ୍‌ତେରିକା, ତୋର ଯୋଉଁ କଥା, ସେ କାହିଁକି ମୋ ବିଷୟରେ କଥା ହେବେ ମ ? ଗୀତା ତା ଆଖି ଛୁଇଁ କହିଲା, ସତରେ ଅଞ୍ଜଳି ମୁଁ ଜମାରୁ ମିଛ କହୁନି ।

ହେଉ, ହେଉ ଥାଉ ସେକଥା । ମୁଁ ବାଆଁରେଇ ଯିବାକୁ ଚେଷ୍ଟା କଲି । କିନ୍ତୁ ମୋ ମନର ସୂକ୍ଷ୍ମ ତନ୍ତୀରେ ଏକ ଝଙ୍କାର ସୃଷ୍ଟି ହୋଇଥିଲା । 'ଅଞ୍ଜଳି ଭାରି ଭଲ' ସୁମନ୍ତର ଏହି ଉକ୍ତିଟି ସୁମନ୍ତକୁ ଦେଖିବା ପାଇଁ ମନରେ ପ୍ରବଳ ଆକାଂକ୍ଷା ଜାତ କରାଇଥିଲା । ସୁଯୋଗକୁ ଅପେକ୍ଷା କରିଥିଲା ଅଞ୍ଜଳି ।

ସବୁବର୍ଷ ଜମିଦାରଙ୍କ ଘରୁ ଦଶହରା ଦିନ ନିମନ୍ତ୍ରଣ ଆସେ । ଦୁର୍ଗାପୂଜୋତ୍ସବ ଓ ଦେବୀ ଦର୍ଶନ କରିବାକୁ ଆଖପାଖ ଗାଁର ଲୋକେ ଯାଆନ୍ତି । ଜଗଦାନନ୍ଦ ବି ତାର ବନ୍ଧୁମାନଙ୍କୁ ନିମନ୍ତ୍ରଣ କରିଛି । ସମସ୍ତେ ଦେବୀ ଦର୍ଶନ କରି ପ୍ରସାଦ ସେବନ କରନ୍ତି ।

ଦେବୀ ମଣ୍ଡପରୁ ଏକ ପାର୍ଶ୍ୱରେ ଭଜନ ସମାରୋହ ଚାଲିଛି । ବଡ଼ ବଡ଼ ଆର୍ଟିଷ୍ଟ୍ ମାନେ ଆସିଚନ୍ତି ଭଜନ ପରିବେଷଣ ପାଇଁ । ସ୍ତ୍ରୀ ପିଲା, ଛୁଆ - ବୁଢ଼ା ହଜାର ହଜାର ସଂଖ୍ୟାରେ ରୁଣ୍ଡ ହୋଇଛନ୍ତି । ଦୋକାନ ମାନଙ୍କରେ ଭିଡ଼ ଲାଗିଥାଏ । ସେମାନଙ୍କର ବି ଏଇଟା ଏକ ରୋଜଗାରର ମଉକା । ପ୍ରଚୁର କିଣାବିକା ହୁଏ । ଜଳଖିଆ ଦୋକାନ ଠାରୁ ଆରମ୍ଭ କରି ପାନ ବିଡ଼ି ଦୋକାନ, ଲୁଗା ଦୋକାନ ଏମିତିକି ଶହ ଶହ ଦୋକାନୀ । ବିରାଟ ଯାତ୍ରା ଲାଗିଥାଏ । ମୁଁ ବି ଗୀତା ସହିତ' ଯାଇଥିଲି ଦେବୀ ଦର୍ଶନ ପାଇଁ, ବାପାଙ୍କର ପରମିଶନ୍ ନେଇ । କିନ୍ତୁ ବାପାଙ୍କ ନିର୍ଦ୍ଦେଶ ସଅଳ ଫେରି ଆସିବୁ । ଜଗଦାନନ୍ଦ ସହିତ ସାକ୍ଷାତ ହେଲା । ତାର ସେପାରେଟ୍ ଗେଷ୍ଟ ଚର୍ଚ୍ଚା ଚାଲିଥାଏ । ସେଠାରେ ଅଳ୍ପ ସମୟ ରହି ଆମେ ଚାଲି ଆସିଲୁ । ବାଟରେ ଆସୁ ଆସୁ ଭେଟିଲୁ ରୀତାକୁ । ରୀତା ବି ସାଇକେଲ୍‌ରୁ ଓହ୍ଲାଇ ଆମ ସଙ୍ଗେ କଥା ହେଲା । ସେମାନଙ୍କର୍ କୁଆଡ଼େ ସ୍ପେଶାଲ୍ ପ୍ରୋଗ୍ରାମ ଅଛି ଜଗଦାନନ୍ଦ ଓ କଲେଜ ସାଙ୍ଗମାନଙ୍କ ସହିତ । ଇଆଡ଼େ ସନ୍ଧ୍ୟା ହୋଇ ଆସିଲାଣି, ତରତର ହୋଇ ଆମେ ଦୁହେଁ ଚାଲି ଆସିଲୁ । ମୋର ମନେ ମନେ ଇଚ୍ଛା ହେଉଥାଏ ସୁମନ୍ତ ସହିତ ଟିକିଏ ସାକ୍ଷାତ ହୁଅନ୍ତା କି ? ମାତ୍ର ତାହା ଆଉ ସମ୍ଭବ ହେଲା ନାହିଁ ।

ତା ପରଦିନ ସକାଳ । ପ୍ରଭାତ ସୂର୍ଯ୍ୟର କିରଣ ଛଟା ଝର୍କା ଫାଙ୍କ ଦେଇ ମୋ ମୁହଁରେ ବିଞ୍ଛି ହୋଇ ପଡ଼ିଥାଏ । ହଠାତ୍ ସ୍ୱପ୍ନରୁ ଉଠିଲା ପରି ଆଖି ମଳି ମଳି ଉଠିଲି ମୁଁ । ଭାରି ମଧୁର ମଧୁରେ ଲାଗୁଥାଏ । ସାମାନ୍ୟ ହସି ଦେଇ କଳ ପାଖରେ ଯାଇ ମୁହଁ ଧୋଇଲି । ଏତିକି ବେଳେ ଲାଉ ଚାଳି ଉପରେ ବସି ଡାମରା କାଉଟିଏ କା - କା ରାବ ଛାଡ଼ିଥାଏ । ଭାରି ନିବ୍‌କିଟିଆ ଲାଗିଲା ତାର ସ୍ୱରଟି । ଭଙ୍ଗା ଇଟା ଉଠାଇ ତାକୁ

ଘଉଡ଼ାଇ ଦେଲି । ଲାଉ ଚାଳିଆରୁ ଯାଇ ଘର ଚାଳ ଉପରେ ବସି ସେମିତି ସ୍ୱର ଲମ୍ବେଇଥାଏ । କ'ଣ ଅଘଟଣ ଘଟିଛି ନା କ'ଣ ଆଶଙ୍କାରେ ଭରିଗଲା ମନଟି । କେଡ଼େ ସୁନ୍ଦର ସକାଳଟି ମୋର ନଷ୍ଟ କରିଦେଲା ଏଇ କାଉଟି । ସାତ ପାଞ୍ଚ କେତେ ଭାବନା ମନକୁ ଆସିଲା ମୋର ।

ବାପା ଗାଁ ଦାଣ୍ଡରୁ ଫେରିଲେ । ମନଟି ତାଙ୍କର ବିଷର୍ଣ୍ଣ ଦିଶୁଥାଏ । ମାଆଙ୍କୁ କହିଲେ, କି କାଳ ହେଲା, ଝିଅଟିକୁ ଜୀବନରୁ ମାରି ଦେଲେ । ମାଆ ଆଁ କରି ବାପାଙ୍କୁ ଅନେଇଥାନ୍ତି । ଏଇ ଆମ ଡାକ୍ତର ବାବୁଙ୍କ ଝିଅ ମ । କାଲି ରାତିରେ ତାକୁ କିଏ ମର୍ଡ଼ର କରି ରାସ୍ତାରେ ପକାଇ ଦେଇ ଯାଇଛି । ପ୍ରବଳ ଲୋକ ଭିଡ଼ ।

ରୀତାକୁ କିଏ ମର୍ଡ଼ର କଲା । ମୁଁ ଶିହରୀ ଉଠିଲି । ଜାଣିଛ, ଏଇ ସନାତନ ମାଷ୍ଟ୍ରେ ପୁଅ ମ ସୁମନ୍ତ, ତା ନାଁଟି ଶୁଣାଯାଉଛି । ସେ କୁଆଡ଼େ ଯା ପଛରେ ଅଛି । ତାକୁ ପୋଲିସ୍ ଖୋଜୁଛି । ମାତ୍ର ସେ ଫେରାର୍ ।

ଦୁଲ୍‌କରି ବସି ପଡ଼ିଲି ମୁଁ । ସୁମନ୍ତ କ'ଣ ଏମିତି ଜଘନ୍ୟ କାର୍ଯ୍ୟ କରି ପାରିଲା ?

ସୁମନ୍ତ ଯେବେ ଫେରାର୍, ଲୋକଙ୍କର ସନ୍ଦେହ କ୍ରମେ ଘନୀଭୂତ ହେଲା । ସନାତନ ମାଷ୍ଟ୍ରେଙ୍କୁ ପୋଲିସ୍ ଧରି ନେଇଗଲେ ଥାନାକୁ । ସନାତନ ମାଷ୍ଟ୍ରେ ଯେତେ ସଫେଇ ଦେଲେ, ତାଙ୍କୁ କିଏ ଆଉ ଶୁଣୁଛି । ତାଙ୍କର ପୁଅ କେବେ ଏ କାମ କରି ପାରିବନି । ତାକୁ ଫସେଇବା ପାଇଁ ଏ ଏକ ଚକ୍ରାନ୍ତ । ରୀତା ଯଦି ବଞ୍ଚିଥାନ୍ତା ତେବେ ସିନା ପ୍ରକୃତ କଥା ଜଣା ପଡ଼ିଥାନ୍ତା । ସୁମନ୍ତର ଅନୁପସ୍ଥିତି ସେଦିନ ତାକୁ ଦୋଷୀ କରିଦେଲା । ''ତିନି ତୁଣ୍ଡରେ ଛେଳି କୁକୁର ପରି'' ସମସ୍ତେ ଏକ ସ୍ୱରରେ ସୁମନ୍ତକୁ ଦାୟୀ କରିଥିଲେ । ଏବେ ବି ସୁମନ୍ତ ଫେରାର ଆସାମୀ । 'ରୀତା ମର୍ଡ଼ର କେଶ୍‌ର' ପ୍ରଥମ ଓ ଶେଷ ଆସାମୀ ।

ଇତି ମଧ୍ୟରେ କୋଡ଼ିଏଟି ବର୍ଷ ବିତି ଯାଇଛି । ଆଖି ସାମ୍ନାରେ ସୁମନ୍ତଙ୍କୁ ଦେଖି ଅଞ୍ଜଳି ଭୟଭୀତା ହୋଇ ପଡ଼ିଛି । ଗୋଟିଏ ଖୁନୀ ଆସାମୀ ସହିତ ସେ ସମ୍ପର୍କ ସ୍ଥାପନ କରିବାକୁ ଯାଉଛି । ସେ ଆଗକୁ ଆଉ କିଛି ଭାବି ପାରିଲା ନାହିଁ । ବାହାଘର ସମାପ୍ତ ହେଲା । ଝିଅ ବିଦା କରି ଅଞ୍ଜଳି ମୂର୍ଚ୍ଛା ପ୍ରାୟ ହୋଇ ପଡ଼ିଲେ । ସମସ୍ତେ ଭାବିଲେ ଗୋଟିଏ ବୋଲି ଝିଅ, ମା'ର ଅତି ଗେଲ ବସର । ସେଥିପାଇଁ ଦୁଃଖରେ ଭାଙ୍ଗି ପଡ଼ିଛନ୍ତି ସେ । ସରୋଜବାବୁ ପ୍ରବୋଧନା ଦେଲେ । ଝିଅ ଶାଶୁଘର କୋଉଁ ଦୂର ବାଟ ଯେ, କିଛି ଦିନ ପରେ ତ ସେ ଆସିବ, ଏମିତି ଅଧୈର୍ଯ୍ୟ ହେଲେ କ'ଣ ଚଳିବ । ବନ୍ଧୁ ବାନ୍ଧବ ଧୀରେ ଧୀରେ ସମସ୍ତେ ବିଦା ହେଲେ ।

କଲିକତା ନଗରୀ । ଚଟକଳରେ ସବ୍‌ମେନେଜର ସରୋଜବାବୁ । ଯଦିବା ଘର ଚନ୍ଦନେଶ୍ୱର, କିନ୍ତୁ ଏଠାରେ ସେ ସେଟେଲ୍ କରିଛନ୍ତି ନିଜକୁ । ଆଉ ବୋଧ

ହୁଏ ଚନ୍ଦନେଶ୍ୱର ଫେରିବେ ନାହିଁ । ସେଥିପାଇଁ ଝିଅକୁ ବି ଯୋଗ୍ୟ ପାତ୍ର ଦେଖି ଦେଇଛନ୍ତି ।

ସୁମନ ଦାଶଗୁପ୍ତ ଭଦ୍ରଲୋକଟି ଭାରି ଭଲ ଲୋକ ଓ ଜଣେ ଧନୀ ବ୍ୟବସାୟୀ । ପରୋପକାରୀ ଲୋକଟିଏ । ଝିଅଟି ସୁଖରେ ରହିବ ।

ଅଷ୍ଟମଙ୍ଗଳା ଦିନ ବନ୍ଧୁ ନିମନ୍ତ୍ରଣ ହୁଏ । ସୁମନ୍ତ ଓରଫ୍ ସୁମନ୍ ଦାଶଗୁପ୍ତ ଆସିଛନ୍ତି ନୂଆ ସମୁଦୀ ଘରକୁ ନିମନ୍ତ୍ରଣ ଜଣାଇବାକୁ ।

ସମୁଦୀ ସରୋଜବାବୁ ଅଫିସ୍ ଯାଇଥାନ୍ତି । ଅଞ୍ଜଳି ଘରେ ଏକୁଟିଆ ଓ ଚାକର ପିଲାଟି । ସୁମନ୍ତର ବହୁ ଦିନରୁ ତଣ୍ଟିରେ ଅଟକି ଥିବା କଥାଟି ଅଞ୍ଜଳି ସହିତ ହେବାର ସୁଯୋଗ ମିଳିଛି । ଅଞ୍ଜଳି ଯଥାମାନ୍ୟ ଜଣାଇଲେ ସୁମନ୍ତକୁ ।

ପ୍ରଥମେ କଥା ଆରମ୍ଭ କଲେ ସୁମନ୍ତ ।

ଅଞ୍ଜଳି, ତୁମେ କ'ଣ ଭାବି ପାରୁଛ ମୁଁ ମଣିଷ ମାରିଛି ? ତୁମେ କ'ଣ ବିଶ୍ୱାସ କର ମୁଁ ରୀତାର ହତ୍ୟାକାରୀ ?

ତେବେ ତୁମେ କାହିଁକି ଫେରାର ହୋଇଗଲ ? କାହିଁକି ସମସ୍ତଙ୍କ ମନରେ ସନ୍ଦେହ ଭରିଦେଲ ?

ହଁ ଆଜି ମୁଁ ଭାବୁଛି, ତୁମେ ହିଁ ମୋର ଏକାନ୍ତ ନିଜର ଲୋକ । ଯେଉଁ କଥା ମୁଁ ଏ ପର୍ଯ୍ୟନ୍ତ କାହାକୁ କହି ପାରିନି, ତୁମକୁ କିନ୍ତୁ କହିବି । ବହୁଦିନର ମନର ବୋଝକୁ ହାଲୁକା କରିବି । ଭଗବାନ ମୋତେ ସେ ସୁଯୋଗ ଆଜି ଦେଇଛନ୍ତି । ଅଞ୍ଜଳି ଚୁପ୍ ହୋଇ ଅନେଇ ରହିଲେ ସୁମନ୍ତର ମୁହଁକୁ ।

''ଦଶହରା ଉତ୍ସବ । ଚାରିଆଡ଼େ ପୂଜା ଓ ମେଳାର ଆସର ଚାଲିଥାଏ । ମୋତେ ବି ନିମନ୍ତ୍ରଣ ହୋଇଥିଲା ଜଗଦାନନ୍ଦ ଘରୁ । କିନ୍ତୁ ଯିବାକୁ ଇଚ୍ଛା ଥିଲେ ବି ହଠାତ୍ ବାପାଙ୍କର ଉଦର ପୀଡ଼ା ଆରମ୍ଭ ହେଲା । ବିକଳରେ ମୁଁ ଧାଇଁଲି ଡାକ୍ତରଙ୍କ ପାଖକୁ । ରାତି ନଅଟା ସୁଦ୍ଧା ମୁଁ ବାପାଙ୍କ ପାଖରେ ବସିଥାଏ । ମାଆ ବି ବସି କାନ୍ଦୁଥାନ୍ତି । ବାପା ମଝିରେ ମଝିରେ ଯନ୍ତ୍ରଣାରେ ଅଧୀର ହୋଇ ପଡ଼ିଥାନ୍ତି । ଧୀରେ ଧୀରେ ଯନ୍ତ୍ରଣା ତାଙ୍କର ଉପଶମ ହେଲା । ଔଷଧ ବୋଧେ କାମ କଲା । ଆମେ ମାଆ ପୁଅ ଟିକିଏ ଆଶ୍ୱସ୍ତ ହେଲୁ ।''

''ରାତି ହେବା ଦେଖି ମୋର ଆଉ ଦେବୀ ଦର୍ଶନରେ ମନ ବଳିଲା ନାହିଁ । ମାଆ ଚୂଡ଼ା ଗୁଡ଼ ଟିକେ ବାଢ଼ି ଦେଲେ । ଖାଇସାରି ଶୋଇବାକୁ ଯାଉଛି, ଏତିକିବେଳେ ଜଗଦାନନ୍ଦର ଚାକର ମକରା ଧାଇଁ ଧାଇଁ ଆସି ପହଞ୍ଚିଲା ସାଇକେଲଟିଏ ଧରି । ବାବୁ ପଠାଇଲେ, ଆପଣଙ୍କୁ ଯିବା ପାଇଁ ।''

ବିପଦ ଯେତେବେଳେ ଆସେ, ଚାରିଆଡ଼ୁ ଆସେ ।

ସେଦିନର ଲୋମ ହର୍ଷଣକାରୀ ଦୃଶ୍ୟ ଏବେ ବି ମୋ ମନରୁ ଯାଇନି । କି

ନିର୍ମମ ଭାବରେ ହତ୍ୟା କରାଯାଇଛି । ଆଖି ପୋଛିଲେ ସୁମନ୍ତ ।

ମକରା ସହିତ ବାହାରି ଆସିଲି, ମା, ବାପାଙ୍କର ଅନୁମତି ନେଇ । ରାସ୍ତାରେ ଗଛର ଛାଇ ଛାଇକା ଅନ୍ଧାର । ସାଇକେଲ ଘଣ୍ଟି ବଜାଇ ଚାଲିଛି ମକରା ।

ହଠାତ୍ କାହାର ଏକ କ୍ଷୀଣ କାତର ସ୍ୱର କର୍ଣ୍ଣ ଗୋଚର ହେଲା । ମକରାକୁ ସାଇକେଲ ରଖିବାକୁ କହି ମୁଁ ଓହ୍ଲାଇ ପଡ଼ିଲି, ଗୋଟିଏ ସ୍ତ୍ରୀ ଲୋକର ସ୍ୱର । ଟର୍ଚ୍ଚ ପକାଇ ଦେଖିଲି ସେ ଆଉ କେହି ନୁହେଁ, ରୀତା ।

ରୀତାକୁ ଏପରି ଅବସ୍ଥାରେ ଦେଖି ମୁଁ ଚମକି ପଡ଼ିଲି । ରୀତାର ମୁଣ୍ଡ ଉପରକୁ ଟର୍ଚ୍ଚ ଆଲୁଅଟି ପକାଇ ଏଭଳି କିଏ କଲା କହି ତା ପାଖରେ ବସି ପଡ଼ିଲି । ପଛକୁ ଫେରି ମକରାକୁ ଅନେଇଲା ବେଳକୁ ସେ ନାହିଁ । ଫେରି ମକରାକୁ ଅନେଇଲା ବେଳକୁ ସେ ନାହିଁ । ହେ ପ୍ରଭୁ ! ମୁଁ କ'ଣ କରିବି ? ରୀତା ଈଶାରାରେ ମୋତେ ପାଖକୁ ଡାକିଲା । ମୁଁ ସେମିତି ଟର୍ଚ୍ଚ ଆଲୁଅ ପକାଇ ତା ମୁହଁ ପାଖକୁ ଗଲି । 'ଜଗଦାନନ୍ଦ' କହି ମୋତେ ସେଠାରୁ ଚାଲିଯିବାକୁ ଅନୁରୋଧ କଲା । ମୁଁ ଦେଖିଲି ଅତ୍ୟନ୍ତ ରକ୍ତସ୍ରାବ ଯୋଗୁଁ ତାର ଚେତା ବୁଡ଼ିଯାଇଛି । ଡାକ୍ତର ପାଖକୁ ନେବି, ଏମିତି ଭାବୁଛି, ହଠାତ୍ ପୋଲିସ୍ ଗାଡ଼ିର ସାଇରନ୍ ଶୁଭିଲା ଦୂରରୁ । ମୁଁ ଦେଖିଲି ଏ ଜଗଦାନନ୍ଦର ପ୍ଲାନ, ମୋତେ ଫସେଇବା ପାଇଁ ଚକ୍ରାନ୍ତ । ମୁଁ ଆଉ କାଳ ବିଳମ୍ବ ନ କରି ସେଇ ରାତିରେ ଅଗନା ଅଗନି ଜଙ୍ଗଲ ପାରି ହୋଇ ଜଳେଶ୍ୱରରେ ଆସି ଟ୍ରେନ୍ ଧରିଲି । ଛୋଟ ପିଲାଙ୍କ ପରି ମୁହଁରେ ହାତ ଚାପି କାନ୍ଦିବାକୁ ଲାଗିଲେ ସୁମନ୍ତ ।

ଅଞ୍ଜଳି ସୁମନ୍ତର ହାତ ଦୁଇଟିକୁ ନିଜର ହାତରେ ଧରି ଲୁହ ପୋଛି ଦେଲେ । ଗଲା କଥା ଭାବି ଆଉ ଲାଭ ନାହିଁ । ସେଦିନରୁ ମୁଁ ବି ସନ୍ଦେହର କୁହେଳିକା ମଧ୍ୟରେ ବୁଡ଼ି ରହିଥିଲି ସୁମନ୍ତ । ମୋରଅନୁମାନ ମିଥ୍ୟା ଯାଇନି । ସନାତନ ମାଷ୍ଟ୍ରେ କାନ୍ଦି କାନ୍ଦି ଚିତ୍କାର କରି ଗାଁ ଦାଣ୍ଡରେ କହିଥିଲେ - ''ମୋ ସୁମନ୍ତ କାହାକୁ ତୁ ବୋଲି କହି ଜାଣେନି, ସେ କେବେ ମର୍ଡ଼ର କରିନି । ସେ ଦିର୍ଦ୍ଦୋଷ ।'' କିଏ ବିଶ୍ୱାସ କରୁକି ନ କରୁ ମୁଁ କିନ୍ତୁ ନୀରବରେ ମାନି ନେଇଥିଲି ସୁମନ୍ତ ।

ଜଗଦାନନ୍ଦର ମିଥ୍ୟା ପ୍ରବଞ୍ଚନାର ସମ୍ମୁଖୀନ ହେବା ମୋ ପାଇଁ ଦୁଃସାଧ୍ୟ ଥିଲା । ଆତ୍ମରକ୍ଷା ପାଇଁ ମୋତେ ଫେରାର ହେବାକୁ ପଡ଼ିଲା ।

ସୁମନ୍ତ ଓ ଅଞ୍ଜଳିର ମୁଣ୍ଡରୁ ଯେପରି ଏକ ମସ୍ତବଡ଼ ବୋଝ ଓହ୍ଲାଇ ଗଲା । ଦୁହିଁଙ୍କ ମୁହଁରେ ସେଦିନ କ୍ଷଣିକ ପାଇଁ ବାଲ୍ୟ ଚପଳତା ଫୁଟି ଉଠିଥିଲା । ଏ ଗୋପନୀୟତା ସାରାଜୀବନ ସେମାନଙ୍କ ପାଖରେ ଗୋପନୀୟ ହୋଇ ରହିବ, ଏଇ ସମୁଦୀ - ସମୁଦୁଣୀର ମଧୁର ସମ୍ପର୍କ ଭିତରେ, ମନେ ମନେ ସଂକଳ୍ପ ନେଇଥିଲେ ଦୁହେଁ ।



# ମୋ ଠିକଣା

ଜନ୍ମଦିନ ପାଳନ ହେଉଛି ।

ଅକ୍ଟୋବର ଦୁଇ, ଜାତିର ପିତା ମହାତ୍ମାଗାନ୍ଧୀଙ୍କର ଜନ୍ମଦିନ । ସାଇ ସାଇଠାରୁ ଆରମ୍ଭ କରି ରାଜଧାନୀର ଉପକଣ୍ଠ ମୁଖରିତ ହୋଇ ଉଠିଛି । ସଭା ସମିତି, ସେମିନାରରେ ଯୋଗ ଦେବା ପାଇଁ ପିଲାଠାରୁ ଆରମ୍ଭ କରି ବୁଢ଼ା ପର୍ଯ୍ୟନ୍ତ, ମୂର୍ଖ, ପଣ୍ଡିତ ବୁଦ୍ଧିଜୀବି ତତ୍ପର ହୋଇ ଉଠିଛନ୍ତି । ଆଲୋକ ସଜ୍ଜା ତୋରଣରେ ଝଲମଲ କରି ଉଠୁଛି ସର୍ବତ୍ର । ମାଇକ୍‌ରେ ବୈଷ୍ଣବ ଜନେତ ତ୍ରନ୍ମ କହିଯେ......., ବନ୍ଦେମାତରମ୍ ଧ୍ୱନୀ ଏକ ମହାମହନୀୟ ଭାବନା ଜାଗ୍ରତ କରୁଛି ।

ସୂଚ଼ନାଭବନ କେନ୍ଦ୍ର ସାମ୍ନା ଦେଇ ଯାଉ ଯାଉ ସାଇକେଲ୍‌ରୁ ଓହ୍ଲାଇ ପଡ଼ିଲା ଅନାମ । ଦଶ / ବାର ବର୍ଷର ବାଳକ ଅନାମ ସାଇକେଲ୍‌ରେ ଚ଼ାବି ପକାଇ ଚ଼ାବିଟିକୁ ପକେଟ୍‌ରେ ରଖିଲା ଓ ଆଗେଇ ଚ଼ାଲିଲା ସୂଚ଼ନା କେନ୍ଦ୍ର ଭିତରକୁ । ମାଆ ଦେଇଥିବା ପଚ଼ାଶ ଟଙ୍କାଟି ତା' ପକେଟ୍‌ରେ ସେମିତି ଥୁଆ ହୋଇଛି । ମାଆଙ୍କର ବରାଦ କଥା ସେ ପୁରାପୁରି ଭୁଲିଗଲା । ମାଆ ବରାଦ ଦେଇଥିଲେ ସ୍ୱସ୍ତି ପ୍ଲାଜାରୁ ସ୍ୟାଣ୍ଡ୍ୟୁଚ୍ ଆଣିବା ପାଇଁ, ବାବୁ ଖାଇକରି ଅଫିସ୍ ଯିବେ । ମନ୍ତ୍ରୀ ଦପ୍ତରର ମନ୍ତ୍ରୀଙ୍କର ସ୍ପେଶାଲ୍ ସେକ୍ରେଟାରୀ ବିଜୟ କେତନ ବାବୁ । ଅନାମ ହେତୁ ପାଇବା ଦିନଠାରୁ ତାଙ୍କରି ଘରେ ଅଛି, ବାବୁ ଓ ମାଆ ପାଖରେ ।

ଆରେ ଅନାମ ତୁ ଏଠି କ'ଣ କରୁଛୁ ? ଅନାମ ବୁଲି ପଡ଼ିଲା, କିଏ ତା' ନାଁ ଧରି ଡାକିଲା ବୋଲି ଜାଣିବାକୁ । 'ସ୍ୱରାଜ' ତା ପଢ଼ାସାଥୀ, ହସି, ହସି ତା' ପାଖକୁ ଲାଗି ଆସିଲା । ତା'ର ସିନା ଦୁଇବର୍ଷ ହେବ, ପାଠରେ ଡୋରି ବନ୍ଧା ହୋଇଛି, ହେଲେ ସ୍ୱରାଜ ୟୁନିଟ୍ - ୨ ହାଇସ୍କୁଲ ଛାତ୍ର । ସ୍ୱରାଜକୁ ସ୍କାଉଟ୍ ଡେସ୍‌ରେ ଦେଖି ଭାରି ଖୁସି ଲାଗିଲା ତାକୁ । ସ୍ୱରାଜ ରାଜ୍ୟପାଳଙ୍କ ହାତରୁ ସ୍କାଉଟ୍‌ରେ ଭଲ କାମ କରିଥିବାରୁ ପ୍ରାଇଜ୍ ଗ୍ରହଣ କରିବ । ଅନାମ ବଡ଼ ଉତ୍ସାହିତ ହୋଇ ପଡ଼ିଲା, ତା'ର ଇଚ୍ଛା ହେଲା ସ୍ୱରାଜକୁ ପ୍ରାଇଜ୍ ନେବାର ଦେଖିବାକୁ । ଅନ୍ୟମାନଙ୍କ ପରି ସେ ବି

ଯାଇ ଗୋଟିଏ ଚେୟାରରେ ବସି ପଡ଼ିଲା ।

ସଭା ମଞ୍ଚ ଉପରକୁ ରାଜ୍ୟପାଳ ଆଗମନ କଲେ । ସୁସଜ୍ଜିତ ମଞ୍ଚ ଆଲୋକିତ ହୋଇ ଉଠିଲା । ରାଜ୍ୟପାଳ, ସଂସ୍କୃତି ମନ୍ତ୍ରୀ ଓ ଅନ୍ୟାନ୍ୟ ବକ୍ତାମାନେ ମଧ ତାଙ୍କ ସହିତ ମଞ୍ଚ ଉପରକୁ ଆସିଲେ । ସେମାନେ ଆସିବା ସଂଗେ ସଂଗେ ଜାତୀୟ ସଂଗୀତ ବାଜି ଉଠିଲା । ସମସ୍ତେ ଛିଡ଼ା ହୋଇ ପଡ଼ିଲେ ଯେ ଯାହାର ସ୍ଥାନରେ । ତା'ପରେ ରାଜ୍ୟପାଳ ତାଙ୍କ କର କମଳରେ ପ୍ରଦୀପ ପ୍ରଜ୍ୱଳନ କରି ଉତ୍ସବକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କଲେ । ସଭାକାର୍ଯ୍ୟ ଆରମ୍ଭ ହେଲା । ରାଜ୍ୟପାଳ ତାଙ୍କର ଅଭିଭାଷଣ ପ୍ରଦାନ କରି କହିଲେ, 'ମହାମାନବ ମହାତ୍ମାଗାନ୍ଧୀଙ୍କର ଦେଶ ଓ ଜାତି ପ୍ରତି ଅମୂଲ୍ୟ ଅବଦାନ ସ୍ୱାଧୀନତା ଆମ୍ଭେ ହାସଲ କରିଛୁ । ସ୍ୱାଧୀନତା ପ୍ରତ୍ୟେକଙ୍କର ଜନ୍ମଗତ ଅଧିକାର । ସେଇ ଅଧିକାରକୁ ସେ ଆମ ହାତରେ ଟେକି ଦେଇଛନ୍ତି, ତା'ର ସୁରକ୍ଷା ଆମର ପରମ କର୍ତ୍ତବ୍ୟ । ଏଥିପାଇଁ ଗାନ୍ଧିଜୀଙ୍କ ମାର୍ଗ ହିଁ ଆମକୁ ଉଚିତ୍ ମାର୍ଗ ପ୍ରଦର୍ଶନ କରିବ ।' 'ଗାନ୍ଧିଜୀ' ଜୟ ଜୟକାର ଧ୍ୱନି ସହିତ କରତାଳି ଧ୍ୱନିରେ ହଲ୍‌ଟି ପୁରି ଉଠୁଥାଏ । ସ୍ୱରାଜ ସହିତ ବହୁ ପିଲାମାନେ ତାଙ୍କର ପ୍ରଶଂସା ପତ୍ର ଓ ପ୍ରାଇଜ୍ ଗ୍ରହଣ କଲେ । 'ଅନାମ'ର ମୁହଁରେ ବି ଜୟ ଜୟକାର ଧ୍ୱନି ଓ ପ୍ରଖର ଔଜଲ୍ୟତା ଖେଳି ଯାଇଥାଏ । ଉତ୍ସବ ସମାପ୍ତ ପରେ ସମସ୍ତେ ଘରକୁ ଯିବା ପାଇଁ ତତ୍ପର ହୋଇ ପଡ଼ିଲେ । ଅନାମ ବି ବାହାରି ଆସିଲା, ତରତର ହୋଇ ଉଠିଲା ଘରକୁ ଯିବା ପାଇଁ ।

ବାହାରକୁ ଆସି ଦେଖେ ତ ବାହାରେ ଝିପି ଝିପି ବର୍ଷା ହୋଇ ଯାଇଛି । ଆକାଶରେ ଅଦିନିଆ ମେଘଖଣ୍ଡ ମାନ ମାଳ ମାଳ ହୋଇ ଘୁରି ବୁଲୁଛନ୍ତି । ଅନାମର ମେଘକୁ ଆଉ ଭ୍ରୁକ୍ଷେପ ନାହିଁ । ସେଇ ବର୍ଷାରେ ସେ ସାଇକେଲ୍ ଚଢ଼ି ଏକମୁହାଁ ହୋଇ ଦଉଡ଼ିଲା । ଏକେ ତ ମାଆଙ୍କ କଥାରେ ଆଜି ଖିଲାପ କରିଛି, ଦ୍ୱିତୀୟରେ ବହୁ ସମୟ ଅତିକ୍ରମ ହୋଇ ଯାଇଛି । ମୋଟାମୋଟି ସେ ଭୁଲ କରିଛି । ଆଜିର ଭୁଲ୍‌ରେ ତା'ର ପ୍ରାୟଶ୍ଚିତ ନାହିଁ । ତା'ର ଆଜି ତ୍ରାହି ନାହିଁ, ହେଉ ଦେଖାଯାଉ କ'ଣ ଘଟୁଛି, ସାତ ପାଞ୍ଚ ଭାବି ଭାବି ଡରି ଡରି ଘର ଭିତରକୁ ପଶିଲା ଅନାମ । ବର୍ଷାରେ ସାରା ଶରୀର ତା'ର ଭିଜି ଯାଇଥାଏ । ଜାମା ପ୍ୟାଣ୍ଟରୁ ପାଣି ବହି ଯାଉଥାଏ, ମୁଣ୍ଡ ଓଦା ସରସର ।

ଘର ଭିତରକୁ ପଶୁ ପଶୁ ମାଆ ଗର୍ଜନ କରି ଉଠିଲେ । ସେମିତି ଗୋଟିଏ ଜାଗାରେ ଛିଡ଼ା ହୋଇ ରହିଲା ଅନାମ । ଭୟରେ ବରଡ଼ା ପତ୍ର ପରି ଥରିବାକୁ ଲାଗିଲା ସେ' । ନିର୍ମମ ଭାବରେ କଷି ଦେଲେ ବିଧା ପରେ ବିଧା । ସେତିକିରେ ତାଙ୍କ ମନ ସନ୍ତୁଷ୍ଟ ହେଲା ନାହିଁ । କ୍ରୋଧରେ ଆଗପଛ କିଛି ଦେଖାଗଲା ନାହିଁ ଆଶା ଦେବୀଙ୍କୁ । ଗରମ ଲୁହା ପାତିଆଟିକୁ ଆଣି ଅନାମର ପିଠିରେ ଜାକି ଧରିଲେ ।

ଯନ୍ତ୍ରଣାରେ ଚିତ୍କାର କରି ଉଠିଲା ଅନାମ । ଭୂଇଁରେ ପଡ଼ିଯାଇ ଛଟପଟ ହେବାକୁ ଲାଗିଲା । ତାର ଚିତ୍କାରରେ ଟିକମ୍‌ର ନିଦ ଭାଙ୍ଗି ଗଲା, ସେ ବି କାନ୍ଦିବାକୁ ଲାଗିଲା । ତା'ର କାନ୍ଦଣା ଶୁଣି ଆଶାଦେବୀ ତା' ପାଖକୁ ଚାଲିଗଲେଣି । ମାତ୍ର ଯନ୍ତ୍ରଣାରେ କଷ୍ଟ ପାଉଥିବା ଅନାମ ପାଖରେ କେହି ନଥିଲେ । କାନ୍ଦୁଥିଲା ସେ ସେମିତି, ପୋଡ଼ା ଜାଗାଟିର ଯନ୍ତ୍ରଣାରେ ସେ ଅସ୍ଥିର ହୋଇ ପଡୁଥିଲା । କାନ୍ଦି କାନ୍ଦି ତା'ର ଚେତା ବୁଡ଼ିଗଲା ।

ଅନାମ ଆଖି ଖୋଲିଲା ବେଳକୁ ଦେଖିଲା ସେ ଶୋଇଛି, ସେଇ ଖଟିଆଟିରେ, ଯେଉଁଠି ସେ ସବୁଦିନ ଶୁଏ । ଲଣ୍ଠନଟି ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ, ତା' ପାଖକୁ ଲାଗି ଥାଳିଟିରେ ଦୁଇଖଣ୍ଡ ରୁଟି ସହିତ ଭଜା ଟିକିଏ ଓ ମଗ୍‌ଟିରେ ମଗେ ପାଣି । ଭାରି ଶୋଷ କରୁଥିଲା ତାକୁ । ବହୁ କଷ୍ଟରେ ଶେଯରେ ଉଠି ମଗ୍‌ରେ ଥିବା ପାଣିତକ ପିଇଦେଲା । ପୁଣି ଶୋଇପଡ଼ିଲା ଯାଇ ଖଟିଆଟିରେ । ଦୁର୍ବଳତାରେ ଆଖି ଦୁଇଟି ତା'ର ମୁଦି ହୋଇଗଲା । ଆକାଶପାତାଳ କେତେ କ'ଣ ଚିନ୍ତା ତା'ମନକୁ ଛୁଇଁ ଯାଉଥାଏ ।

ଆଜି ସକାଳେ ସେ ଯାଇଥିଲା ସୂଚନା ଭବନ । ତା' ଭିତରକୁ ପଶିଯାଇ ସେ ଭୁଲିଯାଇଥିଲା ସେ କିଏ ? ତା'ର ମନେ ହୋଇଥିଲା ସେ ସ୍ୱାଧୀନ ଭାରତର ସନ୍ତାନ, କିଛି ସମୟ ପାଇଁ ସ୍ୱଚିନ୍ତନରେ ବିତି ଯାଇଥିଲା ତା'ର କର୍ତ୍ତବ୍ୟର ପରିସୀମା । ସେ ଯେ ମାଆ - ବାବୁଘରର ଚାକର ଅନାମ, ତାହା ସମ୍ପୂର୍ଣ୍ଣ ବିସ୍ମରି ଯାଇଥିଲା । କେତେ ବାପା, ମା ଆସିଥିଲେ । ସେମାନଙ୍କ ପିଲାମାନଙ୍କୁ ନେଇ ବିଭିନ୍ନ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିବା ପାଇଁ । କେତେ ଖୁସି ଆନନ୍ଦରେ ସେମାନେ ଘୁରି ବୁଲୁଥିଲେ ତା' ଭିତରେ । ପ୍ରାଇଜ୍ ନେବା ସମୟରେ କରତାଳି ଧ୍ୱନିରେ ହଲ୍‌ଟି ପୁରି ଉଠୁଥିଲା । ସେ ବି ସେମାନଙ୍କ ଖୁସିରେ ନିଜକୁ ହଜାଇ ଦେଇଥିଲା । ଦୁଇ ଆଖିରେ ଢଳ ଢଳ ହୋଇ ଉଠିଲା ଲୁହ ସବୁ । ଗାମୁଛାରେ ଲୋତକ ପୋଛିଲା ଅନାମ । ମନରେ ତା'ର ପ୍ରଶ୍ନମାନ ଉଙ୍କି ମାରିଲା ସେ କିଏ ? କିଏ ତା'ର ବାପା ମାଆ ? ଏଇ ବାବୁ ମାଆ କ'ଣ ତା'ର ବାପା ମାଆ ନୁହନ୍ତି ? ଏମାନେ ଯଦି ତା'ର ବାପା ମାଆ ହୋଇଥା'ନ୍ତେ, ତେବେ କ'ଣ ଟିକମ୍ ଜନ୍ମ ହେବା ପରେ ପରେ ତା'ର ପାଠପଢ଼ା ବନ୍ଦ କରି ଦେଇଥାନ୍ତେ ? ଆଉ ଆଜି ଏଇ ସାମାନ୍ୟ ଭୁଲ ପାଇଁ ମା' କ'ଣ ଏତେ ବଡ଼ ଶାସ୍ତି ଦେଇଥାଆନ୍ତେ ? ନିଆଁଚେଙ୍କା ଲାଗିଥିବା ପିଠିଟାରେ ଏବେ ବି ଯନ୍ତ୍ରଣା କମି ନାହିଁ । ପୁନଶ୍ଚ ତା' ଆଖିରେ ଲୁହ ଭରିଗଲା । ଅନାମର ଅବୁଝା ମନକୁ ଶାନ୍ତ କରିବା ପାଇଁ କେହି ନାହାଁନ୍ତି ତା' ପାଖରେ । ଏକ ଅଜଣା ଆବେଗରେ ସେ ସମ୍ମୋହିତ ହୋଇ ବିଛଣାରୁ ଉଠି ଛିଡ଼ା ହେଲା ଓ ପାଦ ତା'ର

ପାଦେ ପାଦେ ଆଗେଇ ଚାଲିଲା ଆଗକୁ, ଆଗକୁ ତା'ର ଅସମହିତ ପ୍ରଶ୍ନର ଉତ୍ତର ଖୋଜିବା ପାଇଁ । ପଛରେ ତା'ର ରହିଗଲା କେତେ ସ୍ମୃତି, ହସ ଆଉ କାନ୍ଦର ।

ବାରବର୍ଷର ଅନାମ ନିଜର ଠିକଣା ଖୋଜି ଖୋଜି ଚାଲିଲା ଅନିର୍ଦ୍ଦିଷ୍ଟ ପଥରେ । ଆସି ପହଞ୍ଚିଲା ସେଇ ପୁରୁଣା ସ୍ଥାନରେ ଯେଉଁଠୁ ବାବୁ, ମାଆ ତାକୁ କୋଳେଇ ନେଇ ଯାଇଥିଲେ । ସେଇ ଭୁବନେଶ୍ୱର ରେଳଷ୍ଟେସନ୍, ସେଇ ଗଛମୂଳ । ସେ ଆଉ କିଛି ପିଲା ବୁଲି ବୁଲି ଭିକ ମାଗୁଥିଲେ ବାବୁ ମାଆମାନଙ୍କ ଠାରୁ । ଅନାମ ବି ଆଜି ଛଅ ବର୍ଷ ତଳେ ଯାହା ମିଳୁଥିଲା ଖାଇ ପିଇ ସେଇଠାରେ ଶୋଇ ପଡୁଥିଲା ଅନ୍ୟମାନଙ୍କ ପରି । ଛିଣ୍ଡା ମଇଳା ପ୍ୟାଣ୍ଟ ଓ ଗଞ୍ଜିଟିଏ ପିନ୍ଧିଥାଏ ସେ । ଗୋରା ତକ ତକ, ଭାରି ଡଉଲଡାଉଲ ଚେହେରାଟିର ଏଇ ପିଲାଟିକୁ ଦେଖି ସନ୍ତାନ ସୁଖରୁ ବଞ୍ଚିତ ଦମ୍ପତି ଦିହିଁଙ୍କ ହୃଦୟରେ ମମତାର ଧାରା ବୋହି ଯାଇଥିଲା । ଆଶା ଦେବୀଙ୍କର ଅନୁରୋଧରେ ବିଜୟ କେତନ ବାବୁ ସିଦ୍ଧାନ୍ତ ନେଲେ ଓ ଏହି ପାଞ୍ଚ ବର୍ଷର ଅନାଥ ପିଲାଟିକୁ ସାଉଁଟି ନେଇଥିଲେ ସେମାନେ । ସେମାନଙ୍କର ସ୍ନେହରେ ବି ତ୍ରୁଟି ନଥିଲା । ନିଜର ଜନ୍ମିତ ସନ୍ତାନ ପରି ସେମାନେ ତାକୁ ଘଡ଼ିଏ ନ ଦେଖିଲେ ରହି ପାରୁ ନଥିଲେ । ସେମାନଙ୍କ ତତ୍ତ୍ୱାବଧାନରେ ଅନାମର ନାମ ଲେଖା ହେଲା ସ୍କୁଲରେ । ଅନ୍ୟ ପିଲାଙ୍କ ପରି ସେ ବି ପାଠ ପଢ଼ିଲା ଓ କ୍ଲାସରେ ପ୍ରଥମ ହେଲା । ବିଜୟ କେତନ ଓ ଆଶା ଦେବୀଙ୍କର ବି ଆନନ୍ଦର ସୀମା ରହିଲା ନାହିଁ । ଅନାମକୁ ନେଇ ସ୍ୱାମୀ, ସ୍ତ୍ରୀ ଦିହେଁ ସନ୍ତାନର ସୁଖ ଅନୁଭବ କଲେ ଓ ସେମାନଙ୍କର ସୁଖର ପରିସୀମା ସୀମା ଲଙ୍ଘିଗଲା । ଅନାମକୁ ପାଇ ଦିନ ଗୁଡ଼ିକ ବେଶ୍ ଆନନ୍ଦରେ କଟିଲା । ଅନାମ ସପ୍ତମ ଶ୍ରେଣୀରେ ସବୁଠୁ ବେଶୀ ନମ୍ବର ରଖି ପାଶ୍ କଲା । ସେ ଦିନଟି ବହୁତ ଧୁମ୍‌ଧାମ୍‌ରେ କଟିଥିଲା ତାଙ୍କ ଘରେ । ଅନାମ ପାଇଁ ନୂଆ ସାର୍ଟ ପ୍ୟାଣ୍ଟ୍ କିଣା ହୋଇଥିଲା, ସାଇ ପଡ଼ିଶାରେ ମିଠା ବାଣ୍ଟିଥିଲେ ଆଶାଦେବୀ ତାଙ୍କ ପୁଅ ପ୍ରଥମ ହୋଇ ପାଶ୍ କରିଛି ବୋଲି । ମାତ୍ର ଏ ସୁଖ ଅନାଥ ପିଲା ଅନାମ ଭାଗ୍ୟରେ ଅଧିକ ଦିନ ରହିଲା ନାହିଁ । ଏଇ ଅବସରରେ ଜନ୍ମ ହେଲା ଟିକମ୍ । 'ଟିକମ୍' ପାଲଟି ଗଲା ଅନାମ୍ ପାଇଁ ଦୁଃଖର ପାହାଡ଼ । ଆଶାଦେବୀ ଓ ବିଜୟ କେତନଙ୍କର ସବୁ ସ୍ନେହ ସରାଗ ଅଜାଡ଼ି ହୋଇ ପଡ଼ିଲା ଟିକମ୍ ଉପରେ ଆଉ ଅନାମ ପୁଣି ଅନାଥ ହୋଇଗଲା । ସମସ୍ତ ସ୍ନେହରୁ ବଞ୍ଚିତ ହୋଇଗଲା ସେ । ଏପରିକି ପାଠ ପଢ଼ାରେ ବି ଡୋରି ବନ୍ଧା ହେଲା ତା'ର । ସେ ପାଲଟିଗଲା ଘରର ଚାକର ପିଲାଟିଏ । ବରକୋଳି ପରି ଟୋପା ଟୋପା ପାଣି ଖସି ପଡ଼ିଲା ଅନାମର ଦୁଇ ନୟନରୁ । ରାତ୍ରି ପାହି ଆସିଲାଣି । ସମସ୍ତେ ସଜାଗ ହୋଇ ଉଠିଲେଣି । ଦୂରରେ କୁକୁର କେତୋଟି କଳିଆ କରିବାରେ ବ୍ୟସ୍ତ ।

ଭୋର ଟ୍ରେନ୍ ସବୁ ପ୍ଲାଟଫର୍ମରେ ଗୋଟିଏ ପରେ ଗୋଟିଏ ଆସି ଛିଡ଼ା

ହେଲାଣି । ଯାତ୍ରୀଙ୍କର କୋଳାହଳ ବଢ଼ିଗଲାଣି । ତା' ସଙ୍ଗେ ସଙ୍ଗେ ଖବର କାଗଜ ବାଲା, ଚାହାବାଲାଙ୍କର ଚିତ୍କାର ବି କିଛି କମ୍ ନୁହେଁ । ଆଖି ମୁଦି ବସିଥିଲା ସେଇ ଗଛ ମୂଳରେ ଅନାମ । ସତେ କି ବୋଧିଦ୍ରୁମ ତଳେ ତପସ୍ୟାରତ ସ୍ୱୟଂ ବୁଦ୍ଧଦେବ ।

ବେଳ କେତେ ହେଲାଣି କେଜାଣି, ହଠାତ୍ ଆଖି ଖୋଲିଲା ଅନାମ । ଚାରିଆଡ଼କୁ ଅନାଇଲା ସାମ୍ନାରେ ପଡ଼ିଥିବା ଏକ ଖବର କାଗଜ ଉପରେ ତା'ର ନଜର ପଡ଼ିଲା । ଗାନ୍ଧି ଜୟନ୍ତୀ ଦିବସରେ ରାଜ୍ୟପାଳ ପୁରସ୍କୃତ କରୁଥିବା ଅବସରରେ ଫଟୋ ସାଙ୍ଗକୁ ତାଙ୍କର ଅଭିଭାଷଣ, ପ୍ରଥମ ପୃଷ୍ଠାରେ ଦେଖି ଖୁବ୍ ମନ ଦେଇ ପଢ଼ିବାକୁ ଲାଗିଲା ସେ । ''ସ୍ୱାଧୀନତା ଆମର ଜନ୍ମଗତ ଅଧିକାର'' ଉକ୍ତ ଶବ୍ଦ କେତୋଟି ତା'ର ମନ ଓ ହୃଦୟକୁ ଆଚ୍ଛାଦିତ କଲା ଓ ସେ ବିହ୍ୱଳିତ ହୋଇ ପଡ଼ିଲା । ସେ ବି ବଞ୍ଚିବ ସେଇ ଅଧିକାର ନେଇ ଓ ଖୋଜିବ ତା'ର ଠିକଣା । ବାରବର୍ଷର କିଶୋର ଅନାମ ହଠାତ୍ ବିଜ୍ଞାନୀ ହୋଇ ଉଠିଲା ।

ସେଇ ଅକ୍ଟୋବର ଦୁଇ । ଛାତ୍ରମାନେ ବେଶ୍ ଧୁମ୍‌ଧାମ୍‌ରେ ସଂସ୍କୃତି ବିଶ୍ୱବିଦ୍ୟାଳୟଟି ସଜାଇବାରେ ଲାଗିଛନ୍ତି । ନୀଳ, ନାଲି ଆଲୋକରେ ଚାରିଆଡ଼େ ଝଲମଲ କରୁଛି । ଶୁଭ ସନ୍ଧ୍ୟାରେ ମୁଖ୍ୟଅତିଥି ହୋଇ ଆସିଛନ୍ତି ଶିକ୍ଷା ବିଭାଗର ସଚିବ ବିଜୟକେତନ ବାବୁ । ଡଃ. ଅନାମ୍ ସାର୍‌ଙ୍କ ପୁସ୍ତକ ଉନ୍ମୋଚନ ଉତ୍ସବରେ । ମୁଖ୍ୟ ଅତିଥି ସଭାକାର୍ଯ୍ୟ ପ୍ରାରମ୍ଭରେ ମଞ୍ଚରେ ଡକ୍ଟର ଅନାମ ସାରଙ୍କୁ ମୁଖ୍ୟ ଭୂମିକାରେ ଅବତାରଣା କରି ପ୍ରଶଂସାରେ ଶତମୁଖର ହୋଇ ଉଠିଲେ । ଶେଷରେ ମୁଖ୍ୟ ଅତିଥି ତାଙ୍କ ଭାଷଣ ପୂର୍ବରୁ ଅନାମ୍ ସାର୍‌ଙ୍କ ଲିଖିତ କବିତା ପୁସ୍ତକ 'ମୋ ଠିକଣା' ଉଦ୍‌ଘାଟନ କରି ବହି ପଛରେ ଅନାମ ସାରଙ୍କ ପିଲାଦିନର ଫଟୋ ଓ ତାଙ୍କ ପରିଚିତିରେ ବିଜୟକେତନ ବାବୁ ନିଜ ନାମକୁ ଦେଖି ଚମକି ପଡ଼ିଲେ । ତାଙ୍କ ଆଖିରୁ ବହିଗଲା ଦୁଇଧାର ଅଶ୍ରୁ । ତାଙ୍କ କଣ୍ଠରୁଦ୍ଧ ହୋଇ ଆସିଲା । ସେ ବାଷ୍ପାକୁଳ କଣ୍ଠରେ କହିଲେ,. ପୁତ୍ର ଅନାମ ତା'ର ନିଜ ଠିକଣା ଖୋଜି ପାଇଛି ଓ ଅନାମକୁ କୁଣ୍ଢାଇ ଧରି ଅଜସ୍ର ଆଶୀର୍ବାଦ ଅଜାଡ଼ି ଦେଲେ ବିଜୟକେତନ ବାବୁ । ସ୍ୱାର୍ଥ ପ୍ରେମରେ ଅନ୍ଧ ହୋଇ ସେ ଯେଉଁ ଅବିଚାର କରିଛନ୍ତି, ସେଥିପାଇଁ ଅନୁତାପରେ ସେ ଜର୍ଜରିତ ହୋଇ ପଡ଼ିଥିଲେ । ତାଙ୍କ ଆଖି ଆଗରେ ଭାସି ଉଠୁଥିଲା ତୈଳଚିତ୍ର ପରି ବିଗତ ଦିନର ଏକ ସ୍ୱାର୍ଥାନ୍ଧ ପୁରୁଷାକାର, ବିଭତ୍ସ କଦାକାର ଚରିତ୍ର ଗୁଡ଼ିକ । ଆଉ ଡଃ. ଅନାମ ଅନାବିଳ ହସର ପ୍ଲାବନରେ ବିଜୟକେତନ ବାବୁଙ୍କର ସମସ୍ତ ଆବିଳତାକୁ ବିଧୌତ କରି ଅମ୍ଳାନ ବଦନରେ ଆଗେଇ ଆସୁଥିଲେ ତାଙ୍କ ଆଡ଼କୁ ।

# ସାଧୁବାବା

ଆମେ କ୍ରାଇମ ରୋକିବାକୁ ଆସିଛୁ, ଆମେ ଯଦି କ୍ରାଇମ୍ କରିବୁ, ଆମକୁ ଶାସ୍ତି ଦେବ କିଏ ? ଭଗବାନ ?

ଦ୍ୱିତୀୟ ଜଣକ ତାଳ ମିଶାଇ କହି ଉଠିଲେ, ଆରେ ଇଏ ତ ବାଡ଼ ହୋଇ କାକୁଡ଼ି ବାଡ଼ି ଧ୍ୱଂସ କରିବା କଥା, ଜଗୁଆଳୀ ଗପ ମନେ ଅଛି ତ ?

ତୃତୀୟ ଜଣକ ଆଖି ଡୋଳା ଆଗକୁ ବାହାର କରି ନାକପୁଡ଼ା ଫୁଲାଇ କହି ଉଠିଲେ, 'ଦେଖୁଛ, ଆଉ ବର୍ଷଟିଏ ରିଟାୟାର କରିବାକୁ ଅଛି, ମାତ୍ର ବୁଢ଼ାର ଟିକେଏ ବି ଡରଭୟ ନାହିଁ । ଶଳା କଣ ନା ବଡ଼ ଅଫିସର, ଅଫିସର୍ ନା ଡକାୟତଟା ଆମେ ସବୁ ତ କେରାଣ୍ଡି ଆଉ କ'ଣ ? ଆମେ ସବୁ ବୋକଚା ବୁହା ? ଖବରଦାର ମୋ ଦ୍ୱାରା ସେ କାମ ହୋଇ ପାରିବନି । ମୋର ବରଂ ଚାକିରୀ ଚାଲିଯାଉ, ଆମ ବଡ଼ ଅଫିସର ହେଲେ ବୋଲି କ'ଣ ଭଗବାନ ହୋଇଗଲେ ନା କ'ଣ ? ଏତେ ଜୋର୍‌ରେ ଚିଲ୍ଲଉ ଥାଆନ୍ତି ଯେ, କମ୍ପାର୍ଟମେଣ୍ଟ ଭିତରେ ସମସ୍ତେ ଚୁପ୍ ହୋଇ ଅନେଇଛନ୍ତି ତାଙ୍କରି ଆଡ଼କୁ ।

ଦ୍ୱିତୀୟ ଜଣକ ତାଙ୍କ ହାତକୁ ଚାପିଧରି କହିଲେ, ''ଆରେ ମହାନ୍ତି ବାବୁ ପାଟି ବନ୍ଦ କରନ୍ତୁ ନା, ଲୋକେ କ'ଣ ଭାବିବେ, ଆରେ ଟିକିଏ ଚୁପ୍ ପଡ଼ନ୍ତୁ ।

କାହିଁକି ? ମୁଁ କରଣ ପିଲାଟି, କାହାକୁ କ'ଣ ଡରିଛି, ହକ୍ କଥା କହିବି, ମୋ ମନକୁ ଯାହା ଆସିଲା ଶୁଣେଇ ଦେଲି ପଟ୍ଟନାୟକ ବାବୁ । ଉତ୍ତେଜନାରେ ଥରୁଥିଲେ ସେ ।

ହଁ ଯେ, ଆମେ ବି ତ ସେଇକଥା କହୁଛୁ, କିନ୍ତୁ ଆପଣ ଏତେ ଜୋର୍‌ରେ ଏମିତି ଇମୋସନାଲ୍ ହୋଇ ପଡୁଛନ୍ତି କାହିଁକି ? ବ୍ଲଡ୍ ପ୍ରେସର ବଢ଼ାଇବା ହିଁ ସାରହେବ ନୁହେଁ ଦାସ ବାବୁ ।

ଦାସ ବାବୁ କହିଲେ, ଠିକ୍ ଅଛି ମହାନ୍ତି ବାବୁ, ଆପଣଙ୍କର କ୍ରୋଧ ଆସିବା ସ୍ୱଭାବିକ, ମୋର ତ ଇଚ୍ଛା ହେଉଛି ନକ୍ସଲ ହୋଇଯିବାକୁ । ଆପଣଙ୍କ ସାଥିରେ

ଆମେ ଏକମତ, ବଡ଼ ଅଫିସର ହେଲେ ବୋଲି ଯାହା କହିବେ, ଆମେ କ'ଣ ସେଇଆ କରିବୁ। ଏଭଳି ଲୋଭୀ, ଦୁର୍ନୀତିଖୋର ଅଫିସର ଆମ ସମାଜର କ୍ୟାନ୍‌ସର୍ ସଦୃଶ । ଅଗାଣ୍ଡିଆ ରାଜା ପରି ଏମାନଙ୍କୁ ଫାଶୀ ଖୁଣ୍ଟରେ ଝୁଲେଇଦେବା ଦରକାର । ଦୁର୍ନୀତି କରିବାର ପୁଣି ଏକ ସୀମା ତ ଅଛି ?

ଆରେ ଅଗାଣ୍ଡିଆ, ରାଜା ଫାଶୀଖୁଣ୍ଟ ଏସବୁ ପୁଣି କ'ଣ କହି ଯାଉଛନ୍ତି ଆପଣ ।

ଆରେ ଜାଣିନ, ଆମର ବିଶିଷ୍ଟ ପ୍ରଖ୍ୟାତ ହାସ୍ୟରସ ଔପନ୍ୟାସିକ ଫତୁରାନନ୍ଦଙ୍କ 'ଅଗାଣ୍ଡିଆ ରାଜା, ପାଳବିଣ୍ଡା ମନ୍ତ୍ରୀଙ୍କ କାହାଣୀ । ମହାନ୍ତି ବାବୁ ଓ ପଟ୍ଟନାଏକ ବାବୁ, ଦାସ ବାବୁଙ୍କ ମୁହଁକୁ ବଲ ବଲ କରି ଅନେଇ ଥାଆନ୍ତି ।

ହେ ... ତେରିକା, ଆପଣ ମାନେ ଖାଲି ଗ୍ରନ୍ଥକୀଟ ସାଜି ଗୋଟିଏ ଗୋଟିଏ ତଳିଆ ଅଫିସର ବନି ଯାଇଛନ୍ତି ନୁହେଁ ? ଶୁଣ ମନ ଦେଇ ତେବେ ଶୁଣ -

''ଗୋଟିଏ ରାଜ୍ୟରେ ଜଣେ ଅତ୍ୟନ୍ତ ଦୁର୍ନୀତିଖୋର ଓ ଅବୁଝା ରାଜା ଥିଲେ । କାହାଣୀର ନାଆଁ 'ଅଗାଣ୍ଡିଆ ରାଜା ଓ ପାଳବିଣ୍ଡା ମନ୍ତ୍ରୀ' ରାଜା କିଛି ନ ବୁଝି ତାଙ୍କ କଟୁଆଳ, ସାଧବ ଓ ମନ୍ତ୍ରୀ ଯାହା ନିଷ୍ପତ୍ତି କରୁଥିଲେ, ତାହାହିଁ ମାନି ନେଉଥିଲେ । ଏପରିକି ନିଜ ରାଣୀ କଥା ବି ଶୁଣୁ ନଥିଲେ । ତାଙ୍କ ସିଦ୍ଧାନ୍ତରେ ରାଜ୍ୟ ତଥା ପ୍ରଜା ମାନଙ୍କର ପ୍ରଭୂତ କ୍ଷତି ଘଟୁଥିଲା । ଭୟରେ କେହି ପାଟି ଫିଟାନ୍ତି ନାହିଁ । ଦୁର୍ନୀତିର ପାହାଡ଼ ଉପରେ ବସି ରାଜା ଚ଼ଳେଇ ଥାଆନ୍ତି ଅନ୍ଧାରୀ ଶାସନ । ରାଜାଙ୍କର ଦୁର୍ନାମ ସର୍ବତ୍ର ରଟିଗଲା ।''

ଥରେ ରାଜ ସଭାରେ ଗୋଟିଏ ନିଶାପ ଚ଼ାଲିଥାଏ ଓ ରାଣୀ ବସି ଥାଆନ୍ତି ଦେଖିବା ପାଇଁ ରାଜାଙ୍କର ବିଚାର । ସେଦିନ ବିଚ଼ାର ଚ଼ାଲିଥାଏ, ''ଜଣେ ପ୍ରଜାଙ୍କର ଘରର ପକ୍କାକାନ୍ଥ ଭୁଷୁଡ଼ି ପଡ଼ି ଗୋଟିଏ ଚ଼ୋରର ମୃତ୍ୟୁ ଘଟିଛି, ଏଣୁ ସେ ଚ଼ୋରର ମୃତ୍ୟୁ ପାଇଁ କିଏ ଦାୟୀ?' ଏଥିପାଇଁ ରାଜ ପରିଷଦର ସମସ୍ତ ସଭ୍ୟମାନେ ଉପସ୍ଥିତ ହୋଇଥାଆନ୍ତି । କଟୁଆଳ ଓ ସାଧବଙ୍କ ମନ୍ତବ୍ୟ ପରେ ରାଜା ମନ୍ତ୍ରୀଙ୍କୁ ରାୟ ମାଗିଲେ ଓ ନିର୍ଦ୍ଦେଶ ଦେଲେ । ମନ୍ତ୍ରୀଙ୍କ ମୁହଁରୁ ପାଳବିଣ୍ଡା ବାହାର କରାଗଲା ଓ ବ୍ରହ୍ମା ବିଳିବିଳେଇଲେ ବେଦ ପରି ମନ୍ତ୍ରୀ କହି ଉଠିଲେ, ''ଚ଼ୋରର ମୃତ୍ୟୁ ପାଇଁ ଘରବାଲା ଦାୟୀ, ତାକୁ ମୃତ୍ୟୁଦଣ୍ଡ ଦିଆଯାଉ ।'' କାରଣ ସେ ଘର ତିଆରି ସମୟରେ ସଠିକ ଭାବେ ବାଲି ଓ ସିମେଣ୍ଟ ଦେଇ ନାହିଁ ।

ଘର ମାଲିକ ଡକରା ପାଇ ତତ୍‌କ୍ଷଣାତ୍ ହାଜିର ହୋଇ ନେହୁରା ହୋଇ କହିଲା, ''ମଣିମା !ମୋର କିଛି ଦୋଷ ନାହିଁ, ମୁଁ ସବୁ ଠିକ୍ ଠିକ୍ ଆଣି ଦେଇଥିଲି, ମିସ୍ତ୍ରୀ ଯିଏ କାମ କରୁଥିଲା, ସେ ଠିକ୍ ଭାଗମାପ ଅନୁସାରେ ନ ମିଶାଇ କାମ କରିଥିବାରୁ କାନ୍ଥ ଦୁର୍ବଳ ହୋଇ ଯାଇ ଭୁଷୁଡ଼ି ପଡ଼ିଲା ଓ ଚ଼ୋର ମଲା ।'' ସେଇଠୁ

ତା କଥା ବିଚାର କରି ମିସ୍ତ୍ରୀକୁ ଡକା ହେଲା । ବିଚରା ମିସ୍ତ୍ରୀ କାନ୍ଦି କାନ୍ଦି ଆସି ଉପସ୍ଥିତ ହୋଇ ସମସ୍ତଙ୍କୁ ମିନତି କଲା ଓ କହିଲା, "ଆଜ୍ଞା ମୁଁ ସବୁ ଭାଗମାପ ଅନୁସାରେ ସିମେଣ୍ଟ ଓ ବାଲି ମିଶାଇ ଥିଲି, ମାତ୍ର ପାଣି ଦେବା ଲୋକ ପାଣି ଠିକ୍ ଭାବରେ ଦେଇ ନଥିବାରୁ କାନ୍ଥ ଦୁର୍ବଳ ହୋଇ ଭୁଷୁଡ଼ି ପଡ଼ିଲା, ମୋର କିଛି ଦୋଷ ନାହିଁ, ମୋ ପରିବାର ଭାସିଯିବ ଆଜ୍ଞା, ମୋତେ ଛାଡ଼ି ଦିଅନ୍ତୁ ।

ରାଜା ପୁର୍ନବାର ନିର୍ଦ୍ଦେଶ ଦେଲେ, ସେଇ ଶ୍ରମିକକୁ ଧରିଆଣ । ମୁହୂର୍ତ୍ତକ ମଧ୍ୟରେ ଶ୍ରମିକକୁ ଉପସ୍ଥିତ କରାଗଲା । ରାଣୀ ଏପରି ବିଚାର ଦେଖି ହୋ ହୋ ହୋଇ ହସି ଉଠିଲେ । ରାଜା କ୍ଷୁବ୍ଧ ହୋଇ ଉଠିଲେ ରାଣୀଙ୍କ ଉପରେ ।

ଶ୍ରମିକ ବିଚରା ହାତଯୋଡ଼ି ଆସି ସମସ୍ତଙ୍କ ଗୋଡ଼ତଳେ ପଡ଼ିଗଲା ଓ କହିଲା, "ମଣିମା, ମୁଁ ଆଜ୍ଞା ମୋ କାମରେ ଠକେଇ ନାହିଁ, ସେଇ ଦିନରୁ ମୋତେ ଥଣ୍ଡା ଛିଙ୍କ ଲାଗି ରହିଛି, ମୁଁ ଠିକ୍ ଠିକ୍ ପାଣି ବୋହି ଆଣି ଦେଇଛି, କିନ୍ତୁ ଯେଉଁ କଳସୀରେ ପାଣି ଦେଇଥିଲି, ସେଥିରେ ଗୋଟିଏ ଛିଦ୍ର ଥିବାରୁ ପାଣିତକ ସବୁ ମୋ ଉପରେ ଓଜାଡ଼ି ହୋଇ ପଡ଼ିବାରୁ ସେଇ ଦିନରୁ ଥଣ୍ଡାରୋଗରେ ପୀଡ଼ିତ ହୋଇ ପଡ଼ିଛି, ମୋର ଆଜ୍ଞା କିଛି ଭୁଲ ନାହିଁ । ମୋତେ ଛାଡ଼ି ଦିଅନ୍ତୁ ପ୍ରଭୁ ।"

ସତେ ତ ଶ୍ରମିକର ତ କିଛି ଭୁଲ ନାହିଁ । ରାଜା ନିର୍ଦ୍ଦେଶ ଦେଲେ, ଯିଏ ମାଠିଆ ଗଢ଼ିଥିଲା, ତାରି ଭୁଲ ପାଇଁ ଚୋର ମଲା, ଶୀଘ୍ର ସେଇ କୁମ୍ଭାରକୁ ହାଜିର କର । ପୁଣି ଥରେ ରାଣୀ ଆସନରୁ ଉଠିପଡ଼ି ରାଜାଙ୍କର ଏଭଳି ରାୟକୁ ଭର୍ତ୍ସନା କଲେ ।

ମନ୍ତ୍ରୀ ମୁହଁରୁ ପାଳବିଣ୍ଡା ବାହାର କରି ରାୟ ଦେଲେ, ରାଣୀ ରାଜ ଦ୍ରୋହ କରିଛନ୍ତି, ରାଜଦ୍ରୋହ ଅପରାଧରେ ରାଣୀଙ୍କୁ ବନ୍ଦୀ କରାଯାଇ କାଳ କୋଠରୀରେ ନିକ୍ଷେପ କରାଯାଉ । ମନ୍ତ୍ରୀଙ୍କ କଥାରେ ରାଜା ତାହାହିଁ ନିର୍ଦ୍ଦେଶ ଦେଲେ ଓ ରାଣୀଙ୍କୁ ବନ୍ଦୀ କରାଗଲା । ରାଣୀ ବିଦ୍ରୂପର ହସ ହସି ଚାଲିଲେ ବନ୍ଦୀଶାଳା ଭିତରକୁ ।

ପୁର୍ନବାର ବିଚାର ଚାଲିଲା ।

କୁମ୍ଭାର ଆସି ଉପସ୍ଥିତ ହୋଇ ରାଜାଙ୍କୁ, ମନ୍ତ୍ରୀ, କଟୁଆଳ, ସାଧବ ସମସ୍ତଙ୍କୁ ଯେତେ ନେହୁରା ହେଲା, କେହି ତା କଥା ଶୁଣିଲେ ନାହିଁ । ମନ୍ତ୍ରୀଙ୍କ ରାୟ ଅନୁସାରେ ରାଜା, କୁମ୍ଭାରକୁ ଫାଶୀକାଠ ନିକଟକୁ ନେଇଯିବା ପାଇଁ ନିର୍ଦ୍ଦେଶ ଦେଲେ ।

କୁମ୍ଭାରକୁ ନେଇଯାଇ ଯେବେ ଫାଶୀ ଦଉଡ଼ି ତା ବେକ ପାଖକୁ ନିଆଗଲା, କୁମ୍ଭାର ଏପରି ଦୁର୍ବଳ ଓ ପତଳା ଥିଲା, ଫାଶୀ ଦଉଡ଼ି ତା ବେକକୁ ପାଇଲା ନାହିଁ, ଢିଲା ହୋଇ ରହିଲା । ବିଚାରକମାନେ ସଭିଏଁ ସମସ୍ତଙ୍କୁ ମୁହଁକୁ ଅନାଇଲେ, ଇଏ ତ ଗୋଟିଏ ବଡ଼ ସମସ୍ୟା ହେଲା, କ'ଣ କରାଯିବ ଭାଳେଣୀ ପଡିଲା । କଟୁଆଳ ମନ୍ତବ୍ୟ ଦେଲେ, 'ମଣିମା, ଏ କୁମ୍ଭାର ଅତ୍ୟନ୍ତ ଦୁର୍ବଳ ଓ ପତଳା ଯୋଗୁଁ ଫାଶୀ

ଦଉଡ଼ି ତା ବେକକୁ ପାଉନାହିଁ, ଏଣୁ ତାକୁ ନଜର ବନ୍ଦୀରେ ରଖାଯାଇ ସେ ମୋଟା ହେବା ପର୍ଯ୍ୟନ୍ତ ଭଲ ଭଲ ସୁଷମ ଓ ପୁଷ୍ଟିକର ଖାଦ୍ୟ ଦିଆଯାଉ । ତା ପରେ ଫାଶୀ ଦିଆଯିବ ।' ମନ୍ତ୍ରୀ, କଟୁଆଳର ଯୁକ୍ତିରେ ଅସନ୍ତୋଷ ହୋଇ କହିଲେ, ଏଭଳି ଦୀର୍ଘସୂତ୍ରୀ କାର୍ଯ୍ୟକ୍ରମ ଚ଼ଳିବନି, ତାଛଡ଼ା ଗୋଟିଏ ଦୋଷୀ ପାଇଁ ରାଜକୋଷରୁ ଖର୍ଚ୍ଚ କରାଯିବ, ଏହା ମୂର୍ଖାମିର ପରିଚ଼ୟ । କୁମ୍ଭାର ବଦଳରେ ଏକ ମୋଟା ଲୋକକୁ ଫାଶୀ ଦିଆଯାଉ । ସମସ୍ତଙ୍କର ଆଖି ଡୋଳା ଉପରକୁ ଉଠିଗଲା । ଗୋଟିଏ ନିରୀହ ଲୋକକୁ ଫାଶୀ ଦିଆଯିବ, ମନ୍ତ୍ରୀଙ୍କ କଥାକୁ ଏଡ଼ି ହେବ ନାହିଁ । ମନ୍ତ୍ରୀଙ୍କର ରାୟ, ରାଜାଙ୍କର ହୁକୁମ । ସାଙ୍ଗେ ସାଙ୍ଗେ କୁମ୍ଭାରକୁ ଛାଡ଼ି ଦିଆଗଲା ଓ ଜଣେ ମୋଟା ଲୋକକୁ ଧରି ଅଣାଗଲା ଦରବାରକୁ ଫାଶୀ ଦେବା ପାଇଁ । ଲୋକଟିର ପ୍ରତିବାଦ ସତ୍ତ୍ୱେ ବି କିଛି ଶୁଣା ନଯାଇ ଫାଶୀ ଖୁଣ୍ଟ ନିକଟକୁ ନେବା ପୂର୍ବରୁ ରାଜା ତା'ର ଅନ୍ତିମ ଇଚ୍ଛା ପ୍ରକାଶ କରିବାକୁ କହିଲେ ।

ଲୋକଟି ହାତଯୋଡ଼ି କହିଲା, ''ମଣିମା କିଛି ସମୟ ମୋତେ ମୋର ଗୁରୁଦେବଙ୍କୁ ସ୍ମରଣ କରିବାକୁ ସୁଯୋଗ ଦିଆଯାଉ ।'' ଲୋକଟି ଆଖି ମୁଦି ଠିଆହେଲେ ।

ଅକସ୍ମାତ୍ ଏକ ଅଲୌକିକ କାଣ୍ଡ ଘଟିଲା । ହଠାତ୍ ଜଣେ ଲଣ୍ଡିତ ମସ୍ତକ, ଗୌରବର୍ଣ୍ଣ ଧାରୀ ବ୍ୟକ୍ତି ରାଜ ସଭାରେ ଉପସ୍ଥିତ ହୋଇ ରାଜାଙ୍କୁ ଲକ୍ଷ୍ୟ କରି କହିଲେ, ମହାରାଜ, ଆଜି ଶୁକ୍ଳ ପଞ୍ଚମୀ, ତିଥି ଅନୁଯାୟୀ ଏହି ସମୟରେ ଯିଏ ଫାଶୀ ପାଇବେ, ସେ ଇନ୍ଦ୍ରପଦ ଲାଭ କରିବ । ମୋତେ ସେ ସୁଯୋଗ ଦିଅନ୍ତୁ ରାଜନ୍ !

ରାଜ, ମନ୍ତ୍ରୀ ଓ ଅନ୍ୟମାନେ କିଛି ସମୟ ଚ଼ିନ୍ତାରେ ବୁଡ଼ିଗଲେ । 'ଇନ୍ଦ୍ରପଦ' ଲାଳସାରେ ସମସ୍ତଙ୍କର ଚ଼କ୍ଷୁ ବିସ୍ଫୋରିତ ହୋଇଗଲା ।

ଏତିକିବେଳେ ସାଧବ, କଟୁଆଳ, ମନ୍ତ୍ରୀ ଲାଇନ୍‌ରେ ଛିଡ଼ା ହୋଇ ସେମାନଙ୍କୁ ଫାଶୀ ଦେବା ପାଇଁ ରାଜାଙ୍କୁ ଅନୁରୋଧ କଲେ । ରାଜା ଚ଼ିତ୍କାର କରି ଉଠିଲେ ଓ ସମସ୍ତଙ୍କର ଲାଳସାକୁ ପ୍ରତିହତ କରି ନିଜେ ଯାଇ ଫାଶୀ ଦଉଡ଼ିରେ ବେକ ପୁରାଇ ଦେଲେ ଓ ଘାତକକୁ ନିର୍ଦ୍ଦେଶ ଦେଲେ ।

ରାଜ୍ୟରେ ଶାନ୍ତି ବିସ୍ତାର କଲା ଓ ଦୁର୍ନୀତିର ଅବସାନ ଘଟିଲା । ବହୁତ ଉତ୍ସୁକତାର ସହିତ ଶୁଣୁଥିଲେ ଦାସ ବାବୁଙ୍କୁ ଦିହେଁ । ମହାନ୍ତି ବାବୁ ପଚ଼ାରିଲେ ଗପରୁ କିଛି ବୁଝିଲେ ପଟ୍ଟନାଏକ ବାବୁ । ସେତେବେଳକୁ ଉତ୍ତେଜିତ ହୋଇ ପଡ଼ିଥାଆନ୍ତି ସେମାନେ । ପଟ୍ଟନାଏକ ବାବୁ କହିଲେ, ଆମର ଉଚ୍ଚ ଅଫିସରକୁ ପାନେ ଦରକାର, ଦୁର୍ନୀତିକୁ ଫାଶୀ ଖୁଣ୍ଟରେ ଝୁଲେଇ ଦେବାକୁ ହେବ । ସେମାନଙ୍କର ହାତ ମୁଠା ଶକ୍ତ ହୋଇ ଉଠିଲା ଓ ଗୋଟିଏ ପରେ ଗୋଟିଏ ତିନୋଟି ହାତ ଏକାଠି ହୋଇ ଶପଥାବଦ୍ଧ ହେଲେ ।

ଏମାନଙ୍କ କଥାବାର୍ତ୍ତା ଖୁବ୍ ଚିତ୍ତାକର୍ଷକ ଥିଲା । ମୁଁ ସେମାନଙ୍କ ପାଖକୁ ଲାଗି ସିଟ୍‌ରେ ବସିଥାଏ । ମୁଁ ମୋର କୌତୁହଳକୁ ଆଉ ବେଶୀ ସମୟ ଚାପି ରଖି ପାରିଲିନି । ପଚାରି ବସିଲି, ଆପଣମାନେ କ'ଣ ଦୁର୍ନୀତି ନିବାରଣ ବିଭାଗର ଅଫିସର ।

ସେଇ ଛଅଟି ଯାକ ଆଖି ମୋ ଉପରେ ଆସି ନିବଦ୍ଧ ହେଲା ଓ ଫୁଟି ଉଠୁଥିଲା ନିର୍ଭୀକତାର ଝଲକ । ସତେ ଏକ ନୂଆ ପୃଥିବୀ । ବୁଝି ପାରିଲି, ସେମାନେ ମୋର ପରିଚୟ ଚାହାନ୍ତି । ମୋର ରାଜନୈତିକ ପରିଚୟ ଦେଲି । ସେମାନେ ଆଶ୍ୱସ୍ତ ହେଲେ ଓ ଯଥା ସମ୍ମାନ ଜଣାଇ କହି ଉଠିଲେ, ଆପଣ ଆମର ଆଦର୍ଶ ସାର୍ ।

ହଁ କିନ୍ତୁ, ଆପଣମାନେ ଆମର ଭବିଷ୍ୟତ । ଆପଣମାନଙ୍କ ପରି ଅଫିସରଙ୍କ ଆବଶ୍ୟକତା ଆଜିର ଅବକ୍ଷୟ ସମାଜ ପାଇଁ ଅପରିହାର୍ଯ୍ୟ । ଭଗବାନ ସହାୟ ହୁଅନ୍ତୁ, ଗଜ୍ଜର ସାଧୁବାବା ହୋଇ ଏ ସଂସାରକୁ ପରିତ୍ରାଣ କରନ୍ତୁ । ମୋର ଷ୍ଟେସନ୍ ଆସି ଗଲା ଓ ମୁଁ ଓହ୍ଲାଇ ପଡ଼ିଲି । ସେମାନେ ସିଟ୍‌ରୁ ଉଠି ଆସି କମ୍ପାର୍ଟମେଣ୍ଟର ଦୁଆର ମୁହଁରେ ଛିଡ଼ା ହୋଇ ନମସ୍କାର ଜଣାଇଲେ । ସେମାନଙ୍କ ମୁଖମଣ୍ଡଳର ଔଜଲ୍ୟତା ମୋ ମୁହଁରେ ମାଖି ହୋଇ ଯାଇଥାଏ ।

ଆଜି କାଲି ଆଉ ଏ ଖବର କାଗଜ ପଢ଼ିବାକୁ ଇଚ୍ଛା ହୁଏନା । ପ୍ରତ୍ୟେକ ପୃଷ୍ଠାରେ ହତ୍ୟା, ମର୍ଡ୍ର, ରେପ୍, ଶିଶୁବଳି ଇତ୍ୟାଦି ଇତ୍ୟାଦି ଜଘନ୍ୟ ସମ୍ବାଦ । ସବୁଦିନେ ମୁଁ ଚାହା ପିଉ ପିଉ ଯେତେ ଇଚ୍ଛା ନ ଥିଲେ ବି ଆଖି ବୁଲିଯାଏ ସମ୍ବାଦ ଉପରେ । ଆଜିର ଖବର କାଗଜର ପ୍ରଥମ ପୃଷ୍ଠା ଉପରେ ନଜର ପଡ଼ି ମୁଁ ହଠାତ୍ ଚମକି ପଡ଼ିଲି । ଆରେ ସେଦିନ ସେଇ ଟ୍ରେନ୍‌ରେ ଦେଖା ଦେଇଥିବା ତିନିଜଣଙ୍କର ଫଟୋ ଓ ସେଇ ନ୍ୟୁଜ୍‌ରେ ଅନ୍ୟ ସାଇଡ୍‌ରେ ପୋଲିସ୍ ହାତକଡ଼ା ପକାଇ ଦୁଇଜଣଙ୍କୁ ଟାଣି ଟାରି ନେଉଛନ୍ତି । ଖବରର ହେଡ୍‌ଲାଇନ୍ ''ଦୁର୍ନୀତି ବିଭାଗର ହଟଚମଟ : ମୁଖ୍ୟ ଅଫିସର ଓ ମାଫିଆ ଡନ୍ ଗିରଫ୍ '' । ମୁଁ ଆପେ ଆପେ ଟାଣି ହୋଇଗଲି ସେଇ ଖବର ଭିତରକୁ । ଖବରଟି ଅତି ଉତ୍ସୁକତାର ସହିତ ପଢ଼ିବାକୁ ଲାଗିଲି । ନିରୀହା ନାବାଳିକା ବାସନ୍ତୀ, ପିତାମାତାଙ୍କର ଏକମାତ୍ର କନ୍ୟା ସନ୍ତାନର ହରଣଚାଳ ଓ ରେପ୍, ମର୍ଡ୍ର କରି କ'ଣ ପାଇଲେ ସେମାନେ ? ଅସହାୟ ପିତାମାତାଙ୍କର କରୁଣ କାହାଣୀ ପଢ଼ି ମର୍ମାହତ ହୋଇ ପଡ଼ିଲି । ଏ ଜୀବନରେ ସେମାନେ ଆଉ ଫେରି ପାଇବେନି ତାଙ୍କ ଦୁଲାଳୀକୁ । ଯା ହେଉ, ମୋ ମନକୁ ଆଶ୍ୱାସନା ଦେଲି, ଦୋଷୀ ଦଣ୍ଡ ପାଇଛି ଓ ସ୍ୱଗତୋକ୍ତି କରି ଉଠିଲି - ''ସାଧୁବାବା'' । ଗର୍ବ ଅନୁଭବ କରୁଥିଲି ସେଇ ତିନିଜଣଙ୍କ ପାଇଁ, ତାଙ୍କ ମିଶନ୍ ସକ୍‌ସେସ୍‌ଫୁଲ ହୋଇଛି ।



## ପ୍ରୀତି - ପ୍ରୀତମ

କାନ୍ଦି କାନ୍ଦି ଶୋଇ ଯାଇଛନ୍ତି ପ୍ରୀତି । ଆଜିକୁ ପନ୍ଦର ଦିନ ହେବ, ସ୍ୱାମୀକୁ ହରାଇ ସେ ଅନାଥିନୀ ପ୍ରାୟ ହୋଇପଡ଼ିଛନ୍ତି । ଯାହାର ହାତ ଧରି ସେ ଏଇ ଘରକୁ ଆଦରି ନେଇଥିଲେ, ସେ ଯେ ତାଙ୍କ ପାଖରୁ ଏମିତି ହଠାତ୍ ଚାଲିଯିବେ, ସେ ସ୍ୱପ୍ନରେ ବି ଭାବି ନଥିଲେ । ଏଇ କେତେ ଦିନ ହେବ, ସେ ନ ଖାଇ ନ ପିଇ ଭୀଷଣ ଦୁର୍ବଳ ହୋଇ ପଡ଼ିଛନ୍ତି । ସତରେ ସେ ଶୋଇ ପଡ଼ିଛନ୍ତି ନା ଦୁର୍ବଳ ଶରୀରର ଅବଶ ଆଖିପତା ଯୋଡ଼ିକ ତାଙ୍କର ମୁଦି ହୋଇ ପଡ଼ିଛି, ଜାଣିବା ଦୁଷ୍କର ।

ପ୍ରୀତମ୍‌ଙ୍କର ମୃତ୍ୟୁ ଖବର ପାଇ ଜ୍ଞାତି, କୁଟୁମ୍ବ ଓ ପରିବାର ବର୍ଗ ଶୋକାଭିଭୂତ ହୋଇ ପଡ଼ିଥିଲେ । ଏକମାତ୍ର ପୁତ୍ର ଶୁଭମ୍ ଧାଇଁ ଆସିଛି ପିତାଙ୍କର ମୃତ୍ୟୁ ଖବର ପାଇ ସୁଦୂର ଆମେରିକାରୁ । ସାଥିରେ ଶୁଭ୍ରା ଓ ଏକମାତ୍ର ଗେଲ ବସରର ନାତୁଣୀ ନେହା । ନେହା ପିଲାଟିଏ କ'ଣ ବା ବୁଝେ, ଜେଜେ କାହାନ୍ତି ବୋଲି ପ୍ରୀତିକୁ ହଇରାଣ କରେ । ''ମୋତେ ଜେଜେ ଦରକାର ଜେଜେକୁ ଆଣିଦେ ବୋଲି ପ୍ରୀତିର ଲୁଗାକାନି ଭିଡ଼ି ଅଝଟ ହେଉଛି ।'' ଏହାର କ'ଣ ବା ଉତ୍ତର ଦେବେ ପ୍ରୀତି ଭାବି ପାରନ୍ତିନି, କେବଳ ଆଖିରୁ ଧାର ଧାର ଲୁହ ଝରିପଡ଼େ । ନେହା ବି ମାଆର କାନ୍ଦ ଦେଖି କାନ୍ଦି ପକାଏ ରଡ଼ି କରେ । ଶୁଭ୍ରା କୋଳକୁ ଟେକି ନେଇ ବହୁତ ଗେଲ କରେ, ବୁଝାଏ, ହେଲେ ସେ ବୁଝିଲେ ସିନା, ଓଲଟି ଅଳି କରେ ମୋ ଜେଜକୁ ମାଆ ଲୁଚାଇ ଦେଇଛି, ଜେଜକୁ ଆଣିଦିଅ ।

ଶୁଭ୍ରା, ନେହାକୁ ନେଇ ନାକେଦମ୍ ହୋଇଯାଏ । ''ଜେଜ ତୋର ଆକାଶର ତାରା ହୋଇଯାଇଛନ୍ତି, ଭଗବାନ୍ ତାଙ୍କୁ ନେଇଯାଇଛନ୍ତି । ଶୁଭ୍ରା ଏମିତି କେତେ କ'ଣ କହି ନେହାକୁ ଶୁଆଇ ପକାଏ । ପ୍ରୀତି ବା ତାକୁ କ'ଣ ବୁଝାଇବେ, ସେ ତ ନିଜକୁ ବୁଝାଇ ପାରୁ ନାହାନ୍ତି । ପ୍ରୀତିକୁ କେତେ ବୁଝାନ୍ତି, ପ୍ରୀତିର ମନ କ'ଣ ବୁଝେ ? ପ୍ରୀତିର ଯନ୍ତ୍ରଣା କାତର ମୁହଁକୁ ଦେଖି ଅନ୍ୟମାନେ ବି କାନ୍ଦି ପକାନ୍ତି । ପ୍ରୀତି ଅବୋଧ ଦୃଷ୍ଟି ମେଲି ଚାହିଁ ରହେ ସଭିଙ୍କୁ ।

ମୃତାହ କର୍ମ ଏଗାର ଦିନରେ ଶେଷ ହୁଏ । ଶୋକାୟିତ ପରିବାର ବର୍ଗ ଶୋକାକୁଳ ନୟନରେ ପ୍ରୀତମ୍‌ର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରନ୍ତି । ଆଜିକୁ ପନ୍ଦର ଦିନ ଅତିକ୍ରାନ୍ତ

ହୋଇଗଲାଣି । ଶୁଭମ୍ ଯାଇଛି ବୋହୂ ଶୁଭ୍ରା ଓ ନେହାକୁ ନେଇ ଶ୍ୱଶୁରଘରକୁ । ପ୍ରୀତି ଆଜି ଘରେ ଏକୁଟିଆ ଏଇ କେତେଦିନ ହେବ ସମସ୍ତେ ତାକୁ ଘେରି ରହିଥିଲେ, ତା ଦୁଃଖରେ ଦୁଃଖୀ ହେଉଥିଲେ, ଯା ଭିତରେ ସ୍ୱୟଂ ଯମରାଜ ଆସିଥିଲେ ବି ତାକୁ ନେବା ପାଇଁ ବାଟ ପାଇ ନଥାନ୍ତେ । ଆଉ କିଛି ଦିନ ପରେ ପୁଅ ବି ସମସ୍ତଙ୍କୁ ନେଇ ଚାଲିଯିବ ତା'ର କର୍ମକ୍ଷେତ୍ର ସୁଦୂର ଆମେରିକା ।

ପ୍ରୀତମ୍ ଚାଲିଗଲେ ପ୍ରୀତିକୁ ଏକୁଟିଆ କରି । ପ୍ରୀତି ବଞ୍ଚିଥିବା ଯାକେ କେବେ ବି ତାଙ୍କ ଆତ୍ମାଠାରୁ ପ୍ରୀତମକୁ ଅଲଗା କରି ବଞ୍ଚିପାରିବନି । ଘର ଭିତରକୁ ପଶିଗଲେ ପ୍ରୀତମ୍ଙ୍କର ଛବି ଭାସି ଉଠୁଛି । ବାହାରେ ଯେମିତି ଖାଇ ଗୋଡ଼ାଉଛି । ପ୍ରୀତମ୍ଙ୍କର ହାତ ଧରିବା ଠାରୁ ପ୍ରତିଟି ସ୍ମୃତି ତାଙ୍କ ଆଖି ଆଗରେ ଠିଆ ହୋଇ ଉଠୁଛି । ପ୍ରତ୍ୟେକ ସ୍ମୃତିବୋଳା ମୁହୂର୍ତ୍ତ ମନେ ପଡ଼ି ସେ ବ୍ୟଥିତା ହୋଇ ପଡୁଛନ୍ତି । ତାଙ୍କର ହସ-କାନ୍ଦ, ରାଗ ରୋଷ ପ୍ରୀତି ଭୁଲି ପାରୁ ନାହାନ୍ତି । ପ୍ରୀତମ୍ ତାଙ୍କ ସାଙ୍ଗରେ ନ ନେଇ ଚାଲିଗଲେ କେମିତି ? କେଡ଼େ ସ୍ୱାର୍ଥପର ହୋଇ ପାରିଲେ ସେ ?

ଆଜି ବି ମନେ ପଡୁଛି ପ୍ରୀତିଙ୍କର ଥରେ ଥରେ ଅଫିସ୍ କାମରେ ଘରେ କିଛି ନ କହି ବମ୍ବେ, କଲିକତା କୁଆଡ଼େ କୁଆଡ଼େ ଚାଲି ଯାଆନ୍ତି ପ୍ରୀତମ୍ । ଚିନ୍ତାରେ ପ୍ରୀତି ନ ଖାଇ ନ ପିଇ ବ୍ୟସ୍ତ ବିବ୍ରତ ହୋଇ ଅଫିସ୍‌କୁ କେତେ ଯେ ସାଧ ସାଧନା କରିବାକୁ ପଡ଼େ, କହି ହୁଏନା । ସେଥିପାଇଁ କେବେ ଦାମୀ ପାଟଶାଢ଼ୀ କେବେ ନେକ୍‌ଲେସ୍ ଓ କାନଫୁଲ ଇତ୍ୟାଦି ଇତ୍ୟାଦି ଲାଞ୍ଚ ଦେବାକୁ ପଡ଼ିଥାଏ । ଏ ସବୁ ଆଜି ତାଙ୍କୁ ବହୁତ ପୀଡ଼ା ଦେଉଛି । ଅନ୍ତର ଭିତରଟା ଅସ୍ଥିର ହୋଇ ଉଠୁଛି । ଥରେ ଥରେ ଭ୍ରମରେ ପଡ଼ି ଯାଆନ୍ତି, ପ୍ରୀତମ ପୂର୍ବପରି ତାଙ୍କୁ କିଛି ନ କହି ଦୁବାଇ ଚାଲିଗଲେ କି ? ସେ ନିଶ୍ଚେ ଫେରି ଆସିବେ, ଅମାନିଆ ଆଶା ଜାଗେ ମନରେ ତାଙ୍କର ।

ଏଥର ଦୁବାଇରୁ ଫେରିଲେ ସେ କମାରୁ ଆଉ ଛାଡ଼ିବେନି । ଏଇ ଶାଢ଼ୀ କାନିରେ ସେ ବାନ୍ଧି ରଖିବେ ନିଜକୁ ସ୍ଥିତି ଆଣି ପୁଣି ଭୋ କରି କାନ୍ଦି ଉଠନ୍ତି ପ୍ରୀତି ।

ସେଦିନ ଥିଲା ରବିବାର । ହଠାତ୍ ଦୁବାଇ ଚାଲିଯାଆନ୍ତି ପ୍ରୀତମ୍ । ରବିବାରରେ ସବୁଦିନ ପରି ଅଫିସ୍ ବନ୍ଦ ରହେ ଓ ସେମାନେ ଦିହେଁ ବୁଲି ଯାଆନ୍ତି ବିଭିନ୍ନ ପର୍ଯ୍ୟଟନ କ୍ଷେତ୍ରକୁ, ସେ ଦିନ ଯିବାର ପୁରୀ ସମୁଦ୍ର ବେଳାଭୂଇଁ । ପ୍ରୀତି ନିଜକୁ ବିଭିନ୍ନ ପ୍ରକାରେ ସଜାଇ ବସିଛନ୍ତି, ପ୍ରୀତମ୍ ଫେରିଲେ ସେମାନେ ବାହାରି ଯିବେ ପୁରୀ । ମାତ୍ର ଦିନ ଯାଇ ସନ୍ଧ୍ୟା ହେଲାଣି ପ୍ରୀତମ୍ଙ୍କର ଦେଖା ନାହିଁ କି ଫୋନ୍‌ଟିଏ ନାହିଁ । ଘରକୁ, ବାହାରକୁ ହୋଇ ଅସ୍ଥିରତା ମଧ୍ୟରେ ଦିନଟି କଟିଗଲା । ସନ୍ଧ୍ୟା ସମୟକୁ ବଡ଼ ଭାଇ ସୁଶାନ୍ତ ଆସି ଖବର ଦେଇଗଲେ ଜରୁରୀ କାମରେ ତାଙ୍କୁ ଦୁବାଇ ଯିବାକୁ ପଡ଼ିଲା । ଏତେ ତର ତରରେ ଚାଲି ଗଲେ ଯେ, ପ୍ରୀତିକୁ ଜଣାଇବାର ସମ୍ଭବ ହେଲାନି, ଭାଇ ଏତିକି କହି ଦେଇ ଗଲେଣି । ସେମିତି ସ୍ଥିର ହୋଇ ବସିଥାନ୍ତି ପ୍ରୀତି । ନିଜ ପ୍ରତି ବିଦ୍ରୁପ କରି ଉଠିଲେ

ସେ, ପରେ ସେ ଶୁଣିଲେ ଗୋଟିଏ ବଡ଼ କମ୍ପାନୀରୁ ଅର୍ଡ଼ର ଆଣିବା ପାଇଁ ସେ ଦୁବାଇ ଯାଇଛନ୍ତି ଓ ପ୍ରୀତମ୍ ସହିତ ଶିଲା ବି ଯାଇଛି । ଶିଲା ଏଇ କେତେଦିନ ହେବ ସେକ୍ରେଟାରୀ ଭାବେ ଜଏନ୍ କରିଛି ଅଫିସ୍‌ରେ । ଶିଲା ସୁନ୍ଦରୀ, ତାର ସୁନ୍ଦରୀ ପଣିଆ ଦେଖି ଯେ କୌଣସି ସ୍ତ୍ରୀଲୋକ ମନରେ ଈର୍ଷା ଜାତ ହେବ । ଏକେ ତ ନ କହି କିଛି ନଜଣାଇ ଦୁବାଇ ଚାଲିଗଲେ ଓ ସାଥିରେ ଶିଲା ଯାଇଥିବା କଥା ଶୁଣି ପ୍ରୀତିର ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଜଳି ଉଠିଲା । ରାଗ ଓ ଅଭିମାନ ସୀମାତିକ୍ରାନ୍ତ କଲା । ସେ ନିଜର ହିତାହିତ ଜ୍ଞାନ ଯେପରି ହରାଇ ବସିଲେ । ଏ ସଂସାରରେ ବଞ୍ଚି ରହି ଆଉ ଲାଭ କ'ଣ, ଏହା ଭାବି ସେ କୋଠାର ଖୋଲା ଛାତରେ ବିଚରଣ କରିବାକୁ ଲାଗିଲେ ଓ ଏ ଜୀବନ ହାରି ଦେବାକୁ ସଂକଳ୍ପ କଲେ । ତାଙ୍କ ଦେହରୁ ଗୋଟି ଗୋଟି କରି ସମସ୍ତ ଗହଣା ଓହ୍ଲାଇ ଫୋପାଡ଼ି ଦେଲେ ପଲଙ୍କ ତଳକୁ । ନିଜ ହାତରେ ଅତି ଯତ୍ନରେ ସାଜସଜ୍ଜା ଓ ପ୍ରସାଧନକୁ ଗୋଟି ଗୋଟି କରି ନିଜେ ନଷ୍ଟ କରିଦେଲେ । ମୁଣ୍ଡ ବାଳ ମୁକୁଳା, ବିବସ୍ତ୍ର ପ୍ରାୟ ହୋଇ ରାତ୍ରିର ଅନ୍ଧକାରରେ ଘୁରି ବୁଲିଲେ ଛାତରେ ବାୟାଣୀ ପ୍ରାୟ : ଏ ଜୀବନ ସେ ହରିଦେବେ । ଏ ଜୀବନ ଆଉ ତାଙ୍କର ଲୋଡ଼ା ନାହିଁ । ଦୁଇ ଆଖିରୁ ବହି ଯାଉଥାଏ ଅମାନିଆ ଲୋତକର ଧାର । କ୍ରମେ ମୁହଁଟା ତାଙ୍କର କଠୋର ହୋଇ ଉଠୁଥାଏ । କପାଳରେ ଅଜସ୍ର ସ୍ୱେଦବିନ୍ଦୁ । ସେ ଏ ଜୀବନ ହାରିଦେବେ, କୋଠା ଉପରୁ ଡେଇଁ ପଡ଼ିବେ, ଏଭଳି ଏକ ନିଷ୍ପତ୍ତି ତାଙ୍କ ମୁଣ୍ଡରେ ଜମାଟ ବାନ୍ଧୁଥିଲା ବେଳେ, ହଠାତ୍ କଲିଂବେଲ୍ ବାଜି ଉଠିଲା । ପ୍ରୀତି ତାଙ୍କର ମୁଣ୍ଡଟିକୁ ଦୁଇ ହାତରେ ଚାପି ଧରିଲେ ଓ ସ୍ୱସ୍ଥିତାବସ୍ଥାକୁ ଧୀରେ ଧୀରେ ଫେରିବାକୁ ଲାଗିଲେ ଓ ତଳକୁ ଓହ୍ଲାଇ ଆସି କବାଟ ଫିଟାଇଲେ । ସାମ୍ନାରେ ଛିଡ଼ା ହୋଇଥାଏ ଗୋପାଳ, ତାଙ୍କ ଅଫିସ୍ ପିଅନଟି, ତା ହାତରେ ଲଫାପା ଗୋପାଳ ଲଫାପାଟି ଦେଇ ସାରି ନିର୍ଦ୍ଦେଶକୁ ଅପେକ୍ଷା କରିଥାଏ । ଯେଉଁ ଦିନ ପ୍ରୀତମ୍ ରାତିରେ ରହନ୍ତି ନାହିଁ ଗୋପାଳ ରାତିରେ ସର୍ଭେଣ୍ଟ କ୍ୱାର୍ଟରରେ ଶୋଇପଡ଼େ । ମାତ୍ର ପ୍ରୀତିର ମୁଡ୍ ନାହିଁ ତାକୁ ସାଙ୍ଗେ ସାଙ୍ଗେ ତା ଘରକୁ ଚାଲିଯିବାକୁ କହି ପୁର୍ନବାର କବାଟ ବନ୍ଦ କରିଦେଲେ । ବେଡ୍‌ରୁମ୍‌କୁ ଆସି ଲଫାପାଟିକୁ ଖୋଲି ଦେଖିଲେ ତାଙ୍କ ପାଇଁ ପ୍ରୀତମ୍‌ର ସୋହାଗ ବୋଳା ଚିଠିଟିଏ । ଚିଠିରେ ପ୍ରଥମ ସମ୍ବୋଧନ - ''ମୋର ଏକାନ୍ତ ପ୍ରାଣପ୍ରିୟା ପ୍ରୀତି ' ଶେଷରେ ଇତି ତୁମର ପ୍ରାଣର ପ୍ରୀତମ୍ ।'' ଚିଠିଟିକୁ ଆମୂଳଚୂଳ ପଢ଼ିଲେ ପ୍ରୀତି ଏକା ନିଶ୍ୱାସରେ, ମାତ୍ର ସେଦିନ ସେ ଚିଠି ତାଙ୍କୁ ଅଧିକ ଭାବରେ ଯନ୍ତ୍ରଣା ଦେଇଥିଲା ଓ ଅବିଶ୍ୱାସ ଭରି ଦେଇଥିଲା ମନରେ । ରାତିସାରା ଅନିଦ୍ରାରେ କଟିଥିଲା ତାଙ୍କର । ତା ପରଦିନ ପ୍ରୀତି ଚାଲିଯାଇଥିଲେ ଘର ତାଲା ପକାଇ ବାପାଙ୍କ ଗୃହକୁ ଅଭିମାନରେ । ମାତ୍ର ପ୍ରୀତିର ଜୀବନ ଯେଉଁଠି ବନ୍ଧା,ରୋଷ, ଅଭିମାନ ସେଠି ହାର ମାନି ଯାଇଥିଲା । ପ୍ରୀତମ୍ ଦୁବାଇରୁ ଫେରି ସାଙ୍ଗେ ସାଙ୍ଗେ ଶ୍ୱଶୁର ଘରେ ହାଜର ଓ ସେଦିନ ପ୍ରୀତିଙ୍କ ସମସ୍ତ ଅଭିମାନ ପାଣି ଫୋଟକା ପରି ମିଳାଇ ଯାଇଥିଲା । କିଛି ସମୟ ପ୍ରୀତମ୍ ଛାତିରେ ମୁଣ୍ଡ ଗୁଞ୍ଜି ଭିଜାଇ ଦେଇଥିଲେ ତାଙ୍କ ବକ୍ଷ

ଦେଶକୁ । ପ୍ରୀତମ୍ ଚୁମ୍ବନ ପରେ ଚୁମ୍ବନ ଆଙ୍କି ଦେଉଥିଲେ ପ୍ରୀତିର ଗଣ୍ଡ ଦେଶରେ । ବହୁ ଅହଂକାର ଧୋଇ ହୋଇଗଲା ପ୍ରୀତିର । ପ୍ରୀତି ଝୁରି ହେଉଛନ୍ତି ସେଇ ମନର ମଣିଷକୁ । ତାଙ୍କ ବିନା ବାକି ଜୀବନ ସେ କଟାଇବେ କେମିତି ? ଜୀବନର ସାୟାହ୍ନରେ ପ୍ରୀତମ୍‌ର ଅନୁପସ୍ଥିତି ଅସହ୍ୟ ହୋଇ ଉଠିଥାଏ ତାଙ୍କ ପାଇଁ । ଯେବେ ପ୍ରୀତମ୍ ତାଙ୍କ ପାଇଁ ଅପରିହାର୍ଯ୍ୟ, ଅଥଚ୍ ସେ ଅଚ୍ାନକ ସବୁ କିଛି ଭୁଲି ଚ୍ାଲିଗଲେ । ତାଙ୍କ ବିନା ପ୍ରୀତି ପାଲଟି ଯାଇଛି ଏକ ଜୀଅନ୍ତା ଶବଟିଏ ।

ମେଡିକାଲ ଆଇ.ସି.ୟୁ. କକ୍ଷ । ପ୍ରୀତମ୍‌ଙ୍କ ମୁଣ୍ଡଟିକୁ କୋଳରେ ଧରି ବସିଛନ୍ତି ପ୍ରୀତି । ସେରିବ୍ରାଲ୍ ମେଲେରିଆ, ମୁଣ୍ଡକୁ ଜ୍ୱର ଉଠିଯାଇଛି । ଆଖି ମୁଦି ଶୋଇଛନ୍ତି ପ୍ରୀତମ୍, ଅବଚ୍େତନା ଅବସ୍ଥା । ପ୍ରତି ମୁହୂର୍ତ୍ତରେ ଚ୍େକଅପ୍ ଚ୍ାଲିଛି, କମ୍ପ୍ୟୁଟରରେ ପିଙ୍ଗି ହୋଇ ବାହାରୁଛି ସମଗ୍ର ଶରୀରର ହିଷ୍ଟ୍ରି । ପ୍ରୀତିଙ୍କର ଭାଇ ମଧ୍ୟ ଜଣେ ଡାକ୍ତର । ପ୍ରୀତିକୁ ଆଶ୍ୱାସନା ଦିଅନ୍ତି ସବୁ ଠିକ୍ ହୋଇଯିବ, ଭଗବାନଙ୍କୁ ଡାକ । ପ୍ରୀତମ୍‌ଙ୍କର ଏପରି ଅବସ୍ଥାର ଖବର ପାଇଁ ଆମେରିକାରୁ ଆସୁଛନ୍ତି ତାଙ୍କର ପୁତ୍ର ଓ ପୁତ୍ରବଧୂ । ରାତ୍ରିର ଶେଷ ପ୍ରହର । ଦୂରରୁ କୁଆଡୁ ଭାସି ଆସୁଛି ବୁଲା କୁକୁରର କାନ୍ଦଣା ସ୍ୱର, ଅତି ବିକୃତ ଶୁଭୁଛି । ବସି ବସି ପ୍ରୀତି ଝୁଙ୍କି ପଡ଼ିଛନ୍ତି ପ୍ରୀତମ୍‌ଙ୍କର ମୁଣ୍ଡ ଉପରେ, ଅବଚ୍େତନ ଅବସ୍ଥା । ହଠାତ୍ କାହାର 'ବୋଉ' ସମ୍ବୋଧନରେ ସେ ଜାଗ୍ରତ ହୋଇ ଉଠିଥିଲେ, ଶୁଭମ୍ ବୋଧହୁଏ ଆସିଲାଣି । କାଚ୍‌ଲଗା ଦୁଆର ମୁହଁରେ ଆରପଟେ ଶୁଭମ୍‌ର ମୁହଁ ଦେଖାଗଲା । ପ୍ରୀତି ଧୀରେ ପ୍ରୀତମଙ୍କର ମୁଣ୍ଡଟିକୁ ନିଜ କୋଳରୁ ହଟାଇ ତକିଆ ଉପରେ ରଖି ଦେଇ ଉଠି ଆସିଲେ ଦୁଆର ମୁହଁକୁ । କବାଟ ଠେଲି ଦେଖନ୍ତି ତ କେହି ନାହିଁ, ତେବେ ତାଙ୍କର କ'ଣ ଭ୍ରମ ହୋଇଗଲା ଭାବି ପୁଣି ଫେରି ଆସିଲେ ପ୍ରୀତମ୍ ପାଖକୁ । ପ୍ରୀତି ଦେଖନ୍ତି, ମୁଦି ଥିବା ଆଖି ଡୋଳା ମେଲା ହୋଇ ଯାଇଛି ଓ ପ୍ରୀତମ୍ ଅନାଇ ରହି କିଛି କହିବାକୁ ଚ୍ାହାନ୍ତି, ପ୍ରୀତିକୁ । ବିକଳରେ ପ୍ରୀତି ପ୍ରୀତମଙ୍କ ମୁଣ୍ଡରେ ହାତ ଦେଇ ପଚ୍ାରିଲେ କ'ଣ କହିବ, ମାତ୍ର ସେତେବେଳକୁ ସବୁ ଶେଷ ହୋଇ ଯାଇଥାଏ । ପ୍ରୀତମ୍‌ଙ୍କର ଶରୀରଟି ଶୀତଳ ପିଣ୍ଡରେ ପରିଣତ ହୋଇ ଯାଇଥିଲା । ପ୍ରୀତମ୍‌ଙ୍କର ବକ୍ଷ ଦେଶରେ ମୁଣ୍ଡପିଟି ଚ୍ାଲିଥିଲେ ସତୀ । କାଳଯମଙ୍କର ଆଖିରେ ଅଶ୍ରୁ ଜକେଇ ଆସିଲା । କିଛି ସମୟ ପାଇଁ ସେ ପ୍ରୀତିଙ୍କର ପୁତ୍ର ରୂପେ ମାତାଙ୍କୁ ଦର୍ଶନ ଦେଇ ପ୍ରୀତମ୍ ଜୀବନ ହରଣ କରି ନେଇ ଯାଇଥିବା ଅପରାଧ କରି ମନେ ମନେ ଗ୍ଲାନି ଅନୁଭବ କରୁଥିଲେ ।

କାଳଯମ ଆସିଛନ୍ତି ପୁନର୍ବାର ସେଇ ସହରକୁ, ଯମରାଜଙ୍କର ହୁକୁମ ପାଇ । ଗୋଟିଏ ଶହେ ବର୍ଷର ବୁଢ଼ୀର ଜୀବନକୁ ହରି ନେବା ପାଇଁ । ଦୀର୍ଘ ପନ୍ଦର ଦିନ ପରେ ବି ସେ ଭୁଲି ନାହାନ୍ତି ପ୍ରୀତିଙ୍କର ଅକାଳ ବୈଧବ୍ୟକୁ । ତାଙ୍କର ପ୍ରବଳ ଇଚ୍ଛା ହେଲା ସେଇ ମହାସତୀଙ୍କୁ ଦର୍ଶନ କରିବାକୁ ଓ ସେ ଯାହା ଦେଖିଲେ ତଟସ୍ଥ ହୋଇଗଲେ, ମ୍ରିୟମାଣ ହୋଇ ପଡ଼ିଲେ । ସେ ଅନୁଭବ କଲେ ପ୍ରୀତିର ଜୀବନ ଦୀପ ଲିଭି ଲିଭି ଆସୁଛି, ଅତ୍ୟନ୍ତ

କ୍ଷୀଣ ହୋଇ ଯାଇଛନ୍ତି ସେ । ପ୍ରୀତିଙ୍କର କ'ଣ ଆୟୁରେଖା ସମାପ୍ତ ହୋଇଯିବ ? ପ୍ରୀତି ଅବଚେତନ ଅବସ୍ଥାର ରହିଛନ୍ତି । ପ୍ରୀତିର ଏପରି ଅବସ୍ଥା ଅବଲୋକନ କରି ଯମଦୂତ କାଳ ଯମ ଅସ୍ଥିର ହୋଇ ପଡ଼ିଲେ ଓ ବାଧ୍ୟ ହୋଇ ବୁଢ଼ୀ ସହିତ ପ୍ରୀତିଙ୍କର ଜୀବନ ରେଖା ବି ନେଇ ଉପସ୍ଥିତ ହେଲେ ଯମ ପୁରୀରେ ।

ମହାରାଜ ତଟସ୍ଥ ହୋଇ ଅନେଇ ଥାଆନ୍ତି କାଳ ଯମଙ୍କୁ, କ୍ରୋଧିତ ହୋଇ ଉଠିଲେ । କାଳଯମ ସମସ୍ତ ବିଷୟ ଅବଗତ କରାଇ କହିଲେ, "ପ୍ରୀତମଙ୍କ ମୃତ୍ୟୁରେ ପ୍ରୀତି ପୁରାପୁରୀ ଭାଙ୍ଗି ପଡ଼ିଛନ୍ତି, ଏକ ଶବ ପ୍ରାୟ ପଡ଼ି ରହିଛନ୍ତି ବିଛଣାରେ । ଏପରି ଜୀବନ କ'ଣ କେହି ବଞ୍ଚିପାରେ ? "ଏଣୁଁ ମୁଁ ନେଇ ଆସିଛି ପ୍ରଭୁ, ଆପଣ ଏହାର କାରଣ କରନ୍ତୁ, ଯଦି ପ୍ରୀତିର ଆୟୁଷ ଅଛି, ବଞ୍ଚିବାର ମନ୍ତ୍ର ଦିଅନ୍ତୁ ପ୍ରଭୁ, ଜୀବନର ତତ୍ତ୍ୱ, ମହାଜ୍ଞାନ ପ୍ରଦାନ କରି ତା'ର ହୃଦୟକୁ ଶୀତଳ କରନ୍ତୁ ।" କର ଯୋଡ଼ି ନିବେଦନ କଲେ କାଳଯମ ।

ଯମରାଜାଙ୍କର କ୍ରୋଧ ଶାନ୍ତ ପଡ଼ିଲା ଓ ସେ ନିର୍ଦ୍ଦେଶ ଦେଲେ ଯମପୁରୀର ସମସ୍ତ ଦୃଶ୍ୟ ବୁଲାଇ ଦେଖାଇ ଆଣିବା ପାଇଁ ପ୍ରୀତିଙ୍କୁ । ପ୍ରୀତି ଯମପୁରର ଶାସନ ବ୍ୟବସ୍ଥା, କଠୋର ନିୟମ, ଆତ୍ମାର ବିଚାର ଓ ଆଚାର ସମସ୍ତ ଦୃଶ୍ୟ ଅବଲୋକ କରୁଥାଆନ୍ତି । ଗୋଟିଏ ସ୍ଥାନରେ ଭୟଙ୍କର ଦୃଶ୍ୟ ଦେଖି ଚିତ୍କାର କରି ଉଠିଲେ । ଯେଉଁମାନେ ପାପୀ ଟକମକ ହୋଇ ଫୁଟୁଥିବା ତେଲ କଡ଼େଇରେ ତାକୁ ପକାଇ ଦିଆଯାଉଛି, ସେ ଅନ୍ୟ ଆଡ଼କୁ ମୁହଁ ବୁଲାଇ ନେଲେ । ପ୍ରୀତି ଦେଖିବାକୁ ପାଇଲେ ତାଙ୍କ ଗାଁର ସାଆନ୍ତଙ୍କ ପୁଅକୁ, ଅତ୍ୟନ୍ତ ପାପୀ ମଣିଷଟି, ବିବର୍ଣ୍ଣ ମୁହଁରେ ସେ ତେଲ କଢ଼ା ପାଖରେ ବସିଛି ଓ ପ୍ରୀତିକୁ ଦେଖି ଲଜ୍ଜାରେ ମୁହଁ ତଳକୁ କରିଦେଲା । ପ୍ରୀତି ସେଠାରୁ ତର ତର ହୋଇ ଅନ୍ୟ ଆଡ଼କୁ ମୁହାଁଇଲା । ସେ ଚାହୁଁଥିଲା ପ୍ରୀତମକୁ ଦେଖିବା ପାଇଁ କାଳଯମ ପ୍ରୀତିର ଇଚ୍ଛା ପୂରଣ ପାଇଁ ନେଇ ଚାଲିଲେ ସେଇଠାକୁ, ଯେଉଁଠି ପ୍ରୀତମ ଅଛନ୍ତି, ପ୍ରୀତମ୍‌ଙ୍କର ବିଚାର ସରିନି, ସେ ଅପେକ୍ଷାରତ କବାଟ ଖୋଲି ଅନେଇଲେ ପ୍ରୀତି କାଳଯମଙ୍କ ନିର୍ଦ୍ଦେଶରେ ଓ ପ୍ରୀତମଙ୍କୁ ଚିହ୍ନି ପାରିଲେ ସେ । ପ୍ରୀତମ୍ ବି ପ୍ରୀତିକୁ ଚିହ୍ନି ପାରି ନିଜ ଆସନରୁ ଉଠି ଆସିଲେ । ଏପଟେ ମାୟା କଲେ ସ୍ୱୟଂ ଯମ ମହାରାଜ । ପ୍ରୀତି ଦେଖୁଛନ୍ତି, ପ୍ରୀତମଙ୍କର ଡଉଲ ଡାଉଲ ଚେହେରାଟି ପ୍ରୀତିର ମନ ବୁଝେନା, ଲୋତକ ଧାର ବହି ଚାଲିଛି ନୟନରୁ ।

ଡାକ୍ତର ବାବୁ କହିଦେଇଛନ୍ତି, ଅବସ୍ଥା ସଂକଟାପନ୍ନ, ଭଗବାନ ହିଁ ଭରସା । ପ୍ରୀତମଙ୍କୁ କୋଳରେ ଧରି ବସିଥାଆନ୍ତି ପ୍ରୀତି ।

ଜୀବନ ମୃତ୍ୟୁର ହିସାବ ନିକାଶ ରଖୁଥିବା ଚିତ୍ରଗୁପ୍ତ ପାଞ୍ଜି ମେଲାଇ ବସିଛନ୍ତି । କାହାର କେବେ ପାଳି ପଡ଼ିବ ନାଲିଛକ ପକାଇ ମହାରାଜ ଯମଙ୍କୁ ଲିଷ୍ଟ ଧରାଇ ଦିଅନ୍ତି । ଯମଙ୍କର ଦୂତ କାଳଯମଙ୍କୁ ପ୍ରେରଣ କରିଛନ୍ତି ପ୍ରୀତମଙ୍କର ଜୀବନ ନେବା ପାଇଁ । ହୁକୁମର ଚାକର କାଳଯମ ଆସି ଦେଖନ୍ତି ତ ଏକାନ୍ତ ପତିପ୍ରାଣା ପ୍ରୀତି ସ୍ୱାମୀଙ୍କୁ କୋଳରେ ଧରି ବସିଛନ୍ତି ଓ ଜପି ଚାଲିଛନ୍ତି ମହାମନ୍ତ୍ର । କିଛି ସମୟ ପାଇଁ ଲଢ଼େଇ ଚାଲିଲା, ମହାସତୀ ଓ

ଯମଦୂତ ସହିତ । କେମିତି ବା ଜଣେ ଏକାନ୍ତ ଅନୁଗତା ଦୁଃଖରେ ଅଧିରା ନାରୀଙ୍କ ପାଖରୁ ତା ସ୍ୱାମୀଙ୍କୁ ଅଲଗା କରିବେ, ଚିନ୍ତାରେ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ କାଳଯମ । ସମୟ ଗଡ଼ି ଯାଉଛି, ଯମରାଜାଙ୍କର ହୁକୁମ, ନିର୍ଦ୍ଦିଷ୍ଟ ସମୟରେ ଜୀବନ ରେଖା ବିଛିନ୍ନ କରି ନେଇଯିବାକୁ । ଆଇ.ସି.ୟୁ. କକ୍ଷର କବାଟ ମୁହଁରେ ଖାଲି ଏପଟ ସେପଟ ହେଉଥାନ୍ତି । ପ୍ରୀତି ଏକାଗ୍ର ଚିତ୍ତରେ ବସିଛନ୍ତି, ଟିକିଏ ବି ଛାଡ଼ି ଯାଉ ନାହାନ୍ତି, ଅତ୍ୟନ୍ତ ଦୁଃଖରେ ଭାଙ୍ଗିପଡ଼ିଲେ କାଳଯମ ।

କାଳଯମ ଯୋଗାଯୋଗ କଲେ ମହାରାଜ ଯମଙ୍କ ସହିତ । ପ୍ରୀତିର ସମସ୍ତ ରିପୋର୍ଟ ଦେଇ ସେ ପଚାରିଲେ, ଆଉଥରେ ଭଲ କରି ଦେଖିବାକୁ ପ୍ରୀତମ୍‌ର ଯିବା ହୋଇଛି କି ନାହିଁ ? ଏକଥା ବି ଜଣାଇଦେଲେ ପ୍ରୀତମ୍‌କୁ ନେଇଗଲେ ପ୍ରୀତି ବଞ୍ଚି ପାରିବନି, ଯଦି ନିର୍ଦ୍ଦେଶ ଦେବେ, ସେ ଦୁଇଜଣଙ୍କୁ ଏକସଙ୍ଗେ ନେଇଯିବେ ।

ମହାରାଜ ନିର୍ଦ୍ଦେଶ ଦେଲେ, ''ମର୍ତ୍ତ୍ୟପୁରକୁ ଯାଇ ତୁମେ ତୁମର କର୍ତ୍ତବ୍ୟ ଭୁଲିଯାଉଛ କାଳଯମ । ଯାହା ତୁମକୁ ନିର୍ଦ୍ଦେଶ ହୋଇଛି, ସେଇଆ କର । ଛଳ କରି କୌଶଳରେ ପ୍ରୀତମ୍‌ଙ୍କର ଜୀବନ ଘେନି ଆସ, ସମୟ ଅତିକ୍ରାନ୍ତ ।'' ହଠାତ୍ ଲାଇନ୍ କାଟି ଦେଲେ ଯମରାଜ । କିଂକର୍ତ୍ତବ୍ୟ ବିମୂଢ଼ ହୋଇ କିଛି ସମୟ ସେମିତି ଛିଡ଼ା ହୋଇଥାନ୍ତି କାଳଯମ ଓ ଚିନ୍ତାରେ ବୁଡ଼ିଗଲେ । ହଠାତ୍ ଏକ କଙ୍କାଳରେ ପରିଣତ ହୋଇ ଯାଉଛି । ସେ ପ୍ରୀତମ୍ ସହିତ ମିଶିବେ କ'ଣ ଚିତ୍କାର କରି ଉଠିଲେ ଓ ଅଜ୍ଞାନ ହୋଇ ପଡ଼ିଲେ ।

କାଳଯମ ଦଉଡ଼ି ଦଉଡ଼ି ଆସି ଯମରାଜଙ୍କ ଠାରେ ଉପସ୍ଥିତ ହେଲେ ଓ ତା'ର କାରଣ ପଚାରି ବସିଲେ । ''ଚିନ୍ତା କରନା ବତ୍ସ ! ପ୍ରୀତିଙ୍କ ଜୀବନରେଖା ତାଙ୍କ ଶରୀରରେ ପ୍ରବେଶ କରିସାରିଛି । ଏଣିକି ଆଉ କିଛି ଅସୁବିଧା ନାହିଁ ସେ ମହାଜ୍ଞାନ ପ୍ରାପ୍ତ ହୋଇଛନ୍ତି ।''

ପ୍ରୀତି ଯେପରି ମହାନିଦ୍ରାରୁ ଉଠି ବସିଲେ । ତାଙ୍କର ଶରୀରରେ ସେ ଅନୁଭବ କରୁଥିଲେ ଏକ ନୂତନ ଶିହରଣ । ଯେମିତି ସମସ୍ତ ଚିନ୍ତା, ଦୁଃଖ ଜାଲରୁ ସେ ମୁକ୍ତ ହୋଇଯାଇଛନ୍ତି । ''ଆରେ ତୁମ୍ଭେମାନେ ସବୁ କେତେବେଳେ ଫେରି ଆସିଲ, ନେହାକୁ କୋଳକୁ ନେଇ ଗେଲ କଲେ ସେ ପୁଅ ଓ ବୋହୂତାଙ୍କ ମୁଣ୍ଡ ପାଖରେ ବସିଛନ୍ତି । ଏଠାରେ ସବୁ ଏମିତି ବସିଛ କାହିଁକି ? ଯିଏ ଯା'ର କାମରେ ଯାଅ । ''ଜୀବନଟା ଶେଷ ହେବା ପୂର୍ବରୁ ବହୁତ ବାଟ ଯିବାର ଅଛି, ବହୁତ କାମ କରିବାର ଅଛି ।'' କବିଙ୍କ ଭାଷାରେ - "Before sleep, Miles to go".

ଦୀର୍ଘ ସମୟ ଶୋଇ ଉଠିଲା ପରେ ହଠାତ୍ ମାଆଙ୍କର ଏ କି ପରିବର୍ତ୍ତନ, ଆଶ୍ଚର୍ଯ୍ୟ ପରିବର୍ତ୍ତନ । ଯେମିତିକି ତାଙ୍କ ମୁହଁରେ ନଥିଲା ଅନୁଶୋଚନାର ଲେଶମାତ୍ର ।





ଲେଖିକା

ଶ୍ରୀମତୀ ଉମାରାଣୀ ପାତ୍ରଙ୍କ ଜନ୍ମ

ବାଲେଶ୍ୱର ଜିଲ୍ଲା ଭୋଗରାଇ ଥାନା
ଅନ୍ତର୍ଗତ ଜଳସୋହରିଆ ଗ୍ରାମରେ ।

ଜନ୍ମ : ୧୯୫୪ ମସିହା, ମେ ମାସ ୧୨ ତାରିଖ
ପିତା : ୰ ପଞ୍ଚାନନ ଧଡ଼ା
ମାତା : ଶ୍ରୀମତୀ କାନନ ବାଳା ଦେବୀ

ଲେଖିକା ଉମାରାଣୀ ପାତ୍ର ଜଣେ ସମାଜସେବୀ । ତାଙ୍କର ଗଳ୍ପ ସଂକଳନ 'ସଂକେତ' ଓ 'ବାଲିହରିଣ' ଦୁଇଟି ପ୍ରକାଶ ଲାଭ କରିଛି ।

ଗଳ୍ପ ସଂକଳନ 'ସାତ ସମୁଦ୍ର ସେପାରି' – ଯନ୍ତ୍ରସ୍ଥ । ଏହା ବ୍ୟତୀତ ସେ ଜଣେ କବି । କବିତା ସଂକଳନ 'ମଧୁର ମଧୁର ବଇଁଶୀ ସୁର' ଯନ୍ତ୍ରସ୍ଥ । ବିଶେଷ ଭାବେ ସେ ମଧ୍ୟ ଜଣେ ଅନୁବାଦିକା । ସ୍ୱର୍ଣ୍ଣ, ଶତଭିଷା ଓଡ଼ିଶାର ବିଶିଷ୍ଟ ସାହିତ୍ୟ ପତ୍ରିକାରେ ବଙ୍ଗାଳରୁ ଓଡ଼ିଆ ଅନୁବାଦ ଗଳ୍ପ (୧) 'ଖବର କାଗଜ', 'ବ୍ୟାଧ' ଓ ଉପନ୍ୟାସ 'ଅବନୀ ଦାଦା ଓ ସତୀ ଭାଉଜ' ପ୍ରକାଶିତ ।

ତାଙ୍କର ବହୁ ଗଳ୍ପ, ସମ୍ବାଦ ସାପ୍ତାହିକୀ, 'ଅଭିଯାନ', 'ଅମୃତାୟନ', 'ଦୀନକୃଷ୍ଣ ସ୍ମୃତି-ପରିଷଦ'ର 'ସମକାଳୀନ ସାହିତ୍ୟ', 'ସୁଧନ୍ୟା', 'ଶତଦ୍ରୁ' ଆଦି ବହୁ ପତ୍ରିକାରେ ପ୍ରକାଶିତ ହୋଇ ପାଠକ, ପାଠିକାଙ୍କ ଠାରେ ଆଦୃତ ହୋଇ ପାରିଛି ।